# ନିଜସଞ୍ଜ ପ୍ରସଙ୍ଗରେ

କଥାଶିଳ୍ପୀ କିଶୋରୀଚରଣଙ୍କର ଅଷ୍ଟାଦଶ ଗଳ୍ପସଂକଳନ "ନିଜସଞ୍ଜ" ଦଶଟି ଗଳ୍ପର ସମାହାର । ତାଙ୍କର କଥାସାହିତ୍ୟ ଅନୁଭୂତ ଓ ବାସ୍ତବ ସତ୍ୟର କେତେ ନୂଆ ନୂଆ ଝଲକ ଦେଖାଇ ଆସିଛି, ତା'ର ବ୍ୟାଖ୍ୟା ଅନାବଶ୍ୟକ । ତେବେ ତାଙ୍କ ବୃଦ୍ଧଜୀବନର ଗଳ୍ପଗୁଡ଼ିକ ଭିନ୍ନ ବୋଲି ସେ ନିଜେ କହିଛନ୍ତି ଏଥିର ମୁଖବନ୍ଧରେ । ଏବଂ ଆଶା କରିଛନ୍ତି ଯେ, ଏଥିରେ ଥିବା 'କେଉଁ ସୂର୍ଯ୍ୟୋଦୟନର ମନୋଲ୍ଲାସ ଅବା ନିଜସଞ୍ଜର ନିର୍ଲିପ୍ତ ଲୋଭ' ଆପଣଙ୍କ ପାଖରେ ପହଞ୍ଚି ପାରିବ । ସଞ୍ଜ ଦୂରରେ ଥାଉ ବା ହାତପାଆନ୍ତାରେ, ଶିଳ୍ପୀଙ୍କର ଏହି ଆତୁରତା ଜୀବନର ବର୍ଣ୍ଣ-ବୈଚିତ୍ର୍ୟ ତଥା ତା'ର ଅବୋଧ ଶେଷ କଥାକୁ ଚିହ୍ନି ଚିହ୍ନାଇବା ପାଇଁ ଏହାହିଁ ଏହି ଗଳ୍ପ-ଗୁଡ଼ିକର ମୁଖ୍ୟ ସ୍ୱର ଓ ବୈଶିଷ୍ଟ୍ୟ । ଏଠି କେବଳ ତୁମ-ଆମ ପରି ମଣିଷ ନାହାନ୍ତି, ଯେଉଁମାନେ ତୀବ୍ର ଦହନକୁ ଲୋଡ଼ୁଛନ୍ତି, କିଛି ହେଲେ ପାଇବା ପାଇଁ, ଅଥବା ସଂସାରରୁ ନୀରବରେ ଖସିଯିବାକୁ ଚାହାନ୍ତି କେଉଁ ଏକ ପ୍ରୀତିକର ପରିବେଶ ଭିତରେ, ଯେଉଁଠି 'ସ୍ପୃହା ନାହିଁ, ଅଛି ତା'ର ମଧୁରିଆ ଭାବ', ଏଠି ମଧ୍ୟ ଅଛନ୍ତି ଧର୍ମରାଜ ଯୁଧିଷ୍ଠିର, ଯେ ପାଇବାର ଶୁଭ୍ରଶିଖରରେ ପହଞ୍ଚିଲେ ମଧ୍ୟ ହାହାକାର କରି ଉଠୁଛନ୍ତି ଯେ, ସେ ନିଃସ୍ୱ ଓ ନିଃସଙ୍ଗ···। ବିବିଧ ବୌଦ୍ଧିକ ଆନନ୍ଦର ଅନନ୍ୟ ପ୍ରତିଶ୍ରୁତି ରହିଛି ଏହି ଗଳ୍ପଗୁଡ଼ିକରେ ।

NIJASANJA
( A collection of short stories )
by Kishori Charan Das
Publishers : Vidyapuri, Cuttack 753002
1992

ପ୍ରଥମ ପ୍ରକାଶ : ବିଜୟା ଦଶମୀ, ୧୯୯୨

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ-୭୫୩୦୦୨

ମୁଦ୍ରକ
ଗ୍ରାମସେବକ ସମବାୟ ପ୍ରକାଶନ ଲିଃ
ବାଖରାବାଦ, କଟକ-୭୫୩୦୦୨

ମୂଲ୍ୟ : ଟ ୩୨-୦୦

ମୁଁ ନୂଆ ନୂଆ ଗପ ଲେଖିଲା ବେଳେ ଯେ ମୋତେ ଦମ୍ଭ ଦେଉଥିଲେ ଆହୁର ଲେଖିବା ପାଇଁ ଓ ମୋ ଲେଖାର ମହତ୍ତ୍ୱକୁ ଚହ୍ଲାଇ ଦେଉଥିଲେ ମୋର ସଂସାରୀ ଆତ୍ମୀୟସ୍ୱଜନଙ୍କ ଅବଗତ ପାଇଁ, ସେହି ଅଗ୍ରଗଣ୍ୟ କଥାକାର ସ୍ୱର୍ଗତ ଅନନ୍ତ ପ୍ରସାଦ ପଣ୍ଡା (ମଉସା)ଙ୍କ ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ମୋର ଏହି ସଂକଳନଟିକୁ ଅର୍ପଣ କଲି ।

**କିଶୋରୀ ଚରଣ**

# ନିଜକଥା

ପ୍ରଶ୍ନ ଉଠିପାରେ ଯେ କାହିଁକି ଏମିତି ବାଉଳା ହେଉଛ ମଝିରେ ମଝିରେ 'ନିଜକଥା' କହିବା ପାଇଁ ? କ'ଣ ଯାହା ସବୁ ଲେଖିଗଲ ଜୀବନଯାକ, ସେଗୁଡ଼ାକ ମୋଟାମୋଟି ନିଜକଥା ନୁହେଁ ? ଅର୍ଥାତ୍ ମିଛ ହେଉ କି ସତ ହେଉ, କଳ୍ପନା କିମ୍ବା ଅଙ୍ଗେ ନିଭେଇବାର ଅନୁଭୂତି, ସବୁ କ'ଣ ତୁମ ନିଜସ୍ୱ ଚେତନାର ଖଣ୍ଡିଉଡ଼ା ନୁହେଁ ? ତା'ହେଲେ ତା' ସାଙ୍ଗକୁ ଗୁଣି ଏତେ ବକରବକର କାହିଁକି ?

ଏଭଳି ପ୍ରଶ୍ନର ଉତ୍ତର ନାହିଁ । ଅପରନ୍ତୁ ମନେ ହେବ ଯେ ଲେଖକର ଆତ୍ମପ୍ରତ୍ୟୟ ବଳିଷ୍ଠ ନୁହେଁ । ଏବଂ ମର୍ମକୁ ବାଧିବ ଯଦି ସେହି ପ୍ରଶ୍ନରେ ଛୁଟାଏ ବିଦ୍ରୂପ ଥାଏ । ଯାହା ମୋ 'ଲେଉଟାଣି' ଗପର ବଳରାମବାବୁଙ୍କୁ ଛୁଇଁଗଲେଇଥିଲା, ସେ ଯେତେବେଳେ ବାନପ୍ରସ୍ଥକୁ ବାହାରିବା ବାଟରେ ଆଉ ଜଣକୁ ଖୋଜିଲେ ଯେ ତାଙ୍କ ତଥାକଥିତ ଆଧ୍ୟାତ୍ମିକ ଜାଗୃତିକୁ ବୁଝିପାରିବ । ପଚାରିଲା—

ତମେ ଏମିତି କ'ଣ କି ତମକୁ ଲୋକେ ବୁଝିବା ଦରକାର ?

ଅର୍ଥାତ୍ ତମକୁ ବୁଝିଲେ ନ ବୁଝିଲେ କାହାର କଣ ଭାସି ଯାଉଛି ?

ଧନ୍ୟବାଦ । ସେଇଥିଲାଗି ମୁଁ ଆଜିକାଲି କିଛି ସମୟ ପାଇଁ ଗପ ଲେଖା ଛାଡ଼ି ଦେଇ ପ୍ରବନ୍ଧ, ନିବନ୍ଧ, ରମ୍ୟରଚନା ଇତ୍ୟାଦିର ମାଧ୍ୟମରେ ମୋର ଅକୁହା କଥାଗୁଡ଼ିକୁ ସିଧାସଳଖ ବାଢ଼ି ଦେବାର ପ୍ରଯତ୍ନ କରୁଛି । ତଥାପି ଏଇ ଷଷ୍ଠୋଦଶ ଗଳ୍ପ ସଂକଳନ ପାଇଁ ମୋତେ କିଛି ନିଜକଥା କହିବାକୁ ପଡ଼ୁଛି, କାହିଁକିନା ମୁଁ ମୋର ଆତ୍ମରକ୍ଷାର ସ୍ୱାଧିକାରକୁ ମୁରୁଛି ପାରୁ ନାହିଁ । ଏ ହେତୁ ମୋର ଏଇ ସଫେଇ, ତଥା ସ୍ୱୀକାରୋକ୍ତି ।

ମୋର ଉତ୍ତର ଜୀବନର ଗପଗୁଡ଼ିକୁ ନେଇ ବେଶ୍ କେତେଜଣ ସ୍ନେହୀ ପାଠକ କହୁଛନ୍ତି ଯେ ସେଥିରେ ଆତ୍ମଗତ ଭାବଭାବନା ଏବଂ ତହିଁରୁ ଉଦ୍‌ଭୂତ ଦାର୍ଶନିକତାର ଦମ୍ଭ ବଢ଼ିଗଲାଣି । ମୋତେ ଚେତାଇ ଦେଉଛନ୍ତି ଯେ ବାବୁ, ତୁମେ ଯେତେହେଲେ ଗାଳ୍ପିକ, ଦାର୍ଶନିକ ନୁହଁ, ତେଣୁ ସ୍ୱଧର୍ମକୁ ତ୍ୟାଗ କରିବାର ପାପକାମ କର ନାହିଁ । କହୁଛନ୍ତି, ଦୁର୍ବୋଧ୍ୟତା ପ୍ରତି ସାବଧାନ । ଏପରିକି କେତେକେ ମୋତେ ମୋରି ପଢ଼େଇଥିବା ପାଠ "କଥା ସାହିତ୍ୟର କଳା ଓ କାରିଗରି"ରୁ ଦି'ପଦ ଶୁଣେଇକରି କହୁଛନ୍ତି ଯେ ମୁଁ ମୋ ଆପଣା ବୁଦ୍ଧି ବିସ୍ତାରକୁ ଖାତିର୍ କରୁ ନାହିଁ ।

ସେମାନଙ୍କ ସହିତ ଲଢ଼େଇ କରି ହେବ । କିନ୍ତୁ ଆଜି ମୁଁ ସେଥିର ଆଗ୍ରହୀ ନୁହେଁ । ଧରି ନେଉଛି ଯେ ଏହି ସ୍ତବରେ ମୋର ପଛ ଲେଖାଗୁଡ଼ିକର ମୂଲ୍ୟାୟନ କରି ଗୁଡ଼ିଏ ମାର୍କ୍ କାଟି ଦେବାର ଯଥାର୍ଥତା ରହିଛି । ତେବେ ମୁଁ କାହିଁକି ଏମିତି ଲେଖୁଛି, ତା'ର କାରଣ ହିସାବରେ ସଂକ୍ଷେପରେ କେତୋଟି କଥା କହିବାକୁ ଚାହେଁ :

ଏକ—ଏହି ତଥାକଥିତ ଦାର୍ଶନିକତା ସାଙ୍ଗରେ ମୋର ପରିଣତ ବୟସର ଘନିଷ୍ଠ ସମ୍ପର୍କ ରହିଛି ।

ଦୁଇ—ଉକ୍ତ ଦାର୍ଶନିକତା ନୁଖୁରା ଅର୍ଥାତ୍ ସ୍ୱାବଲମ୍ବୀ ନୁହେଁ, ଅନୁଭୂତ ସତ୍ୟ ବୋଧରେ ଆପ୍ଲୁତ, ନିଏତ କର୍ଦମାକ୍ତ । ତେଣୁ ଲେଖକପଣରୁ ଓହରି ଗଲେ ମଧ୍ୟ ମୁଁ ନିରେଳା ଚିଂତାସଂଭୂତ ଦାର୍ଶନିକତାର ବଡ଼େଇ କରି ପାରିବି, ସେ ଦୁରାଶା ମୋର ନାହିଁ ।

ତିନି—ସମାଲୋଚନାରେ ଅଳ୍ପବହୁତ ସତ ଥିଲେ ମଧ୍ୟ ମୋର ଦୁଃଖ ନାହିଁ । କାରଣ ମୋର ପୂର୍ଣ୍ଣ ବିଶ୍ୱାସ ଯେ କେହି ହେଲେ ମୋର ଏଇ "ଭିନ୍ନ" ଗପଗୁଡ଼ିକୁ ପଢ଼ି ସେଥିରେ ଥିବା କେଉଁ ସୃଷ୍ଟିଦହନର ମହୋଲ୍ଲାସ ଅବା ନିଜସତ୍ତାର ନିର୍ଲଜ ଲୋଭକୁ ଚିହ୍ନିବ । ତା'କୁ ତା'ର ଆପଣା ଅନୁଭବ, ଅନ୍ତତଃ ତା'ର ସମ୍ଭାବନା ବୋଲି ମଣିବ । ଏବଂ ତାହା ଗପ ହେଉ କି ଅଣ-ଗପ, ସେଥିକୁ ପରୁଆ କରିବ ନାହିଁ । ମୁଁ ସେହି ଭରସାରେ ଲେଖୁଛି । ତଥାପି ।



# ସୂଚୀ


| | ବିଷୟ | ପୃଷ୍ଠା |
|---|---|---|
| ୧ | ସୌର ଜଗତ | ୧—୧୩ |
| ୨ | ଧର୍ମଶାସ୍ତ୍ରୀ | ୧୪—୨୫ |
| ୩ | ଆଲିଙ୍ଗନ | ୨୬—୩୯ |
| ୪ | ହଂସଙ୍କର ସ୍ୱର୍ଗ | ୪୦—୫୧ |
| ୫ | ସେତେକ ବାଲିଗରଡ଼ା | ୫୨—୬୫ |
| ୬ | ଦୁଃସ୍ୱପ୍ନ, ଦିବାସ୍ୱପ୍ନ | ୬୬—୮୦ |
| ୭ | ମଣିଙ୍କ ମହିମା | ୮୧—୯୫ |
| ୮ | କଳା କୁହୁଡ଼ି | ୯୬—୧୧୧ |
| ୯ | ମଗୃନ୍ | ୧୧୨—୧୨୭ |
| ୧୦ | ହଜସଂଜ | ୧୨୮—୧୪୦ |

# ଲେଖକଙ୍କର ଅନ୍ୟାନ୍ୟ ଗ୍ରନ୍ଥ ଓ ଗ୍ରନ୍ଥାବଳୀ

## ଗ୍ରନ୍ଥ

### (କ) ଓଡ଼ିଆ

ଗଳ୍ପ ସଂକଳନ : ଭଂଗା ଖେଳଣା, ଲକ୍ଷ ବିହଙ୍ଗ, ମଣିହରା, ଠାକୁର ଘର, ନାଲି ଗୁଲୁ ଗୁଲୁ ସାଧବ ବୋହୂ, ଗମନ, ଖେଳର ନାଆଁ ରଂଗ, ଭିନ୍ନ ପାଉଁଶ, ଶୀତ ଲହରୀ, ହସ୍ତୋବଂଶ ମୃତ୍ୟୁ, ଲେଉଟାଣି ।

କବିତା ସଂକଳନ : ମିଛ କାମନା ।

ପ୍ରବଂଧ ସଂକଳନ : ଲେଖକର ସଂସାର ।

ସାହିତ୍ୟ ସଂଦର୍ଭ : କଥା ସାହିତ୍ୟର କଳା ଓ କାରିଗରି ।

### (ଖ) ଇଂରେଜୀ

ଗଳ୍ପ ସଂକଳନ : Death of an Indian, Wild Peacock and other stories.

କବିତା ସଂକଳନ : Faces in the Dark.

## ଗ୍ରନ୍ଥାବଳୀ

ତିରିଶ ବର୍ଷର ଗଳ୍ପ ଓ ଆଳାପ—ପ୍ରଥମ ଭାଗରୁ ତୃତୀୟ ଭାଗ

## ପ୍ରକାଶ ଅପେକ୍ଷାରେ :

### ଗ୍ରନ୍ଥାବଳୀ

ତିରିଶ ବର୍ଷର ଗଳ୍ପ ଓ ଆଳାପ—ଚତୁର୍ଥ ଭାଗ

### ଗ୍ରନ୍ଥ

ଓଡ଼ିଆ : ଲେଖକର ଦୁଃଖ ( ପ୍ରବନ୍ଧ ସଙ୍କଳନ )

ଇଂରେଜୀ : Being an Indian writer ( ପ୍ରବନ୍ଧ ସଙ୍କଳନ )

———

# ସୌରଜଗତ

ରୌଦ୍ରକୁ, ମାନେ ତା'ର କେନ୍ଦ୍ରବିନ୍ଦୁକୁ କେତେ ସମୟ ଯାଏଁ ଅନେଇଲେ ଆଖି ଅନ୍ଧ ହୋଇଯିବ ?

କିନ୍ତୁ ସେଇ ଭଲ । ଇଏ ନୁହେଁ, ଇଏ ନୁହେଁ । ଅନ୍ୟମାନଙ୍କର, ଏପରିକି ସ୍ତ୍ରୀ ପିଲାଙ୍କର ଇଚ୍ଛା, ଅଭିଳାଷ ଆଦିକୁ ପୋଷିବା ପାଇଁ, ତାଙ୍କ କଞ୍ଚାନାଲି ଅଣ୍ଟା ଭିତରେ ଯାବତୀୟ ଆହାର ଗଳେଇବା ପାଇଁ, ଏଇ ଧାବନ, ଅନ୍ୱେଷଣ···କାହିଁକି ? କାହିଁକି ମୁଁ ଦିଲ୍ଲୀର ଉଦୁଉଦିଆ ଖରାରେ ଘୂରି ବୁଲିବି ? ଅମୁକ ମାର୍କେଟ୍‌ରୁ ସମୁକ ମାର୍କେଟ୍, ୟୁସୁଫ୍ ସରାଇରୁ ଆଇ. ଏନ୍. ଏ., ଆଇ. ଏନ୍. ଏ.ରୁ ସରୋଜିନୀ ନଗର, ସେଠୁ ଜନପଥ, ବୁଲିଥିବି ଏମିତି ? ମୁଁ କ'ଣ ଘରର ଯୋଗ୍ୟ ନୁହେଁ ? ନା ସଞ୍ଜ ପାଖକୁ ଆସୁ ନ ଆସୁଣୁ ସେ ମୋତେ ଗୋଇଠାଏ ମାରି ଫେରେଇ ଦେଇଛି ସକାଳ ଆଡ଼କୁ ? ତେଣୁ ପୁଣି ଏଇ ମଧ୍ୟାହ୍ନ, ଅସରନ୍ତି ତାତି ?

ମଦନମୋହନ ପକେଟ୍‌ରୁ ରୁମାଲ କାଢ଼ି ମୁହଁ ପୋଛିଲେ । ଯଦିଓ ଦିଲ୍ଲୀର ମେ' ମାସିଆ ଗ୍ରୀଷ୍ମରେ ଝାଳ ବୋହିବାର ପ୍ରଶ୍ନ ଉଠୁ ନ ଥିଲା । କିନ୍ତୁ ମୁହଁରୁ ଝାଳ ନ ପୋଛିଲେ ଗ୍ରୀଷ୍ମର ତାଡ଼ନାକୁ ଚିହ୍ନେଇ ହେବ କେମିତି ? ତା'ପରେ ସେ ଆଖିରୁ କଳା ଚଷମା ଉତାରି ଦେଲେ । ଦରକାର ନାହିଁ, ଦରକାର ନାହିଁ ଖରାକୁ ଘୋଡ଼େଇ ଦେଖିବାର ଏଇ ପଢଆରି । ମୋତେ ବାଧୁଛି, ଖିଡମତ ବାଧୁଛି ।

କିଓ, ବାଧୁଛି ଯଦି, କିଏ କହୁଥିଲା ଘରୁ ବାହାରିବାକୁ ? ହାଣ ମୁହଁକୁ ବେକ ଦେଖେଇବାକୁ ? କ'ଣ ତୁମକୁ ଜଣା ନ ଥିଲା ଯେ ଦିଲ୍ଲୀର ଏଇ ଜଳନ୍ତା ଖରାର ଦୟା ନାହିଁ, ମାୟା ନାହିଁ, ସେ ତୁମକୁ ଗୋଡ଼ରୁ ମୁଣ୍ଡଯାଏଁ ଦେହରୁ ମନଯାଏଁ, ମନରୁ କୋଉ ଗୋପନ ଗଭୀର ଅବଚେତନଯାଏଁ ଜାଳିବାକୁ ଚାହେଁ ? କହୁନ' ଯେ ଦହନ ଭଲ ଲାଗେ ତୁମକୁ ? ଅନ୍ତତଃ ଆପଣା ବୁଢ଼ାପଣକୁ ଜିତିବା ପାଇଁ ? ମଦନ ମୋହନଙ୍କ ଅପରପକ୍ଷ ମୁରୁକେଇ ମୁରୁକେଇ ହସିବାକୁ ଲାଗିଲା । ଯାହା ତାଙ୍କ ସ୍ତ୍ରୀ ବିମଳାର ହସପରି ମନେହେଲା ।

ବିମଳା ଅବଶ୍ୟ ପ୍ରକାଶ୍ୟରେ ହସି ନ ଥିଲା । ବରଂ କାହିଁକି ଏଇ ଖରାଟାରେ ବାହାରୁଛ ବୋଲି ମନା କରିଥିଲା । କିନ୍ତୁ ତଦ୍ଦ୍ୱାରା ସେ ଉସ୍‌କେଇଥିଲା । ତା'କୁ ଜଣାଅଛି ସେ ସ୍ୱାମୀଙ୍କୁ ଯେତିକି ମନା କରିବ, ସେ ସେତିକି ଜିଦ୍ କରିବେ ବାହାରିବେ ବୋଲି ।

ଦୁନିଆକୁ ଚେତେଇ ଦେବେ ଯେ ସେ ବୁଢ଼ା ହୋଇ ନାହାନ୍ତି । କୋଉ ଉଦ୍ୟମକୁ ହଟିଲାବାଲା ନୁହଁନ୍ତି । ମଦନ ମୋହନ ଏହି ମର୍ମରେ ସ୍ତ୍ରୀଙ୍କ ବାରଣର ସମୀକ୍ଷା କଲେ ଏବଂ କହିଲେ, ଠିକ୍ ଅଛି, ତୁମ କଥାକୁ ମୁଁ ହଟିବାର ନୁହେଁ । ମୋତେ ଏଇ ଦହନ ଭଲ ଲାଗୁଛି । ହେଲା ?

ଯାହାହେଉ, ଯୋଉ କାମଟା ଧରା ହୋଇଛି ମୋତେ, ତା'କୁ ସାରିବାକୁ ପଡ଼ିବ । ନିର୍ଦ୍ଦିଷ୍ଟ ପାଣ୍ଠି ଭିତରେ ଏମିତି ଗୋଟାଏ ବେଙ୍ଗ କିମ୍ବା ଠେକୁଆ କିମ୍ବା ସେହି ପ୍ରକାର ଜନ୍ତୁ କିଣି ଆଣିବାକୁ ହେବ, ଯାହା ଆଖିଦୁରୁଶିଆ ହୋଇଥିବ ଏବଂ ଫକ୍ ଫକ୍ ହୋଇ ଡେଇଁ ପାରୁଥିବ, ଖଣ୍ଡେ ବାଟ ଯାଇ ଧିମେଇଗଲେ ଚଳିବ ନାହିଁ, ବେଶ୍ ଦୂରକୁ ଗୁଲିଯାଇ ପାରୁଥିବ; କିନ୍ତୁ ଫୁକୁରୁ ଫୁକୁରୁ ହୋଇ ନୁହେଁ, ଫକ୍ ଫକ୍ ହୋଇ, ତେଜ ଦେଖେଇ ଡିଆଁ ମାରିଲା ପରି··· । ସତେ କି ତେଜ କାହାକୁ କୁହାଯାଏ ମୁଁ ଜାଣେନାହିଁ, ଅବା ମୁଁ ଡିଆଁ ମାରିବାର ଚମତ୍କାରିତା ଭୁଲିଗଲିଣି !

ଆସନ୍ତା ଶୁକ୍ରବାରକୁ ତାର ପହିଲି ଜନ୍ମଦିନ । ମୋର କୋଟିକରେ ଗୋଟିଏ ବଳବନ୍ତ ଗୁଣବନ୍ତ ନାତି । ଅଜା ଦେଇଥିବା ଭଲ ନାଆଁ ସୁବର୍ଣ୍ଣଶିଖର, ଡାକ ନାଆଁ ସୋମୁ ।

ମଦନ ମୋହନ ତାଙ୍କ କର୍ତ୍ତବ୍ୟରେ ହେଳାକଲେ ଏବଂ ସେଇଥିପାଇଁ ଦହନର ମିଆଦ ବଢ଼ି ବଢ଼ି ଗଲା, ତା' ନୁହେଁ । ସେ ବିଭିନ୍ନ ବେଙ୍ଗ ଦେଖିଲେ, ବିଭିନ୍ନ ଗୁଲୁ, ଠେକୁଆ ଓଗେର ଜନ୍ତୁ ସେ ସେମାନଙ୍କୁ ଗ୍ରାହ୍ୟ କଲେନାହିଁ । ଏଇଥିରୁ ବୁଝାପଡ଼ିବ ଯେ ସେ ସହଜରେ ସନ୍ତୁଷ୍ଟ ହୋଇପାରିଲେ ନାହିଁ, କାରଣ ସେ ନିଷ୍ଠାର ସହିତ ଏକ ଉତ୍କୃଷ୍ଟ ବସ୍ତୁ ଖୋଜୁଥିଲେ, ଯେଉଁଥିରେ ତାଙ୍କ ଉତ୍କୃଷ୍ଟ ଭଲ ପାଇବା ପ୍ରମାଣିତ ହୋଇଯିବ । କିନ୍ତୁ ଏହିପ୍ରକାର ଭାବ ତାଙ୍କ ମନକୁ ଆସିଲାରୁ ସେ ନିଜ ଉପରେ ପାଟିକରି ଉଠୁଥିଲେ— ପ୍ରମାଣିତ ନୁହେଁ, ପ୍ରମାଣିତ ନୁହେଁ, ପ୍ରତିଫଳିତ ହେବ । ମୁଁ ମୋ ନାତି ସୋମୁକୁ ଅତ୍ୟନ୍ତ ଭଲପାଏ, ଏଥିରେ ପୁଣି ପ୍ରମାଣ ଦରକାର ? ?

କହିଲେ, ଏଇ ଅତ୍ୟନ୍ତର ଅନ୍ୱେଷା ସମସ୍ତଙ୍କର ନ ଥାଏ । ଅସଲ କଥା ହେଉଛି ଏଇଠି । ଆମ ସମାଜର, ସଂସାରର, ଅନ୍ୟ କେଉଁ ଅଜା ତା' ନାତିପାଇଁ ଏଭଳି ପ୍ରଚଣ୍ଡ ଖରାରେ ଘୁରି ବୁଲିବ ନାହିଁ, ତା' ମନଲାଖି ବସ୍ତୁଟି ଆଣିଦେବା ପାଇଁ । ବିମଳା କଣ କହିଲା ଯାଏ ଆସେ ନାହିଁ, ଜନ୍ମଦିନ ଉପଲକ୍ଷ୍ୟ ମାତ୍ର । ଏବଂ ସନ୍ଦେହ ନାହିଁ ଯେ ମୋତେ ବାଧୁଛି । ତଥାପି ଏଇ ଦହନ ମୋତେ ଭଲ ଲାଗୁଛି ବୋଲି କହିଲେ ଭୁଲ୍ ହେବନାହିଁ, କାହିଁକନା, କାହିଁକନା ମୋର ଅଛି ଏଇ ଅନ୍ୱେଷା, ତା'କୁ ବଢ଼େଇବାର ଏଇ ଅପ୍ରତିହତ ଆବେଗ । କିଅଣ ବୁଝୁଛ କେହି ?

ଏହେତୁ ମଦନମୋହନ, ମୁଁ କଷ୍ଟ ସହୁଛି ବୋଲି ବାରମ୍ବାର କହିଲେ ମଧ୍ୟ ଏବଂ ଅଯଥାରେ ରୁମାଲରେ ମୁହଁ ପୋଛିଲେ ମଧ୍ୟ, ଏକ ବିଶିଷ୍ଟ ଆତ୍ମପୀଡ଼ନର ଗୌରବ ଅନୁଭବ କରୁଥିଲେ ।

ଏବଂ ଏହେତୁ ସନ୍ଦେହ ହେଉଥିଲ ଯେ ସେ ଆଜି ଜାଣିଶୁଣି ଫେଲ୍ ମାରିବେ । କିଛି ନ କିଣି ଫେରି ଆସିବେ କାରଣ ଆସନ୍ତା ଶୁକ୍ରବାର ପୂର୍ବରୁ ଆହୁରି ପାଞ୍ଚଦିନ ହାତରେ ଅଛି । କଷ୍ଟସୃଷ୍ଟ ଆଉ ଦିନେ ଆସିହେବ । ସେଦିନର ସୂର୍ଯ୍ୟ ଜଳୁଥିବ ଏମିତି । ହୁଏତ ପାରା ଶହେଦଶ କି ଶହେବାର ଉଠି ଯାଇଥିବ । ଫୁଟପାଥ୍ ଏବଂ ପଡ଼ିଆକଡ଼ର ଦୋକାନ ବଜାର ଅଧେ ଗୁଡ଼େଇ ହୋଇ ଯାଇଥିବ । ହେଲେ ଆଉ ଅଧିକ ଥିବ । ତେଣୁ ମଦନମୋହନଙ୍କ ଉଦ୍ୟମ ଅତି ବିଶିଷ୍ଟ କି ପରମ ବିଶିଷ୍ଟ ବୋଲି ମନେହେବ ଜଣକୁ ।

ପ୍ରକୃତପକ୍ଷେ ଏହିପ୍ରକାର ଉଦ୍ଦେଶ୍ୟ ଗଜୁରି ଉଠୁଥିବ ତାଙ୍କ ମନରେ । ଅବଶ୍ୟ ଅନ୍ୟ ଭାବରେ । ଯେ ଏମିତି ସ୍ପେଶାଲ୍ ଜିନିଷ ସବୁଦିନେ ମିଳିବାର ନୁହେଁ । ଆଜିପାଇଁ ଦକ୍ଷିଣ ଓ ମଧ୍ୟ ଦିଲ୍ଲୀର ଠିକଣା ଜାଗାମାନ ଚଷା ହୋଇ ସାରିଲାଣି, ମାନେ ଯେଉଁଠି ମିଳିବାର ଆଶା । ତେଣୁ ଆଉ ଗୋଟିଏ ଦିନକୁ ରଖାଯାଉ ପଶ୍ଚିମ ଦିଲ୍ଲୀ, ବିଶେଷଣ କାରୋଲ୍‌ବାଗ୍, ଯାହାର ପ୍ରସିଦ୍ଧି ଅଛି ଏ ଦିଗରେ । ଅଥଚ ପୁରୁଣା ଦିଲ୍ଲୀର ଗୃନ୍ଦନୀଚୌକ୍, ଯାହାର ଜନାକୀର୍ଣ୍ଣ ଐତିହାସିକ ବିପଣୀକୁ ଜାଳିବା ପାଇଁ ସୂର୍ଯ୍ୟ ହୁଏତ ଆହୁରି ସୁନ୍ଦର ଏବଂ ପ୍ରଚଣ୍ଡ ରୂପ ଧାରଣ କରିଥିବ ।

ଏଇଠି ମଦନମୋହନ ଆପଣା ଭାବନାରେ ଅନୁପ୍ରାଣିତ ହେଲେ ଏବଂ ସତସତିକା ଉପରକୁ ଅନେଇଲେ । ସୂର୍ଯ୍ୟଙ୍କ ତପ୍ତତରଳ ଗୋଲକକୁ ଦୁଇ ଆଖିରେ ଧରି ପାରିଲେ ବୋଲି କୁହାଯିବ ନାହିଁ, କିନ୍ତୁ ସେ ଖୁସିଟାଏ ହେଲେ । ସତେ କି ସେ ପାରିଲେ । ନାତି ସୁଖପାଇଁ ଯେଉଁ ଦହନକୁ ଭୋଗୁଛନ୍ତି, ତଥାପି ଲେଢ଼ୁଛନ୍ତି, ତାହା ମିଛ ନୁହେଁ, ବାହ୍ୟାଡ଼ମ୍ବ ନୁହେଁ । ତା'ର ସାର ସମ୍ପୂର୍ଣ୍ଣକୁ ମଧ୍ୟ ଛୁଇଁପାରିବେ ସେ, ସେ ସାହସ ତାଙ୍କର ଅଛି ।

ଆଃ, କେତେ ସମୟ ପରେ···?

(ତା'ପରେ କ'ଣ ଆସିବ ? ଦିବ୍ୟଜ୍ୟୋତି ? )

"ହ୍ୟାଲୋ ଅଙ୍କଲ୍, ହାଓ ଆର୍ ୟୁ ?"

ଆଖିରେ ଏକ ବିରାଟ ଗୋଲାକାର କଳା ଚଷମା ଏବଂ ଢିଲା ଘଣ୍ଟାଝୋପ୍ ପ୍ରାୟ ଡ୍ରେସ୍ ଉପରେ ଫୁରୁଫୁରିଆ ଚୁନ୍ନି ଲମ୍ବେଇ ଦେଇ ଅନଉଛି ମୋ ଆଡ଼କୁ । ଆଧୁନିକା ଅଳ୍ପବୟସୀ । ହେଲେ ତା'କୁ ଚିହ୍ନି ହେଉନାହିଁ । ଜ୍ଞାତିକୁଟୁମ୍ବର କେହି ହୋଇ ନ ଥିବ । ସମ୍ଭବତଃ କେଉଁ ବୃତ୍ତିଗତ ତଥାକଥିତ ବନ୍ଧୁଙ୍କ ଝିଅ ।

ଧ୍ୟାତ୍, ବଡ଼ ବିରକ୍ତ ଲାଗେ ଏଇ ନଚିହ୍ନିବା ପଣ । ଅଥଚ ମୋର ମନେହେଉଛି ତା'କୁ ଦେଖିଛି ବୋଲି । ଅନେକଦିନ ତଳେ । ଏଇ ଦିଲ୍ଲୀରେ । ଜନକ୍‌ପୁରୀ···ନା ସାକେତ୍···ନା—? ଉହୁଁ, ଅନେକଦିନ ତଳେ ଏ ଝିଅ ହୁଏତ ଗୁରୁଣ୍ଡୁଥିବ କିମ୍ବା ଜନ୍ମ ହୋଇ ନ ଥିବ । ମଦନମୋହନ ଧୈର୍ଯ୍ୟ ହରାଇ ତା'କୁ ତୁ କିଏ ବୋଲି ସିଧାସଳଖ ପଚାରିଥାଆନ୍ତେ କି କଅଣ, ଏଇ ସମୟରେ ସେ କହିଲା—

"ମୁଁ ହେଉଛି ଲଳିତା, ଲଳିତା ଶ୍ରୀନିବାସନ୍ ।"

"ଆଇ ସି ! ଆଜ୍ କ'ଣ ଖବର ?" ମଦନମୋହନ ଖୁସି ହେବାର ଭାବ ଦେଖାଇଲେ । ଏଣେ ସ୍ମୃତି ଉପରେ ଆଙ୍ଗୁଠି ଚାପ ଦେଲେ ।

ଶ୍ରୀନିବାସନ୍ । ହଁ, ସେଇ ଯେଉଁ ପେଙ୍ଗୁଆ ଭଦ୍ରଲୋକ, କୁଞ୍ଚୁକୁଞ୍ଚିଆ ବାଳ, କୋଉ ସରକାରୀ ନିଗମରେ କାମ କରନ୍ତି । କଥାକଥାକେ ଜୋକ୍ ମାରନ୍ତି । ତା'ହେଲେ ଏବେକା କଥା । ଆର୍. କେ. ପୁରମ୍ । ମୁଁ ଯାହାଙ୍କ ଭଡ଼ାଟିଆ ହୋଇଥିଲି, ସେ ଜଣେ ମହା ଗୁଲୁ ଭଦ୍ରଲୋକ, ତାଙ୍କ ସ୍ତ୍ରୀ କେବଳ ଗୁଲୁ ନୁହଁନ୍ତି, ଚଞ୍ଚଳା, ଥରେ ଯାହାହେଲା ନା···ସ୍ମୃତି ଘନେଇ ଆସିଲା ଏବଂ ମଦନମୋହନ ମନକୁ ମନ ହସିବାକୁ ଲାଗିଲେ । କହିଲେ, ମୋର ଚରିତ୍ର ଘରେ ଶତକଡ଼ା ଅନେଶ୍ୱତ ଦଶମିକ ନଅ, ହେଲେ ରାଜଧାନୀର କୋଉ କୂଅରେ ପାଣି ନ ପିଇଛି ମୁଁ ! ମାନେ ପିଇଲା ପରି ମନେ ହୋଇଛି, ଯଦିଓ ମୁଁ ନିଜକୁ ଆୟତ୍ତରେ ରଖିଛି···

"ଭଲ ସବୁ । ···ଅଙ୍କଲ୍ ମୁଁ ଯାଉଛି, ମୋର ଡେ଼ରି ହୋଇଗଲାଣି । ମୁଁ ଇଣ୍ଟରନ୍ୟାସନାଲ୍ ମ୍ୟୁଜିକ୍ ଏକାଡ଼େମିରେ ଜଏନ୍ କରିଛି, କ୍ଲାସ ଆରମ୍ଭ ହୋଇଯିବଣି ।"

ଲଳିତା ଶ୍ରୀନିବାସନ୍ ଖିରିକୁ ତା'ର ଚୁନ୍ନିରେ ଉଡ଼େଇ ଦେଲାପରି ଗୁହୁଁ ଗୁହୁଁ ଅନ୍ତର୍ଦ୍ଧାନ ହୋଇଗଲା । ମଦନମୋହନ ଉପସ୍ଥିତ ବର୍ତ୍ତମାନକୁ ଫେରି ଆସିଲେ । ଏବଂ ଝିଅର ହଠାତ୍ ଦେଖା ଦେଇ ଉଭାନ୍ ହୋଇଯିବା ଢଙ୍ଗ ତାଙ୍କୁ ଭଲ ଲାଗିଲା ନାହିଁ । ଆଉ ମିନିଟିଏ ରହି ଥିଲେ ହୋଇ ନ ଥାଆନ୍ତା ? ତାହାହେଲେ ହୁଏତ ମୁଁ ତାକୁ ପଚାରି ପାରିଥାଆନ୍ତି ସେଇ ଭଦ୍ରଲୋକଙ୍କ କଥା···ଇଣ୍ଟର୍ନ୍ୟାସନାଲ୍, ମାଇ ଫୁଟ୍ !

ନ୍ୟାସନାଲ୍ ହେଉ କି ଇଣ୍ଟର୍ନ୍ୟାସନାଲ୍, ଏ ଝିଅ ତା'ର ଉଦ୍ୟମକୁ ଯଥେଷ୍ଟ ସମ୍ମାନ ଦେଇ ପାରିବନାହିଁ । କାହିଁକିନା ସେ ଦଣ୍ଡେ ସ୍ଥିର ହୋଇ ରହିବାକୁ ଶିଖି ନାହିଁ । ଖରାରେ ଗୁଲିବ, ଧାଇଁବ, ହ୍ୟାଲୋ କହିବ, ଚୁନ୍ନି ଉଡ଼େଇବ, କିନ୍ତୁ ସେ କ'ଣ କେବେ-ହେଲେ ମୁହୂର୍ତ୍ତେ ଠିଆ ହୋଇ ସୂର୍ଯ୍ୟଙ୍କୁ ଅନେଇବାକୁ ମନ କରିବ ? ଦେଖିପାରିବ ବୋଲି କହୁ ନାହିଁ, କିନ୍ତୁ ଗୋଟାଏ କ୍ଷଣିକ ପ୍ରବୃତ୍ତି, ଖିଆଲ୍, ତା'ବି କଅଣ ଆସିବ ତା' ମୁଣ୍ଡକୁ ?

କୋଉ ବଡ଼ପଣ ଅଛି ସେ ଉଦ୍ୟମରେ, ଯଦି ମଣିଷ ଥରେ ହେଲେ ନୀରବରେ ନିଶ୍ଚଳରେ, ତା'ର ସୂର୍ଯ୍ୟକୁ ଅର୍ଥାତ୍ ଶେଷକଥାର କର୍ଯ୍ୟାସକୁ ଲଭିବାପାଇଁ ଇଚ୍ଛା ନ କରେ ?

ଛାଡ଼, ମେଣ୍ଟିଆଡ଼ ଟୋକୀ ଖଣ୍ଡେ, ତା' ସାଙ୍ଗରେ ନିଜକୁ ତୁଳନା କରିବା ହାସ୍ୟାସ୍ପଦ । ବରଂ ମୋତେ "ଇଣ୍ଟର୍ନ୍ୟାସନାଲ୍" ପାଠ ପଢ଼େଇଲା, ଭଲକଲା । ପୁଣିଥରେ ଚେତେଇ ଦେଇଗଲା ଯେ ଜ୍ଞାନର ଉଦ୍ୟମ, ଧନର ଉଦ୍ୟମ, ଯଶର ଉଦ୍ୟମ, ବ୍ୟାପ ସବୁ ମିଛ ।

ସାର ହେଉଛି କେବଳ ସେଇ ଉଦ୍ୟମ, ଯାହାର ଫଳାଫଳ ନାହିଁ, ଅର୍ଥ ନାହିଁ କହିଲେ ଚଳେ । କହିବାକୁ ଗଲେ ଯେଉଁ ଅତ୍ୟନ୍ତ ଭଲପାଇବା ନେଇ ମୁଁ ଫକ୍ ଫକ୍ ହୋଇଥିବା ବେଙ୍ଗ ଠେକୁଆ କଣିବାକୁ ବସିଛି, ତା'କୁ ମଧ୍ୟ ପ୍ରଥମଶ୍ରେଣୀରେ ବସେଇବା ଉଚିତ । କାରଣ ସିଏ ହେଉଛି ଏକତରଫା । ବର୍ତ୍ତମାନ କଥା ଛାଡ଼ିଦିଅ । ଗ୍ରେଟରୁ ବଡ଼ ହେଲାପରେ, ଭଲପାଇବା ନାମକ ବସ୍ତୁକୁ ଜାଣିଲା ପରେ ମଧ୍ୟ ଶ୍ରୀମାନ ସୁବର୍ଣ୍ଣଶିଖର ଗୋଟିଏ ଅଧା-ବୁଢ଼ା, ତେଣୁ ଅଜବ୍ ଜନ୍ତୁକୁ ଦେଖି ମନେ ମନେ ହସିବ । କିମ୍ବା ମୁଁ ସେତେବେଳକୁ ମରିଗଲେ ତା'ର ପିଲାଦିନଆ ସ୍ମୃତିର ଉଦ୍‌ବୃତ୍ତ ସିଏ ହୋଇ ରହିଯାଇଥିବ । ତା'ବି' ସନ୍ଦେହଜନକ ।

କିନ୍ତୁ ତଥାପି ମୁଁ ତାକୁ ଭଲପାଏ । ଅତ୍ୟନ୍ତ ଭଲପାଏ । ମୋ ଭଲପାଇବା ଅକାରଣ, ସେଇଥିପାଇଁ ଅତ୍ୟନ୍ତ, ଏତିକ ବୁଝିପାରୁ ନାହିଁ ?

ସେଇ ଅତ୍ୟନ୍ତ ପଣର ମଜା ପାଇଛି ବୋଲି ତ ମୁଁ ଏଇ ରୌଦ୍ରକୁ ଲୋଡ଼ୁଛି, ଖୋଜୁଛି ଏବଂ ତା'ର ଅନ୍ତସ୍ଥଳକୁ ପାଇବ ବୋଲି ଅଡ଼ି ବସିଛି !

ମଦନମୋହନଙ୍କ ମନର ଆଶା ଯେପରି ଉଦ୍ଦୀପ୍ତ ଏବଂ ପ୍ରକ୍ଷିପ୍ତହୋଇ ଆଗେଇ ଚାଲିଛି, ସେଥିରୁ ମନେହେବ ଯେ ବରଗ୍ ଅନେକ ସମସ୍ୟ ଯାଏଁ ଉଦୁହିଦଆ ଖରାରେ ଘୁରି ବୁଲୁଛନ୍ତି । ଧନ୍ୟ କହିବ ଲୋକଟାର ସହିବା ଶକ୍ତି ! କିନ୍ତୁ ପ୍ରକୃତପକ୍ଷେ ସମସ୍ୟର ଗତି ତାଙ୍କ ଭାବନାର ଗତିଠାରୁ ଅନେକ ପଛରେ ପଡ଼ିଛି । ଖାସ୍ ସୌରବିତାନ ତଳେ ଚାଲିବାବୁଲିବା ଅଧଘଣ୍ଟାରୁ ବେଶି ହେବ ନାହିଁ । କିନ୍ତୁ ସେଇ କଣ କମ୍ ହେଲାଣି ? ମଦନମୋହନଙ୍କ ପରିଣତ ବୟସ, ସାମାଜିକ ସ୍ଥିତି (ସେ ଦିଲ୍ଲୀରେ ଥିବା ବିଭିନ୍ନ ବେସରକାରୀ ସଂସ୍ଥାରେ ଗାଣିତିକ, କୋଷାଧ୍ୟକ୍ଷ, ସମୀକ୍ଷକ ଆଦି ଧୋବଧାଉଳିଆ କାମ କରି ଆସିଛନ୍ତି, ଅଧିକାଂଶ ପଦରେ ବସିଛନ୍ତି, ଏବଂ ଆଜିକାଲି ସେସବୁ କାମ ଛାଡ଼ି ଦେଇ ଗୋଟିଏ ବୋଲି ଝିଅର ଘରେ ବରସ୍ଥାୟୀ ଅତିଥି ହୋଇ ଅଛନ୍ତି) ଇତ୍ୟାଦି ଦୃଷ୍ଟିରୁ ତାଙ୍କର ଏଇ ସୌରଭାବାପନ୍ନତାକୁ ଧନ୍ୟ ନ କହିବା କେମିତି ? ଅବଶ୍ୟ ତାଙ୍କ ଜୀବନରେ ସେ ଏମିତି କେତେଥର ବୁଡ଼ିଯିବାର, ଉଡ଼ିଯିବାର, ଉଚ୍ଚପର୍ବତ ତଳେ ଲୁଚିହଜି ଯିବାର, ହୁଏତ ନଦୀଘରେ ପୋଡ଼ି ଜଳି ଯିବାର ଉଲ୍ଲାସକୁ ଲୋଡ଼ିଛନ୍ତି । କିନ୍ତୁ ମାତ୍ର କ୍ଷଣକ ପାଇଁ । ଏତେ ସମସ୍ୟ ଯାଏଁ ନୁହେଁ । ତା'ଛଡ଼ା ସେ ଏଥିପୂର୍ବରୁ କେବେହେଲେ ଏଭଳି ମନୋଲ୍ଲାସକୁ ଅକାରଣ ଭଲ ପାଇବା ସାଙ୍ଗରେ ଯୋଡ଼ିଛନ୍ତି ବୋଲି ମନେ ହେଉ ନାହିଁ ତ ?

ସତକଥା କହିବାକୁ ଗଲେ ମଦନମୋହନଙ୍କର ଲୋଭ ହେଉଥିଲା ଅଳ୍ପସମୟ ପାଇଁ ଖରାରୁ ଛାଇକୁ, ମାନେ ମାର୍କେଟ ବିଲ୍‌ଡ଼ିଂଗ୍‌ସ୍‌ର ବାରଣ୍ଡା ଉପରକୁ ଉଠିଯିବାକୁ, ଯାହାର ଛାଇ ଅଛି । ଯେଉଁଠି ସ୍ଥିତିବାନ୍ ଦୋକାନଘରମାନ ଲଗାଲଗି ହୋଇଅଛି ଏବଂ ଆହୁରି ଭିତରକୁ ଆହୁରି ଛାଇକୁ ଆସ ବୋଲି ନିମନ୍ତ୍ରଣ କରୁଛି । ତନ୍ମଧ୍ୟରୁ ଏଭଳି କେତୋଟି

ବାତାନୁକୂଳିତ ଦୋକାନ ମଧ୍ଯ ଅଛୁ ଯାହା ଭିତରକୁ ଗ୍ଲଲଗଲେ ରୌଦ୍ରପୀଡ଼ା କେବେକାର ଦୁଃସ୍ୱପ୍ନ ବୋଲି ମନେ ହେବ । କିନ୍ତୁ ସେ ଲୋଭ ସମ୍ବରଣ କରି ରହୁଥିଲେ । ପ୍ରାକ୍‌ଟିକାଲ୍ ଦୃଷ୍ଟିକୋଣରୁ ସଫେଇ ଦେଉଥିଲେ ଯେ ସେଠି ଯେଉଁସବୁ ଖୋଲଣା ଦୋକାନ ଅଛୁ, ସେଗୁଡ଼ିକ ବେକାର । ଫକଫକ ହୋଇ ଡେଉଁଥିବା ବେଙ୍ଗ ଆଉ ମିଳିବ ନାହିଁ, ମିଳିଲେ ମଧ୍ଯ ଅମୂଲମୂଲ ହୋଇଥିବ । ଅବସରପ୍ରାପ୍ତ ମଧ୍ୟବିତ୍ତ ଅଜାର ନାଗ ପାଇଁ ନୁହେଁ । କିନ୍ତୁ ଭିତରଆ ଦୃଷ୍ଟିରୁ ଭାବୁଥିଲେ ଯେ ତା'ଛଡ଼ା···ତାହା ସୌରଜଗତରୁ ଭିନ୍ନ । ଆଜିକାର ମୋର ଏଇ ଅପୂର୍ବ ବିଦ୍‌ଗଧ ଚେତନାକୁ ସୁହେଇବ ନାହିଁ ।

ନା, ମୁଁ ଉଠିବି ନାହିଁ ବାରଣ୍ଡା ଉପରକୁ । ଏଇଠି ଘୂରି ବୁଲିବି, ଏବଂ ମାର୍କେଟ୍ ବିଲ୍‌ଡ଼ିଂଗ୍‌ସ୍‌ର କଡ଼େ କଡ଼େ ତା ସାମନା ଖୋଲା ପଡ଼ିଆର ଧାରରେ ବସିଥିବା ମୁନିସିପାଲିଟିର ଆଖିରେ ଧୂଳି ଦେଇ (ଅବା ସେଠିକାର କର୍ମକର୍ତ୍ତାମାନଙ୍କ ପକେଟ୍ ଗରମ କରି) ଜମି ଯାଇଥିବା କ୍ଷଣସ୍ଥାୟୀ ବଜାର ବିପଣୀର ଆଡ଼ମ୍ବରକୁ ଦେଖିବି । ରୌଦ୍ରତାପକୁ ପରୁଆ ନ କରି, ହୁଏତ ସାମାନ୍ୟ କେର୍‌ପାଲ୍‌ତଳେ ଆପଣାକୁ ବଞ୍ଚେଇ ରଖି, ପସରା ମେଲାଇଥିବା ଦୋକାନୀମାନଙ୍କର ଉଦ୍ୟମକୁ ଲକ୍ଷ୍ୟ କରିବି, ଖୁସି ହେବି, ଗରାଖମାନଙ୍କର ଆଗ୍ରହ ଓ ଭାଉ ଛୁଣ୍ଡେଇବାର ଭିଡ଼ାଓଟରା ପାଟିତୁଣ୍ଡକୁ ମଧ୍ଯ ଦେଖିବି, ଶୁଣିବି, ଖୁସି ହେବି ।

ଆଜି ଏଇମାନେ ମୋ ସୌରଜଗତର ସାଥୀ । ଯଦିଓ ମୋର ଉଦ୍ୟମ ଅନେକ ଊର୍ଦ୍ଧ୍ୱରେ, ମୋ ବନ୍ଧନର ଗୁଣ ନଥାଏ··· ।

ତେବେ ଏଇ ମେସିନ୍-ଥଣ୍ଡା ପାଣିଗାଡ଼ିରୁ ଗିଲାସେ ପାଞ୍ଚପଇସିଆ ପାଣି ପିଇଲେ ମନ୍ଦ ହେବ ନାହିଁ । ଯା'କୁ ସମ୍‌ଝୌତା ବୋଲି କୁହା ଯାଇ ନ ପାରେ । ଶୋଷ ମେଣ୍ଟେଇଲେ ସୌରଦର୍ଶନରେ ଆଞ୍ଚ ଲାଗିବ, ଏଭଳି ପ୍ରଶ୍ନ ଉଠୁ ନାହିଁ । ଏପରି ଭାବରେ ନିଜକୁ ବୁଝେଇ ଦେଇ ମଦନମୋହନ ପାଣିବାଲାଠାରୁ ପାଣି ଗିଲାସେ ପିଇଲେ । ଗିଲାସେରୁ ଦ'ଗିଲାସ ପିଇଲେ । ସେଇଠୁ ତୃପ୍ତିର ବିରାମକୁ ସମ୍ମାନ ଦେଲା ପରି ଠିଆ ହୋଇ ରହିଲେ କ୍ଷଣକ ପାଇଁ । ଭାବିଲେ ଟିକିଏ ଭଲ ଭାବରେ ଦେଖିନିଏ ଏମାନଙ୍କୁ, ମୋର ଏଇ ରୌଦ୍ରସାଥୀମାନଙ୍କୁ—କ'ଣ ବେଲ ପଲଉଛୁ ମୋ ବେଙ୍ଗ କଣିବା ପାଇଁ ?

ଦେଖିଲେ । କେବଳ ଦେଖିଲେ ନାହିଁ, ଶୁଣିଲେ ଏବଂ ଏକ ଶବ୍ଦବର୍ଣ୍ଣସମ୍ବଳିତ ଧୂପ ଧୂଆଁ ଉପରକୁ ଉଠିଲା ପରି ଲାଗିଲା···ସତେ ଉଠି ଉଠି ପହଞ୍ଚିଯିବ ସେଠି, ସୌର-ମଣ୍ଡଳର ସୂର୍ଯ୍ୟଙ୍କ ପାଖରେ । ସେଥିରେ ଥିଲା,

—"ଲେ-ଲେ ଲେ-ଲେ ବସ୍ ରୁବସ୍ତାର କୁହାଟ ଓ କୁଢ଼ କୁଢ଼ ହୋଇ ଜମା ହୋଇଥିବା ରଙ୍ଗ ବେରଙ୍ଗ ସାର୍ଟ, ବୁସ୍‌ସାର୍ଟ, ଟି ସାର୍ଟର ମେଲା । ବସ୍ ରୁବସ୍ତା ନା ଗାସ୍ ରୁବସ୍ତା, ଠିକ୍ ବୁଝା ପଡ଼ୁ ନାହିଁ । କିନ୍ତୁ କଣ ମିଳିବ ସେଥିରୁ ? କୁହାଟ ହିଁ ବଡ଼ କଥା । ଦେଖ ଏଇ ନର୍ଯ୍ୟୂମ୍ ଖରାରେ ମୁଁ କେମିତି ପାଟି କରି ପାରୁଛୁ, ମୋର ବେକତଳ ଶିରା

ଫୁଲ୍ ଉଠୁଛି, କଳା ମୁହଁର ଝାଳ ଚମକୁଛି । ଦେଖ ଶୁଣ ଏଇ ମୋର ରୁଦ୍ର ସାଧନା··· । କେଉଁଠି କାମିଜ ଓଜେର ତ କେଉଁଠି ପ୍ୟାଣ୍ଟ୍ ଓଜେର ଏବଂ କେଉଁଠି ପିଆଜ୍ଜ ଖଣ୍ଡା ହେଲା ପରେ 'ବ୍ରା'ର ପାହାଡ଼ । କଏ ଗର୍ଜୁଛି ତ କଏ ସ୍ୱର ମେଲୁଛି ଏବଂ କାହାର ତଣ୍ଟି ପଡ଼ି ଗଲଣି । କିନ୍ତୁ ସମସ୍ତେ ଟୋକା, ଦୁର୍ଦ୍ଧର୍ଷ ଯୌବନ, ସେଠୁ ବାଛୁଛି ଆକାଶକୁ··· ।

—ବେଲୁନ୍‌ବାଲାର ବେଲୁନ୍ । ମୁଁ ସ୍ୱର ଉଠେଇବି ନାହିଁ । କାରଣ ତୁମର ବୁଝିବା ଦରକାର ଯେ ମୋ ପାଖରେ ଯେଉଁ ରଙ୍ଗ ଅଛି, ଯେତେ ରଙ୍ଗ ଅଛି; ସବୁ ଉପରକୁ ଉଠିବ । କାହିଁ କେଉଁଠି ପହଞ୍ଚିବ । ତୁମ ପିଲାକୁ ପଚାର । ହୋଇପାରେ ମୁଁ ନିଜେ ବୁଢ଼ା, ମୁହଁରେ ଧଳା ଦାଢ଼ି ମେଞ୍ଚାଏ, ମୁଁ ପାଟି କଲେ ବି' ତା'କୁ ଶୁଣି ପାରିବ ନାହିଁ । କିନ୍ତୁ ଦେଖ ଏଇ ରଙ୍ଗ, ରଙ୍ଗରେ ଖସ୍, ଖସ୍‌ରେ ରଙ୍ଗ··· ।

—ଖସ୍‌ଠାରୁ ଆହୁରି ପ୍ରଚଣ୍ଡ ମୋ ଥାଳରେ ଯାହାଙ୍କୁ ଦେଖୁଛ । ଶନି ଗ୍ରହ । ଆଜି କେଉଁ ବାର ମନେ ଅଛି ତ ? ବେଶ୍ । ତାଙ୍କୁ ନମସ୍କାର କର । ଥାଳରେ ପଇସା ପକାଅ··· ।

—ମୋତେ ଗୁଡ଼ି ତଳେ ସିମେଣ୍ଟ୍ ଚଟାଣରେ ଘୁସୁରିବାର ଦେଖିଛ । କିନ୍ତୁ ଏଇକ୍ଷଣି ଦେଖ ମୁଁ କେମିତି ଧୂଳିରେ ଘୁସୁରୁଛି, ମୁଣ୍ଡଫଟା ଖସ୍‌ତଳେ ଘୁସୁରୁଛି (ମୋ ମୁଣ୍ଡର ମୁହଁ ଛେଚି ହୋଇ ଯାଇଛି, ନହେଲେ ଅସନା ଦେଖା ଯାଉଛି, ହେଲେ ମୋ ମୁହଁ ବି କାନ୍ଦେ, ବିଶ୍ୱାସ କର), ଦେଖ ଏବଂ ଆହୁରି ତାଡ଼ଉଠ, ନିଜ ଉପରେ କି ସିଷ୍ଟମ୍-ସରକାର ଉପରେ, ତା' ତୁମେ ଜାଣିଥିବ । ସେଇଠୁ ଗୁଡ଼ିଏ କିଛି ଗୋଟାଏ ମୋ ଉପରକୁ··· ।

—ମୋ ପାଖକୁ ଆଉଥରେ ଆସିବ ନାହିଁ ? ହେଲା ଏବେ ଯେ ମୋ ବେଙ୍ଗ ମେଦା ହୋଇ ବସିଛି, ମୋ ଠେଙ୍ଗୁଆ ଗୋଡ଼ ଜୁଳୁ ଜୁଳୁ ହୋଇ ଗୁନ୍ଥିଛି, କିନ୍ତୁ ମୋ ନାଲି ଘୋଡ଼ାକୁ ଦେଖିପାର; ସେ କେମିତି ତା'ର ଖୁରକୁ ଉଠଉଛି ପକଉଛି, ଗୁହୁଁ ଗୁହୁଁ ମାଡ଼ି ଯିବ ତୁମ ଶତ୍ରୁ ଉପରକୁ । ଆଉ ଦେଖ ତା'ର ତେଜ, ସିଧାସଳଖ ଆସିଛି ଉପରୁ, ତୁମର ସେଇ ଉପରୁ । ନବ ଯଦି ନିଅ, ନ ହେଲେ ମୁଁ ଉଠି ପଳେଇଯିବି, ଆଉ ମୋ ଘରବାଲୀ ମୁଣ୍ଡରେ ଅଜାଡ଼ି ଦେବି ଏଇ ଯେତେକ ବାଜେ ମାଲ । ମୋ ନାଲି ଆଖି ଖାଲି ଖସ୍‌ରେ ନାଲି ହୋଇନାହିଁ··· ।

—ଆମକୁ ଦେଖିବ ଯଦି ଦେଖ, ଶୁଣିବ ଯଦି ଶୁଣ । ଆମେ କିଣିଲାବାଲା, କିନ୍ତୁ ତୁମଭଳିଆ ନୁହଁ । ଅମେ କେତେ ସମସ୍ତ ଯାଏଁ ଖସ୍‌ରେ ବୁଲିବୁ ଜାଣୁନା । ଆମେ ଖାଲି ଆସିଛୁ ଝଲମଲ ଶସ୍ତା ମାଲ କିଣିବା ପାଇଁ, ମହଙ୍ଗା ଜମା'ନାର ବିବି ବଚ୍ଚାଙ୍କୁ ତୁଷ୍ଟ କରିବା ପାଇଁ । ବିବିଙ୍କର ସତ-ମିଛ ସିଲ୍‌କ୍ ଶାଢ଼ୀ ଦରକାର, କୋଉ ନୂଆ ଲିପ୍‌ଷ୍ଟିକ୍ ···ଆରେ ସେ କଣ ସେଇ 'ବାଲା' ପାଖରେ ଲଖି ଯାଇଛି, ଫେରି ଆସିବାର ନାଆଁ ଧରୁ

ନାହିଁ ? ସେମିତି କଥାକୁ ଏଇ ଯୋଉ ପିଲାଟା ମୋ କାନ୍ଧରେ ଶୋଇଛି, ତାକୁ ଚମୁଚିବ ଯାଉଛି···।

—ଆମକୁ ମଧ୍ୟ ଦେଖିବା ଉଚିତ, ଯଦିଓ ଆମେ ଖାଲି ଆସିଛୁ ଖଣ୍ଡବାଟ ଦେଇ ଉଡ଼ିଯିବା ପାଇଁ ଆଉ କେଉଁଠିକି । ଛାଇତଳୁ ଆଉ କେଉଁ ଛାଇତଳକୁ । ଲଳିତା ଶ୍ରୀନିବାସନର ଜାଠ ଖାଇ, ଆମେ ଉଡ଼ିଯିବୁ କୋଉ ନ୍ୟାସନାଲ୍ ଇଣ୍ଟରନ୍ୟାସନାଲ୍କୁ । ଅବା ଖଣ୍ଡର ଆଚୁଆଳରେ ଲୁଚି ରହିଥିବା ରେସ୍ତୋରାଁ, ଆଇସ୍କ୍ରିମ ଇତ୍ୟାଦିର ମଉଜକୁ । ହେଲେ ଆମେ ତୁମର ମିଛିମିଛିକା ରୌଦ୍ରସାଥୀ ନୋହୁଁ ,ଆମେ ତୁମ ସତସତିକା ସମାଜର ଭାଇଭଉଣୀ କି ପୁଅଝିଅ । ସେଇଠୁଁ ଖିଲ୍ ଖିଲିଆ ହସ, ଷ୍ଟୁପିଡ୍ ଖରାକୁ ବାଟରୁ ହଟେଇ ଦେବାର ହସ ··।

—ଆମେ ଯେଉଁମାନେ ଘରେ ନ ଶୋଇ ଗଛ ଛାଇତଳେ ଶୋଇଛୁ, ଆମ ଉଦ୍ୟମ-ଉପଭୋଗ କିଛି କମ୍ ନୁହେଁ । ତୁମେ କେଉଁଠୁ ବୁଝିବ ? ହେଲା ଏବେ ଗଛରୁ କ'ଣ କେତେବେଳେ ପଡ଼ିବ ଅପ୍କଜ, କିମ୍ବା କୋଉ ସାର୍ଟପ୍ୟାଣ୍ଟ୍ ପିନ୍ଧିଛୁ ଯେ କପଡ଼ା ମଇଳା ହୋଇବ ? ତେଣୁ ଆମ ଆରାମ ଘୁଙ୍ଗୁଡ଼ିକୁ ବି' ମିଶେଇ ଦିଅ ତୁମ ଚେତନାରେ, ଉପରକୁ ଉଠୁଥିବା ଏକେଇ ଉତ୍ସବର ଧୂପଧୂଆଁରେ ଏବଂ ଯଦି ଆପତ୍ତି ନ ଥାଏ ଟିକିଏ ଡରେଇ ଦିଅ ଆମ ଗୋଡ଼ପାଖରେ ଲୁଦି ବୁଲୁଥିବା ଛେଳିଛୁଆ, ପାଣିକଳ ତଳେ ଚେଁ ଚେଁ-ଚବର ଚବର ହେଉଥିବା ଚଢ଼େଇ ଓ ଛାଇ ଉପରେ ଛାଇ ମାରି ବୁଲିଥିବା ଷଣ୍ଢକୁ । ସତେକି ଆମେ ଶୋଇ ଯାଇଛୁ ବୋଲି ଏଇ ଖରାପଡ଼ିଆଟା ପୁରାପୁରି ତାଙ୍କର !

—ଆହୁରି ଅଛି; ଯାହାର ଜୀବନ ନାହିଁ ବୋଲି ଭାବୁଛ । ପି.ଡବ୍ଲୁ.ବାଲା ଛାଡ଼ି ଯାଇଥିବା ପଥରଗଦାରେ ଯେଉଁ ମଣିମୁକ୍ତା ଚକଚକ କରୁଛି, ପୁରୁଣା ଦପଣୀ-ପ୍ରାନ୍ତରକୁ ହେୟଜ୍ଞାନ କରି ନୂଆ ଆକାଶଛୁଆଁ ଦପ୍ତରର ଏଇ ଯେଉଁ କାଚଝରକା ଜକ ଜକ ହେଉଛି, ସନାତନ ମନ୍ଦିରର ଚୂଡ଼ାରେ ଯେଉଁ ପତାକା ତଥାପି ଫରଫର ହେଉଛି ଏବଂ ସର୍ବୋପରି ଯେଉଁ ମଲା ବିଲେଇ (ଛାଇ ଲେଉଟିଲେ ସିନା କୋଉ ମେହେନ୍ତର ଆସିବ ତା'କୁ ଉଠେଇ ନେବାପାଇଁ ? ) ତା'ର ଦୁର୍ଗନ୍ଧକୁ ଶୁଖେଇ ଉଡ଼େଇ ଦେଉଛି ଖରାରେ··· ଆମ୍ଭେ ଏଇମାନେ ମଧ୍ୟ ସଲାମ୍ କରୁଛୁ ମାର୍ତ୍ତଣ୍ଡକୁ । ଆମ ନିଜ ନିଜ ବଡ଼େଇକୁ ଚହଲେଇବା ପାଇଁ । ଚିହ୍ନୁଛ କି ନାହିଁ ?

ମଦନମୋହନ ଚିହ୍ନିଲେ । ଗୋଟି ଗୋଟି କରି ବେଶ୍ ଚିହ୍ନିପାରିଲେ ସେମାନଙ୍କୁ ଅନ୍ତତଃ ସେଇପ୍ରକାର ଧାରଣା ହେଲା ତାଙ୍କର, ଏବଂ ସେମାନଙ୍କର ରୌଦ୍ରଜଣା ଉଦ୍ୟମକୁ ସାବାସ୍ ବୋଲି କହିଲେ । ଏହି ଉଦ୍ୟମ ହିଁ ପ୍ରଣାମ । ଉପରବାଲା ଏହାହିଁ ଚାହେଁ ।

ମଦନ ମୋହନ ହସିଲେ ମଧ୍ୟ । ଯେ ବିଚରା ତୁମେମାନେ ତଥାପି ଅନେକ ପଛରେ ପଡ଼ିରହିଛ । ତୁମେ ଜାଣିପାରୁନାହଁ ସିନା, ତୁମ ଧୂପଧୂଆଁ ସେଯାଏଁ ପହଞ୍ଚିପାରିବ ନାହିଁ । ଅଧାରୁ କଟିଯିବ, ମିଳି ହଜିଯିବ । କାହିଁକିନା ତୁମ ଉଦ୍ୟମରେ ରହିଛି···ବଡ଼ ହରଫ୍‌ରେ ଲେଖା ଶବ୍ଦଟିଏ । ସ୍ୱାର୍ଥ । କେହି ଅକାରଣରେ ନମସ୍କାର କରୁନାହିଁ । କେହି ଭଲ ପାଇବା ହେତୁ ନମସ୍କାର କରୁନାହିଁ । କେହି ଅକାରଣରେ ଭଲ ପାଇବା ହେତୁ ନମସ୍କାର କରୁନାହିଁ ।

ସେଇଲାଗି କାହାରି ଲୋଭ ହେଉ ନଥିବ, ସାହସ ହେଉ ନଥିବ ଉର୍ଦ୍ଧ୍ୱକୁ ଅନାଇବା ପାଇଁ—ନୁହେଁ ? ମୁଁ ଜାଣିଛି, ମୁଁ ଜାଣିଛି । ସମସ୍ତେ କଣ ମଦନମୋହନ ଦାସ ହୋଇଛନ୍ତି ? ମୋର ଜୀବନଦର୍ଶନ, ଦୀର୍ଘ ଅନୁଭୂତିର ବରଦାନ, ଏକ ତିକ୍ତ-ମଧୁର ସତ୍ୟ । ଯେ ଅକାରଣ ହିଁ କାରଣ ବଞ୍ଚିବାର । ବାକିସବୁ ମିଛ, ମାନେ ଯେତେକ ତଥାକଥିତ ସୁଖ, ଯାହାକୁ କାରଣ ବୋଲି କୁହାଯାଏ । ଧନ, ମାନ, ଯଶ ଇତ୍ୟାଦି ଏବଂ ତୁମର ସେଇ ଦିଆନିଆର ଭଲ ପାଇବା··· ।

ଏହି ସମୟରେ ତାଙ୍କର ମନେହେଲା ସେ ଦେଖୁଛନ୍ତି ଜଣେ ବିଶିଷ୍ଟ ଚରିତ୍ରକୁ । ତାଙ୍କରି ଶ୍ରେଣୀର ଏବଂ ସେହିଭଳି ବେଶଭୂଷା ପରିହିତ (ଯଦିଓ ସେ ତା' ଆଖିରୁ କଳା ଚଷମା ଉତାରି ନାହିଁ) ଜଣେ ସୁପରିଚିତ ଭଦ୍ରଲୋକ । ବନ୍ଲୁଣ ଏଣ୍ଡ୍ କୋରେ ଥିଲାବେଳେ ସମ୍ପୃକ୍ତ ସରକାରୀ ଦପ୍ତରର ଅଧିକାରୀ ବିଶେଷ, ଯାହାପ୍ରତି ସମସ୍ତଙ୍କର ଦରଦ । କାହିଁକିନା ବିଚରା ଯେତେ ବଡ଼ଲୋକ, ଯେତେ ବଡ଼ ଅଫିସର ଏବଂ ଯେତେ ସୁଦର୍ଶନ ହେଲେ କ'ଣ ହେବ, ଟ୍ରାଜେଡ଼ି ତା' ପାଖ ଛାଡ଼ୁନାହିଁ । ତାକୁ କୁଣ୍ଢେଇ ଧରିଛି କହିଲେ ଚଳେ ।

ହଁ, ସେଇ ଜଣକ ଗୌତମ କୁଣ୍ଡୁ । ମୁଁ ତା'କୁ ଭଲ ଭାବରେ ଜାଣେ । ମୋର ବି ତା' ପ୍ରତି ଦରଦ କାହିଁରେ କଅଣ ।

ଖାଲି ଠିଆ ହୋଇଛି । ମନେହେଉଛି କିଣା-ବିକା ସାଙ୍ଗରେ କିଛି ସମ୍ପର୍କ ନାହିଁ ତା'ର । ଖବର ପଢ଼ିଆର କାହାରି ସାଙ୍ଗରେ କିଛି ସମ୍ପର୍କ ନାହିଁ ତା'ର । ଦୈବାତ୍ ପହଞ୍ଚି ଯାଇଛି ଏଠି ଏବଂ ଠିଆହୋଇ ରହିଛି । ତା'ର କଳା ଚଷମାର ଦୃଷ୍ଟି ଫିଙ୍ଗିଦେଇଛି କେଉଁ ଦୂରକୁ । ଆଉ କାହାକୁ ଅପେକ୍ଷା କଲାପରି !

ନା ସେ ମଧ୍ୟ ଦହନ ଦୁଃଖକୁ ଲୋଡ଼ୁଛି, ଭୋଗୁଛି ? ଯେମିତିକି ସେଇଥିରେ ତା'ର ଜାଗତିକ ସାଂସାରିକ ଦୁଃଖ ଜାଳି ହୋଇଯିବ ? ଏବଂ ସେଇଲାଗି ଏମିତି ଥୁଣ୍ଟା ହୋଇ ଠିଆ ହୋଇ ରହିଛି, ଖେଳଣାବାଲାର ପଛକୁକନ ଓ ଅନେଇଛି କେଉଁ ଶୂନ୍ୟକୁ ?

ଗୌତମ କୁଣ୍ଡୁଙ୍କ ପ୍ରତି ମଦନମୋହନଙ୍କ ଦରଦ ପ୍ରବଳ ହୋଇ ଉଠିଲା । ଭାବିଲେ ଯେ ଯେତେହେଲେ ମୋର ଏଇ ଆତ୍ମ-ପୀଡ଼ନ ଦାର୍ଶନିକ, ଅତି-ସୂକ୍ଷ୍ମ ଏବଂ ଅତି-ଗଭୀର ଅନୁଭବର ଶାନ୍ତି । କିନ୍ତୁ ସାଧାରଣ ଦୃଷ୍ଟିରୁ ଦେଖିବାକୁ ଗଲେ ମୋର ଯେମିତି

କିଛି ହୋଇନାହିଁ । ମାନେ କିଛି ଗୋଟାଏ ଘଟଣାର ସଂଘାତ ଅବା ଅତି-ଆପଣାର କାହାକୁ ହରେଇବାର ଆଘାତ, ଯାହା ପରେ···(କଣ ହୁଏ ? ବୁଦ୍ଧି ହଜିଯାଏ ? ଦର୍ଶନ ବିସ୍ତର କି ଧରନ୍ତୁଆଁ ହୁଏ ନାହିଁ ?) ଆହା, ଲୋକଟା ସତେ ନିହାତି ଟ୍ରାଜିକ୍ ।

ପ୍ରଥମେ ବଡ଼ ଝିଅଟା ପୋଲିଓ ରୋଗରେ ଛୋଟି ହୋଇ ଯାଇଛି ପିଲାଟି ଦିନୁ । ଅବଶ୍ୟ ସେ ତଥାପି କେଉଁ ଦୟାଳୁ ପ୍ରେମିକ ଡାକ୍ତରକୁ ବାହାହୋଇ ଘର ସଂସାର କରୁଛି । ହେଲେ ବାପମାଆଙ୍କ ହୃଦୟ କେମିତି କରତି ହୋଇଯାଏ ତା'ପାଇଁ, ମୁଁ ନିଜେ ଦେଖିଛି । ଯେତେବେଳେ ତାଙ୍କ ଷ୍ଟେରିଓ ସିଷ୍ଟମ୍‌ରେ କେତୋଟି ବିଶିଷ୍ଟ କ୍ୟାସେଟ୍‌ର ଗୀତ ବାଜିଉଠେ । ସୁହୁଁ ସୁହୁଁ ମିସେସ୍ ସୋନାଲି କୁଣ୍ଡୁଙ୍କର ଆଖି ଛଳଛଳ ହୋଇଯାଏ । କହନ୍ତି, ମୋର ମୀନା କଥା ମନେପଡ଼ୁଛି । କଣ ମନେପଡ଼ୁଛି, କାହିଁକି ମନେପଡ଼ୁଛି ବୋଲି ପଚାରିବାକୁ ସାହସ ହୁଏନାହିଁ । ମୁଁ ଗୌତମ ଆଡ଼କୁ ଅନାଏ କିନ୍ତୁ ଦେଖେ ସେ ବି ଅନ୍ୟମନସ୍କ ହୋଇ ଅନେଇଛି କାନ୍ଥକୁ (ଆଜି ଯେମିତି ଅନେଇଛି ଶୂନ୍ୟକୁ, କି ମାର୍କେଟ୍ ବାରଣ୍ଡାର କେଉଁ ଖୁଣ୍ଟକୁ, ଭଗବାନ ଜାଣନ୍ତି)···ଏଇ ଟ୍ରାଜେଡ଼ିର ଶୋକ ଅସ୍ଥିମଜ୍ଜାରେ ମିଳେଇ ଗଲା ପୂର୍ବରୁ ଆହୁରି ଗୋଟାଏ ଟ୍ରାଜେଡ଼ି । ଦଶବର୍ଷର ପୁଅ ଲିଉକୋମିଆରେ ମରିଗଲା ଧଳାଂଧଳା ହୋଇ । କୋଉ ଡାକ୍ତର ବଇଦ, ଗୁଣିଆ, କେଦାରନାଥ, ବଦ୍ରିନାଥ, ପୁରୀ ଜଗନ୍ନାଥ; ତିରୁପତି ଓଗେର ଓଗେର କେହି କିଛି କରି ପାରିଲେ ନାହିଁ । ତା'କଥା ସିଧାସଳଖ ପଡ଼େ ନାହିଁ ଡ୍ରଇଁ ରୁମ୍‌ରେ, ଅନ୍ତତଃ ଆମେ କେହି ଥିଲାବେଳେ । କିନ୍ତୁ ସୁଯୋଗ ପାଇଲେ ମିସେସ୍ କୁଣ୍ଡୁ ଡାକ୍ତର ବଇଦଙ୍କ ବଢ଼େଇ ତଥା ଠାକୁରପଣିଆ ଉପରେ ଗୋଟିଏ ବକ୍ର 'ହୁଁଃ !'ର ନିଃଶ୍ୱାସ ନ ଛାଡ଼ି ରହି ପାରନ୍ତି ନାହିଁ । ଗୌତମ ପାଖରେ ଥିଲେ ପତ୍ନୀଙ୍କ ଦେହରେ ହାତ ରଖେ, ତାଙ୍କ କ୍ରୋଧକୁ ଆପୁଡ଼େଇଲା ପରି । ମୁଁ ଏସବୁର ଅର୍ଥ ବୁଝିଲି ପରେ ଅନ୍ୟମାନଙ୍କଠାରୁ । ବୁଝିଲି ଯେ କେତେ ବଡ଼ ଟ୍ରାଜେଡ଼ିକୁ ସେମାନେ ଚାପି ରଖିଛନ୍ତି ନିଜ ଭିତରେ । ଶେଷକୁ ଆଉ ଗୋଟାଏ ଟ୍ରାଜେଡ଼ି ଘଟିବାକୁ ଥିଲା ଗୌତମ କୁଣ୍ଡୁର ବୁଢ଼ା ବୟସରେ । ସେତେବେଳକୁ ଗୌତମ ଦିଲ୍ଲୀରୁ ନାଏରୋବି (ୟୁ.ଏନ୍.ଓ.) ବାଟ ଦେଇ କଲିକତାକୁ ଫେରିଗଲାଣି । ରିଟାୟାର କରିଯିବଣି ନିଶ୍ଚୟ । ଶୁଣିଲି ଯେ ସୋନାଲି କୁଣ୍ଡୁ ଚାଲିଗଲେ । ହଠାତ୍ ହାର୍ଟ୍ ଫେଲିଓର୍ । ସମବେଦନାର ଚିଠି ଦେଇଥିଲି ଅବଶ୍ୟ । କିନ୍ତୁ ବର୍ତ୍ତମାନ ତା'କୁ ଆଖି ସାମନାରେ ଦେଖିଛି ଯେତେବେଳେ ତା' ପାଖକୁ ଯାଇ କୁହନ୍ତି ନାହିଁ କିଛି ? କହି ନ ପାରିଲାପରି ସମବେଦନାର ପଦୁଟିଏ ?

ମଦନମୋହନ ଆଗେଇଲେ । ଖେଳଣାବାଲାର ଗୁହାଣୀରେ ଜାଗି ଉଠିଥିବା ଆଶାର ଶିଖାକୁ ଅସ୍ୱୀକାର କଲେ ଏବଂ ତାଙ୍କର ଖିଆଲ ହେଲା ଯେ ଏଇ ଗୌତମ କୁଣ୍ଡୁ ଲୋକଟା ନିହାତି ଟ୍ରାଜିକ୍, ନିହାତି ସୁପୁରୁଷ, ତେଣୁ ନିହାତି ପ୍ରିୟ ସମସ୍ତଙ୍କର । ଅତଏବ ତା'ପ୍ରତି ଦୟା ଦେଖାଇବା ନିରର୍ଥକ । ଆସି ବୁଢ଼ା ହେଲାଣି, ମୋଠୁଁ ବଡ଼ ହେବ ପଛେ ସାନ ହେବ ନାହିଁ; କିନ୍ତୁ ତା' ଚେହେରା ଯେମିତି ଅଛି—ଯେତିକି ଲୋଭ ହେବାର କଥା,

ଯେତିକି ପତଳା ହେବାର କଥା, ଓ ଯେତିକି ସରୁ ହୋଇଥିଲେ ନିଷ୍ଠୁର ନହୋଇ ସେମାଣିକ୍ ମନେହୁଏ, ନାକ ଯେତିକି ଉଚ୍ଚ ଏବଂ ଧାରୁଆ ହୋଇଥିଲେ ସ୍ୱଭାବିକତା ସାଙ୍ଗରେ ସ୍ୱବଳାଡରତା ମିଶିଗଲାପରି ମନେହୁଏ, ଗାଲ ଠିକ୍ ଯେତିକି ହାଡ଼ୁଆ ହୋଇଥିଲେ ପୌରୁଷ ନାରୀସୁଲଭ ସୁନ୍ଦରପଣରୁ ବର୍ତ୍ତିଯାଏ; ଅଥଚ ସେତିକି ବେଶି ନାହିଁ ···ମୁଣ୍ଡବାଳ ଅବଶ୍ୟ ଅଧାଅଧି ଧଳା ହୋଇଗଲଣି, କିନ୍ତୁ ସେଥିରେ ସେ ସୁଦର୍ଶନ ହେଲେ ମଧ୍ୟ ଯଥେଷ୍ଟ ସୁରୁଖା ଏବଂ ସମ୍ମାନାସ୍ପ ଦେଖାଯାଉଛି ।

ତା' ସାଙ୍ଗକୁ ସେ ଯେମିତି କଥା କୁହେ, ଧୀରେ ଧୀରେ, କାଳେ କାହାକୁ ବାଧିବ ପରି, ପୁଣି ଯେପରି ଭାବରେ ହସେ, ସତେ କି ହସ ହେଉଛି ସଫାଇକାକୁ ସହି ନେଇ କ୍ଷମା କରିବାର ଦ୍ୟୁତି, ଅଭିବ୍ୟକ୍ତି··· ।

ଧାତ୍ ! ଏମିତି ଗୋଟିଏ ସୁନ୍ଦର ସୁପୁରୁଷ ହେବାକୁ କିଏ କହୁଥିଲା ତୋତେ ? ଟ୍ରାଜେଡ଼ି ତୋତେ ଲୋଡ଼େଇବ ନାହିଁ ତ କଅଣ ଆସିବ ଆମ ଭଳିଆ ମାଟି କାଦୁଅର ମଣିଷ ପାଖକୁ ? ମଦନମୋହନ ନିଜ ଭାବନାରେ ଚମକି ପଡ଼ିଲେ । ତାଙ୍କର ମନେହେଲା ଯେ ଏଇ ଦୟାଭାବରେ କେବଳ କ୍ରୋଧ ନାହିଁ ଯାହା ବନ୍ଧୁସୁଲଭ, ଆହୁରି କିଛି ଅଛି, ହୁଏତ ଈର୍ଷା ଅଳ୍ପ ବହୁତ···।

ନା, ନା·· ଅନୁଚିତ ଭାବକୁ ମାଡ଼ିଦଳି ଦେଇ ମଦନମୋହନ ଉଚିତରୁ ଅଧିକ ହସି ହସି ମାଡ଼ି ଆସିଲେ ଗୌତମ କୁଣ୍ଡୁଙ୍କ ପାଖକୁ ଏବଂ ଇତରଜନଙ୍କ କୋଳାହଳକୁ ଠେଲି ଦେଲାପରି ପାଟିକରି ଉଠିଲେ—

"ହ୍ୟାଲୋ, ହ୍ୟାଲୋ···କେବେ ଆସିଲେ ଦିଲ୍ଲୀକୁ—କାହାକୁ ଅପେକ୍ଷା କରିଛନ୍ତି ନା କଅଣ ?"

ଉତ୍ତରରେ ଗୌତମ କୁଣ୍ଡୁ ଆଖିରୁ କଳା ଚଷମା ଉତାରି ଦେଲେ ଏବଂ ହସିଲେ ତାଙ୍କର ସେଇ କ୍ଷମାଶୀଳ ହସ । ଯାହା ମଦନମୋହନଙ୍କୁ ବିଶେଷ ଭଲ ଲାଗିଲା ବୋଲି କହି ହେବନାହିଁ ଏବଂ ବଦଳା ପ୍ରଶ୍ନ ପଚାରିଲେ—

"ଆଉ ଆପଣ କୁଆଡ଼େ ଆସିଛନ୍ତି ଏଣେ ?"

କରମର୍ଦ୍ଦନ ସହିତ ମଦନମୋହନ ପ୍ରଥମେ ଯାହା କହିବାକୁ ଆସିଥିଲେ କହି ପକାଇଲେ, "ଆଇ ଆମ୍ ସରି ଟୁ ନୋ···ମୋତେ ଭାରି ଖରାପ ଲାଗିଲା—ମୋ ଚିଠି ପାଇଥିବେ ନିଶ୍ଚୟ···( ଗୌତମ କୁଣ୍ଡୁଙ୍କ ମୁହଁରେ କୌଣସି ଭାବାନ୍ତର ଲକ୍ଷିତ ହେଲା ନାହିଁ) ମୁଁ ଆସିଥିଲି କ'ଣ କି, ମୋ ନାତିର ଜନ୍ମଦିନ ଆସନ୍ତା ଶୁକ୍ରବାର, ତା'ପାଇଁ ଆଉ ଗୋଟାଏ ବେଙ୍ଗ ଦରକାର, କମ୍ପା ଠେକୁଆ, ଯିଏ କି ଫୁକୁରୁଫୁକୁରୁ ନ ହୋଇ··· ।"

କିନ୍ତୁ ସେ ବୁଝିପାରିଲେ ଯେ ଗୌତମ କୁଣ୍ଡୁ କଥାଟାକୁ ଶେଷଯାଏଁ ଶୁଣିବାର ଅବସ୍ଥାରେ ନାହିଁ । ଆଉ କୁଆଡ଼େ ଅନେଇଛି । ହସିଲା ମୁହଁରେ ଦେଖୁଛି, ପାଇଲା ପରି ।

ଆଉ କଏ ଆସି ପହଞ୍ଚିଗଲଣି । ବୋଧହୁଏ ତାର ଅପେକ୍ଷାରେ ସେ ଠିଆହୋଇ ରହିଥିଲା ଏତେବେଳ ଯାଏଁ ।

ମଦନମୋହନ ଦୃଷ୍ଟି ଫେରାଇ ଦେଖିଲେ ମାଠିମୁଠି ହୋଇ ଗୋଡ଼ାଟିଏ । ଉଜ୍ଜଳ ଆଖି, ସାବନା ରଙ୍ଗ, ଓଠରେ ଗାଢ଼ ଲିପିଷ୍ଟିକ୍ । ଗୌତମକୁଣ୍ଡୁ ଚହ୍ନେଇ ଦେଲେ,

"ମିଟ୍ ମିସେସ୍ କୁଣ୍ଡୁ । ମିସେସ୍ ମାଳବିକା କୁଣ୍ଡୁ । ଆଉ ଇଏ ହେଉଛନ୍ତି ମିଷ୍ଟର ମଦନମୋହନ ଦାସ, ମୋର ଜଣେ ବିଶିଷ୍ଟ ବନ୍ଧୁ, ବରୁନ୍ ଏଣ୍ଡ୍ କୋଃର ଜଣେ ବଡ଼ କାର୍ପଣ୍ଟ୍ଦାର୍ ଥିଲେ··· ।"

ମଦନମୋହନ ନିଜର ପ୍ରତିକ୍ରିୟା ସଜାଡ଼ିବାକୁ ସମୟ ପାଇଲେ ନାହିଁ । କିନ୍ତୁ ଯାହାହେଉ ଗୌତମ କୁଣ୍ଡୁ ତାଙ୍କର କ୍ଷମାଶୀଳ ଗୁଣରେ ବନ୍ଧୁଙ୍କୁ ବଞ୍ଚେଇ ଦେଲେ । ସେ ନିଜେ ଚଟ୍କିନି ବିଦାୟ ନେଲେ । କହିଲେ—

"କିଛି ମନେକରିବେ ନାହିଁ । ଆମର ଗୋଟାଏ ଜାଗାକୁ ଯିବାର ଅଛି । ଜରୁରି କାମ···।"

ମାଳବିକା କୁଣ୍ଡୁଙ୍କର ଲିପ୍ଷ୍ଟିକ୍ମଖା ବିଦାୟୀ ହସ ଅଚିରେ ଅଦୃଶ୍ୟ ହୋଇଗଲା । ସେମାନେ ହାତ ଧରାଧରି ହୋଇ ଏବଂ ଖରାକୁ ପିଠିକରି ଗଲେ କେଉଁ ଜରୁରି କାମ ସାରିଦେବା ପାଇଁ ଏବଂ ମଦନମୋହନ ସହଜେ ସେଠୁଁ ଫେରିଆସି ପାରିଲେ ନାହିଁ ।··· ମାଳବିକା ମୋଟେ ସୋନାଲିଙ୍କ ପରି ନୁହେଁ । କୃଶାଙ୍ଗୀ ନୁହେଁ, ମାଂସଳା, ଗୋରି ନୁହେଁ ସାବନା, ଚାହାଣୀ ଉଜ୍ଜ୍ୱଳ ହେଲେ କ'ଣ ହେବ, ଆଖି ଦି'ଟାକୁ ବଡ଼ ବୋଲି କୁହାଯିବ ନାହିଁ । ତା'ଛଡ଼ା ତା' ଲିପ୍ଷ୍ଟିକର ରଙ୍ଗ ଅତି ଉତ୍କଟ । ଆଉ ସ୍ତ୍ରୀଲୋକଟା ଉଚିତରୁ ଅଧିକ ହସେ ।

ହେଲେ, ସେ ଆଉ ପ୍ରକାରେ । ଭିନ୍ନ ସ୍ୱାଦୁ । କେବଳ ଧନରେ ନୁହେଁ । ସେଇଥିଲାଗି ଗୌତମ କୁଣ୍ଡୁ··· ।

ଛି ! !

କେଉଁଥିପାଇଁ ମଦନମୋହନ ଗୌତମ କୁଣ୍ଡୁ ତଥା ତାଙ୍କ ନବ ପରିଣୀତାଙ୍କୁ "ଛିଃ" ବୋଲି କହିଲେ ତା'ର ବ୍ୟାଖ୍ୟା କରିବା ଅନାବଶ୍ୟକ । ତେବେ ତା'ର ଶେଷକଥା ହେଲା ଗ୍ଲାନି । ଯେ ତାଙ୍କର ଏଇ ସୌରଜଗତ୍ର ଅପବିତ୍ର ହୋଇଗଲା ।···ତୁମ ଦି'ଜଣଙ୍କୁ ଯୁଗଳତଳେ ଦେଖିଥିଲେ ବୋଧହୁଏ ମାନି ନେଇ ପାରିଥାଆନ୍ତି ଯେ ଏମିତି ହୁଏ । ପୃଥିବୀରେ ଅନେକ ଲୋକ ଅଛନ୍ତି ଯେଉଁମାନେ ମିଛ ସୁଖରେ ଲିପ୍ତି ହୋଇ ରହି ଯାଆନ୍ତି ମରିବା ଯାଏଁ, ନାଲି ପିମ୍ପୁଡ଼ି କମ୍ବା ଜୋକପରି । କିନ୍ତୁ ସେଥିରେ ମୋର ଉତ୍ତରଣରେ ଆଞ୍ଚ ଲାଗନ୍ତା ନାହିଁ । କିନ୍ତୁ ଦୁର୍ଭାଗ୍ୟକୁ ତୁମକୁ ଦେଖିଲି ଏଇ ଖରାପଡ଼ିଆର ମଝିଟାରେ । ଆଉ ମୋର ବଢ଼ି ଉଠୁଥିବା ଗଢ଼ି ହେଉଥିବା ଦର୍ଶନର ସ୍ୱର୍ଗ ଭୁସୁଡ଼ିଗଲା ।

ସୂର୍ଯ୍ୟଙ୍କୁ ହୁଏତ ଅନେଇହେବ ଏଇକ୍ଷଣି । କାହିଁକନା ତାଙ୍କ ଉପରେ ସ୍ୱାର୍ଥର ଅଶ୍ଳୀଳତା ବୋଳା ହୋଇ ଯାଇଛୁ । ସେ ଦ'ଜଣଙ୍କର ନୁହେଁ, ମୋର, ଖାସ୍ ମୋର । ତା'କୁ ହିଂସା ଲୁହ, ଈର୍ଷା ଲୁହ, ଲୋଭ ଲୁହ, କ୍ ଆଉ ଯାହା···।

ହଉ । ମୁଁ ବୁଝିଲି ଯେ ନାସ୍ତର ସ୍ତନ ଜଘନ ଯାହା, ଶିଶୁର ପୁଚୁପୁଚିଆ ଗାଲ ଯେଇଆ । ସବୁ ସେଇ ଦେହରେ ଗଢ଼ା, ଦଆନଆର ବୋକସ୍ୱରୂହା । କାମନା-କାରଣ ଅଛୁ ସେ ଭଲ ପାଇବାରେ । ବେଶ୍ । ମୁଁ ତା'କୁ ବ ବାଉଲ୍ କରଦେବ ।

ଖାଲି ଭଗବାନଙ୍କୁ ଭଲ ପାଇବ । ମାନେ ବଶ୍ୱକୁ, ମାନେ ମହାଶୂନ୍ୟକୁ ଭଲ ପାଇବ—ଏଇଆ ତ ? କଏ ଜାଣି ନାହିଁ ଏଇ ସାମାନ୍ୟ କଥା ?

ଖେଳଣାବାଲା ତଥାପି ଅନେଇ ରହିଥିଲା ତାଙ୍କ ମୁହଁକୁ । କନ୍ତୁ ଏଥର ମଦନମୋହନ ତାକୁ ଆଡ଼େଇ ଦେଲେନାହିଁ । କହଲେ ବେଙ୍ଗ କ ଠେକୁଆ ନହେଲା ନାହିଁ, ଲାଲ୍‌ଘୋଡ଼ା କଣା ହେବ ଆଜ । ସୋମୁ ଜାଣୁ, ତା' ମାଆ ଜାଣୁ, ଆଇ ଜାଣୁ, ଯେ ମୋ ଭଲ ପାଇବା କୋଉ ବରାଦଆ ବସ୍ତୁ ନୁହେଁ । ମୁଁଇ ତାକୁ ଢଆର କରବ, ମୋର ମର୍‌ଜ; ମୋର ଖିଆଲ୍‌ରେ···ଚଷ୍ଟା ଲାଗିବା ଯାଏଁ ।

ଏବଂ ସୂର୍ଯ୍ୟ କୋଉ ଗୋଟାଏ ଦନରେ କ ଗୋଟାଏ ଜନ୍ମରେ ଅଣ୍ଡା ହୋଇଯିବ ନାହିଁ । ଏମିତ ଜଳୁଥିବ, ଆଉ, ଅନେଇଥିବ ମୋତେ ଜାଳବ ବୋଲି । ଦାୟିତ୍ୱ ଖାଲି ମୋଥର ନୁହେଁ, ତାଆର ।

# ଧରାଶାୟୀ

"ଏକ୍‌ସ୍‌କ୍ୟୁଜ୍ ମି ସାର୍"

ଡାକ୍ତରଙ୍କ ପଛରେ ଆମେ ଥୋକେ ଜ୍ଞାତିବନ୍ଧୁ ପରିବାର ଭିଡ଼ ଜମେଇଥିଲୁ ସୁଅ ପାଖରେ । ଦିନସାରା ବାନ୍ତି କରି କରି ତା'ର ଅବସ୍ଥା କାହିଲ । ତା'କୁ ପନ୍ଦର ନମ୍ବର ବେଡ୍‌ରେ ଶୁଆଇ ଦିଆ ହୋଇଥିଲା । ହାତର ଶିରାବାଟେ ସାଲାଇନ୍ ଦେବାର ବ୍ୟବସ୍ଥା କରାଯାଉଥିଲା । ଡାକ୍ତର ଆଶ୍ୱାସନା ଦେଇ କହୁଥିଲେ—କିଛି ଚିନ୍ତା ନାହିଁ, ଏଇ ଗୋଟାଏ ଯୋଡ଼ାଏ ଦିନ ଭିତରେ ଠିକ୍ ହୋଇଯିବ । ତା'ର ମାଆ ଆଶ୍ୱାସନା ପାଇଲେ ମଧ୍ୟ ନ ପାଇଲା ପରି ହେଉଥିଲେ । ଲୁହ ପୋଛୁ ଥିଲେ ଏବଂ ତାଙ୍କର ବିମୂଢ଼ତାକୁ ଦୋହରେଉଥିଲେ ଯେ ପିଇବା ପାଣିରୁ ଇନ୍‌ଫେକ୍‌ସନ୍ ଆସି ନ ଥିବ, ଯେହେତୁ ପାଣି ଫୁଟା ହୋଇ ଦିଆଯାଉଛି, କେକ୍‌ରୁ ଆସି ନ ଥିବ କାହିଁକିନା କେକ୍ ଘରତିଆରି, ସେ ନିଜ ହାତରେ ତିଆରି କରିଛନ୍ତି, ପକୋଡ଼ା ଗରମାଗରମ, ଜୀବାଣୁ ବଞ୍ଚିପାରିବ ନାହିଁ ତା' ଭିତରେ···ତଥାପି ଏମିତି ହେବାକୁ ଥିଲା ? ସାନଭଉଣୀର ଜନ୍ମଦିନ ପାର୍ଟିରେ କ'ଣ ଟିକିଏ ଭଲମନ୍ଦ ଖାଇବ ନାହିଁ ପିଲାଟା ? ମୁଁ ଗହଳିର ସବା ପଛକୁ ଥିଲି । ମୁଁ ନିଜକୁ ସ୍ଥିତପ୍ରଜ୍ଞ ବୋଲି କହୁ ନାହିଁ । କିନ୍ତୁ ମୋର ଉଦ୍‌ବିଗ୍ନତା କେତେ ଆୟତ୍ତରେ ଥିଲା ତା'ର ଗାରିମା ଏଇଥିରୁ ବୁଝିବେ ଯେ ଉପରୋକ୍ତ ପରିସ୍ଥିତି ସତ୍ତ୍ୱେ ଷୋହଳ ନମ୍ବର ବେଡ୍‌ରୁ ଯେତେବେଳେ ରୋଗୀ ଜଣକ ଆରମ୍ଭ କଲା—"ଏକ୍‌ସ୍‌କ୍ୟୁଜ୍ ମି ସାର୍···", ମୁଁ ତା' କଥାରେ କାନ ଦେଲି । ବୁଲି ପଡ଼ି ତା' ଆଡ଼କୁ ଅନେଇଲି ଏବଂ ତା' ପ୍ରଶ୍ନକୁ ଚଟ୍‌କିନା ଧରି ନେଇ ମୋ ହାତ ଘଣ୍ଟା ଦେଖି କହିଲି, "ସାତଟା ବାଜି ପନ୍ଦର ମିନିଟ୍ ।" ସେଇଠୁ ସେ ହସିଲା ମୋ ଆଡ଼କୁ ଚାହିଁ । ମୋତେ ଭଲ ଲାଗିଲା ଯେ ମୁଁ ଗୋଟାଏ ଭଲ କାମ କରିଛି ।

ଏତିକିରେ କଥା ଛିଣ୍ଡି ଯାଇଥାଆନ୍ତା । କିନ୍ତୁ ମୋର ଧାରଣା ନ ଥିଲା ଯେ ଗହଳିରେ ସାମିଲ ଥିବା ଜନୈକ ସିଷ୍ଟର୍ ମଧ୍ୟ ଆମର ସାମାନ୍ୟ ବାର୍ତ୍ତାଳାପ ଶୁଣି ପାରିଥିଲେ । ଏବଂ ସେ ଆଡ଼ ପ୍ରକାରେ ହସିଥିଲେ । ତେଣୁ ତା' ପରଦିନ (ସେତେବେଳକୁ ସୁଅ ଆରୋଗ୍ୟ ପଥରେ ଆଗେଇ ଗଲାଣି ଅନେକ ଦୂର) ସେଇ ଗୋଷ୍ଠ ଗୋଡ଼ୀ ସିଷ୍ଟରଙ୍କଠାରୁ ଶୁଣିବାକୁ ପଡ଼ିଲା—

"ସେ ପୁଣି ଥରେ ଏକ୍‌ସ୍‌କ୍ୟୁଜ୍ ମାଗି ନାହିଁ ତ ଆପଣଙ୍କଠାରୁ ?"

"ନାହିଁ ତ···"

"ଭାଗ୍ୟ ଭଲ ଆପଣଙ୍କ ପେସେଣ୍ଟ୍ ଆଜିକାଲି ଭିତରେ ଡିସ୍‌ଚାର୍ଜ ହୋଇଯିବ । ନହେଲେ ସେ ଆପଣଙ୍କ ମୁଣ୍ଡ ଖାଇଦିଅନ୍ତା । ସେ ସମସ୍ତଙ୍କୁ ପସନ୍ଦରେ ନାହିଁ ଏମିତି । ଆମ କଥା ଛାଡ଼ନ୍ତୁ, ସିଷ୍ଟର୍‌ମାନେ ତ ତା'ର ଶତ୍ରୁ । କିନ୍ତୁ ଯେଉଁ ଭିଜିଟର୍‌ଟିଏ ତା' ମନକୁ ପାଇଯାଏ, ତାକୁ ସେ ଛାଡ଼େ ନାହିଁ ସହଜେ । ସାବଧାନ···।" ଏତିକି କହି ରହସ୍ୟମୟୀ ଡଗଡଗ ହୋଇ ଚାଲିଗଲେ ନିଜ ବାଟରେ ।

ମୋର ସନ୍ଦେହ ରହିଲା ନାହିଁ ଯେ ସେ ମୋତେ ଆହୁରି କେତେ କଥା କହିବେ ଏ ବିଷୟରେ ଏବଂ ମୁଁ ଶୁଣିବାକୁ ବାଧ୍ୟ ।

ଯେଉଁ ଭିଜିଟରଟିଏ ତା' ମନକୁ ପାଇଯାଏ, କେବଳ ତା'କୁହିଁ··· । ଅବଶ୍ୟ ମୋର ସ୍ୱଭାବଚରିତ୍ରରେ କ'ଣ ଅଛି କେଜାଣି ମୋ ସମାଜର ଅନେକ ଲୋକ, ପିଲାରୁ ବୁଢ଼ା ଯାଏଁ, ମୋ ଆଗରେ ତାଙ୍କ ଦୁଃଖ ଦୁର୍ଦ୍ଦଶାର କାହାଣୀ, ଜୀବନର ଗୋପନ କାହାଣୀ, ଗପି ଆସିଛନ୍ତି ଏବଂ ନିଜକୁ ଖାଲାସ କରି ସାରିଲା ପରେ ମୋତେ କୃତଜ୍ଞତା ଜଣାଇ ଲଜ୍ଜା ଦେଇଛନ୍ତି । କାରଣ ମୁଁ ସାନ୍ତ୍ୱନାବାଣୀ ଶୁଣାଇ ପାରେ ନାହିଁ, ମାନେ ଯେମିତି ଶୁଣାଇବାର କଥା । ଠିକଣା ବାକ୍ୟ ପୂରା କରି ପାରେ ନାହିଁ । ଝୁଣ୍ଟୁଥାଏ ବାରମ୍ବାର ଏବଂ କ୍ୱଚିତ୍ ଲୁହ ଆସେ ମୋ ଆଖିକୁ । କିନ୍ତୁ ତଥାପି ସେମାନେ କିଛି ପାଉଥିବେ ମୋଠୁଁ । ହୁଏତ ମୋ ଅନ୍ତରର ଅକୁହା ଭାଷା ପଢ଼ି ପାରୁଥିବେ ମୋ ଚାହାଣୀରୁ, ମୋର ଦ୍ରବୀଭୂତ ନୀରବତାରୁ ।

କିନ୍ତୁ ଇଏ ତ ଗୋଟାଏ ପୁରାପୁରି ଅଚିହ୍ନା ଲୋକ ! କେଉଁ ହିସାବରେ ମୁଁ ତା' ମନକୁ ପାଇଗଲି ? ଖାଲି ମୋ ଚେହେରାରୁ ସେ ପାଇଗଲା ଯାହା ପାଇବା କଥା ! ଏହି କାରଣରୁ ମୁଁ ମଧ୍ୟ ଚାହିଁ ରହିଲି ଶୁଣିବା ପାଇଁ । ସମୟ କମ୍ ।

ଯାହାହେଉ ସେଇ ଦିନର ଖରାଟିଆ ପୂର୍ବାହ୍ନରେ, ରାଣୀ ଲଜ୍‌ଓ୍ୱନ୍ତୀ ଦାତବ୍ୟ ଚିକିତ୍ସାଳୟର କରିଡ଼ର୍‌ରେ ଥିବା ଗୋଟିଏ ଖୁମ୍ବଲଗା କୋଣରେ ଚପି ହୋଇ ଏବଂ କେଉଁ ଏକ ମିଶ୍ରିତ ଅନିର୍ଦ୍ଦିଷ୍ଟ ଦୁର୍ଗନ୍ଧକୁ ଶୁଙ୍ଘି (ଇଏ ସିଏ ନୁହେଁ, ଇଏ ସିଏ ନୁହେଁ ବୋଲି ନିଜକୁ ବୋଧ ଦେଇ) ମୁଁ ଶୁଣିଗଲି ଏକ ଦୀର୍ଘ ଉପାଖ୍ୟାନ । ଡାକ୍ତରଖାନାର ଜଣେ ସିଷ୍ଟର ତାଙ୍କର ଅନେକ କାମଦାମ ଭିତରେ ଏତେ ସମୟ ଦେବେ ମୋ ପାଇଁ ବୋଲି ମୁଁ ଆଶା କରି ନଥିଲି । କିନ୍ତୁ ଉପାଖ୍ୟାନ ସରିଲା ବେଳକୁ ମୁଁ ବୁଝି ପାରିଥିଲି ଯେ ସେ ତାଙ୍କ ସମୟ ବରବାଦ କରୁ ନାହାନ୍ତି ଖାସ୍ ମୋ ପାଇଁ । ସେ ଆପଣା ରାଗ ଉତାରିବାକୁ ଚାହୁଁଛନ୍ତି । ସମସ୍ତ ନର୍ସ ସମ୍ପ୍ରଦାୟ, ନାରୀଜାତି, ତଥା ଅଧସ୍ତନ କର୍ମଚାରୀମାନଙ୍କ ତରଫରୁ ।

"···ଲୋକଟା କ'ଣ ବୋଲି ମନେ କରିଛି ଜ ନିଜକୁ ? ହୋଇପାରେ ସେ ବଡ଼ ଲୋକ, ତା' ସ୍ତ୍ରୀ ବଡ଼ ଲୋକ । ତଥାପି କେହି ତା'କୁ ଘରେ ରଖି ପାରିଲେ ନାହିଁ । ବୁଝିଲେ ନା ? ଲୋକେ ଜାଣିବାକୁ ସେ ନିଜେ କୁଆଡ଼େ ଚାହିଁଲ ଯେ ସେ ହସପିଟାଲରେ

ପଡ଼ି ରହିବ । ପୁଣି ପ୍ରାଇଭେଟ୍ ଓ୍ୱାର୍ଡ଼ କ କେବଳରେ ନୁହେଁ, ଜେନେରାଲ୍ ଓ୍ୱାର୍ଡରେ, ଯେଉଁଠି ସେ ବିଭିନ୍ନ ବାହାର ଲୋକମାନଙ୍କ ସାଙ୍ଗରେ କଥା ଭାଷା ହେବାର ସୁଯୋଗ ପାଇ ପାରିବ । ସେ କୁଆଡ଼େ ବହୁତ ପାଠୁଆ, ଦେଶବିଦେଶ ଜ୍ଞାନ ବିଜ୍ଞାନ ବିଷୟରେ ଆଲୋଚନା ନ କଲେ ତା' ଭାତ ହଜମ ହୁଏ ନାହିଁ । ହେଲା, ବୁଝିଲି । ସେଇଥିପାଇଁ ଧୋବଧାଉଳିଆ ଭିଜିଟର୍‌ଟିଏ ପାଇଲେ (ଭୁଲ୍ ବୁଝିଛ ସିଷ୍ଟର୍, ମୁଁ ଧୋବଧାଉଳିଆ ବୋଲି ନୁହେଁ, ମୋ ଚରିତ୍ରର ଗୁଣ ଦୋଷରୁ) ତା'କୁ ମାଡ଼ି ବସେ ଏମିତ । 'ଏକ୍‌ସକ୍ୟୁଜ୍ ମି' କହି ଆରମ୍ଭ କରେ, ସେଇଠୁଁ ତା ସାଙ୍ଗରେ ଦୋସ୍ତି ଜମେଇବାକୁ ଚେଷ୍ଟା କରେ, ଛେନାଗୁଡ଼ ଆଲୋଚନା କରିବାକୁ ଯାଇ ବିଚରାକୁ ବୋର୍ କରି ଦିଏ, ସେ ହାହି ହାହି ଡାକ ପକେଇ ନ ଯିବା ଯାଏଁ ସ୍ୱାର ମନ ଶାନ୍ତ ହୁଏ ନାହିଁ···ସେ ଯାହା ହେଉ ପଛେ···ତା' ବୋଲି ଆମ ଉପରେ ଏମିତ ଖାଉଁ ଖାଉଁ ହୁଏ କାହିଁକି ? ବିଶେଷତଃ ସିଷ୍ଟର୍‌ମାନଙ୍କ ଉପରେ । ଉହୁଁ, ଯେତେକ ସ୍ତ୍ରୀ ଲୋକମାନଙ୍କ ଉପରେ । ଦିନେ କ'ଣ ହେଲା ନା ଜଣେ ପନ୍ଦର ନମ୍ବର ପେସେଣ୍ଟ୍‌ର ଦୟା ହେଲା ସ୍ୱା' ଉପରେ । ସ୍ୱା'ର କୁନ୍ଥାଣକୁ ଦେଖି ପଚାରିଲେ— 'କଣ ଖୁବ୍ କଷ୍ଟ ହେଉଛି ଆପଣଙ୍କୁ ? ଡାକିବି ସିଷ୍ଟର୍‌ଙ୍କୁ ?' ସେଇଠୁଁ ଇଏ ଯେମିତ ଭାବରେ ଚହିଁକ ଉଠିଲା, କ'ଣ କହିବି ଆଉ···।"

ସିଷ୍ଟର୍ ଆନ୍‌ନା ମ୍ୟାରିଆ ଏହି ଭାବରେ ଗାଇଗଲେ ଲୋକଟାର ଅହଂକାରୀ, ଅଶାଳୀନ, ନାରୀବିଦ୍ୱେଷୀ ଦୁର୍ବ୍ୟବହାରର ଇତିହାସ । ପ୍ରାୟ ମାସକର ଇତିହାସ । ମୁଁ ଶୁଣିଗଲି । ପ୍ରଶ୍ନ ପଚାରିଲି ନାହିଁ । କାହିଁକନା ମୁଁ ଆସାମୀର ସମ୍ପୃକ୍ତି ବନ୍ଧୁଭାବାପନ୍ନ ଗେଡ଼େହେବାକୁ ଦୋଷୀ ବୋଲି ଠଉରେଇ ପାରିଲି ନାହିଁ । କିନ୍ତୁ ଏଇ ନାରୀବିଦ୍ୱେଷ କଥାଟା ମୋତେ ଅଖାଡ଼ୁଆ ଲାଗିଲା । ଧନ ଗର୍ବ, ବିଦ୍ୟା ଗର୍ବ, ଇତ୍ୟାଦି ନାନା ଗର୍ବର ଅସାର-ତତ୍ତ୍ୱ ଜଣା ଅଛି ମୋତେ । କିନ୍ତୁ ଏଇ ନାରୀବିଦ୍ୱେଷ କେଉଁଥି ପାଇଁ ?

କେତେବେଳେ ମୋର ଖିଆଲ ହେଲା ଯେ ସିଷ୍ଟର୍‌ଙ୍କ କଥା ସ୍ରୋତରେ ଠେଲି ହୋଇଯାଇ ମୁଁ ଗୋଟାଏ ମୌଳିକ ପ୍ରଶ୍ନ ପଚାରି ପାରିନାହିଁ କି ସେ ମୋତେ କହି ନାହାନ୍ତି ତାଙ୍କ ଅଡ଼ୁ, ଯେ ଷୋହଳ ନମ୍ବରର କ'ଣ ହୋଇଛି । ପଚାରିଲାରୁ ସେ ଆଶ୍ଚର୍ଯ୍ୟ ହେଲା ପରି ଅନେଇଲେ ମୋ ଆଡ଼କୁ ଏବଂ ପାଟିଟାକୁ ଆଁ କରିଦେଲେ । କହିଲେ—

"ଜାଣନ୍ତି ନାହିଁ ଆପଣ ? ତା'ର ଅଣ୍ଟାରୁ ପାଦଯାଏ ଶୂନ୍ । ପୁରାପୂର ଶୂନ୍ କହିଲେ ଚଳେ । ଟଏଲେଟ୍‌କୁ ଧରାଧରିକା ନିବା ଆଣିବା କରିବାକୁ ପଡ଼େ ।"

"ପାରାଲିସିସ୍ ?"

"ମୋଟାମୋଟି ସେଇଆ । ଡାଏବେଟିସ୍‌ରେ ଗୋଡ଼ର ମାଂସପେଶୀଗୁଡ଼ାକ ସିକୁଡ଼ି ଗଲାଣି । ଡାକ୍ତର ଅବଶ୍ୟ କହୁଛନ୍ତି ଯେ ଶକ୍ତି ଫେରି ଆସିବ···

ଡାକ୍ତର କହୁଛନ୍ତି ଶକ୍ତି ଫେରି ଆସିବ···

ସମସ୍ତ ଲାଗିବ ପିନା, ଫେର ଆସିବ··· ।

ନିଷ୍ଟସ୍ଥ ଆସିବ, ଅଲ୍‌ବତ୍ ଆସିବ, ମୋତେ ଠାକୁରେ ସପନେଇଥିଲେ ପରା !''

ନୂଆବୋଉଙ୍କ କଜଳ-ଳେସା ଆଖିରେ ମେଞ୍ଚାଏ ଲୁହ । କଉ, ଠାକୁରେ ସପନେଇଥିଲେ ଯଦି, ଏଇ ଲୁହର ଲହଡ଼ି କାହିଁକି ?

ଆନ୍‌ନା ମେଉଆ ବଦାମ୍ସ ନେଇ ଗଲେଣି । ମୋର ପୁଅ ପାଖକୁ ଯିବା କଥା ଏଇକ୍ଷଣି । କିନ୍ତୁ···କିନ୍ତୁ···ତା' ବେଡ୍‌ ପାଖରେ ଅଛୁ ସେଇ ଲୋକଟା, ଯାହାର ଅଣ୍ଟାରୁ ପାଦ ଯାଏଁ ଶୂନ୍ । ଏବଂ ଶୂନ୍ ହୋଇ ରହିଥିବ ତା' ମଲାଯାଏଁ । ମୁଁ ଜାଣିଛୁ, ଭଲ ଭାବରେ ଜାଣିଛୁ । ଯାହାକୁ ଧର୍ଷଣାସ୍ଥୀ କରାଗଲା, ସେ ରହିଲା ସେଇଠି । ଚଲ୍ ହୋଇ ଦାନ୍ତ ନିକୁଟି ପଡ଼ିଛୁ । ମୋତେ ଦେଖ, ମୋ ମନୋବୃତ୍ତିକୁ ଦେଖ, ମୁଁ ଏମିତି ସେମିତି ନୁହେଁ ବୋଲି ପାଟି କରୁଛୁ । ଲୁଚେଇ ଲୁଚେଇ କାନ୍ଦୁଥିବ ହୁଏତ । କିନ୍ତୁ କିଏ ଶୁଣୁଛୁ ତା' ଗପ, ତାର ପ୍ରଥମ ଶ୍ରେଣୀରେ ପ୍ରଥମ ହେବାର ଇତିହାସ ?

ସତେକି ଅତି ଗୁଡ଼ାଏ ବିଦ୍ୟାବୁଦ୍ଧି ପାଇଛୁ ବୋଲି ଏତେକଥା ! ଏଇ ହେଉଛୁ ତା'ର ଶାସ୍ତି !

ଓ୍ୱାର୍ଡ଼ ଭିତରକୁ ଫେରିଯିବା ପାଇଁ ଗୋଡ଼ ଚାଲିଲା ନାହିଁ ମୋର । କାରଣ ସ୍ମୃତିକୁ ସହଜେ ନିକାଲି ଦେଇ ହେଲା ନାହିଁ । ଅକ୍ଷସ୍ଥଭାଇର ମୁହଁ ଆଖିର ପାଖେଇ ଆସିଲା । ତା'ର ସେଇ ଫିକା ଜିଣ । ସରୁ କପାଳ । ଲମ୍ବା ନାକ । ଆଉ ଓଠରେ ବୁଢ଼ବୁଢ଼କା ହସ । ସତେକି ଅସୁମାର ନୂଆ ଭାବ ନୂଆ ଭାବନା ଯୁଦ୍ଧ ହେଉଛୁ ତା' ଭିତରେ । ସବୁତକ ଶୁଣେଇବାକୁ ବେଳ ନାହିଁ, କିନ୍ତୁ ତା'ର ସନ୍ଦେଶ ହେଉଛୁ—ମୋତେ କେହି ଜାଣି ନାହିଁ କି ଜାଣି ପାରିବ ନାହିଁ । ମଲା ଯାଏଁ ପଡ଼ିଥିବ ଏମିତି, କିନ୍ତୁ ମୋ ବୁଦ୍ଧି ଚମକୁଥିବ ଆଗ ଭଳି । ଶୁଣିବୁ ଯଦି ଆ' । ତୋ ଭଲ ପାଇଁ କହୁଛୁ । ଶୁଣିବୁନି ମୋ ସାନଭାଇଟା, ମୋ ପ୍ରିୟବନ୍ଧୁ ଅଜୟ ?

ଆରେ, ଏଇ ଷୋହଳ ନମ୍ବର ବେଡ୍‌ର ଭିଆଣ କରାଯାଇଛୁ ଖାସ୍ ତୋର ପାଇଁ ପରା···ଏତିକି ବୁଝିପାରୁନୁ ? ନହେଲେ ତୁ ମୋତେ ଭୁଲିଯାଇ ନ ଥାଆନ୍ତୁ ? କେତେ ବର୍ଷ ତଳେ ତୋ ମୁହଁ ଦେଖେଇଥିଲୁ ମୋତେ ମନେ ଅଛୁ ? ଅଉ ସ୍ୱା' ଭିତରେ କେତେଥର ପୁଅକୁ ଆସିଛୁ ହାଉଆ ଖାଇ, ତା'ର ହିସାବ ରଖିଛୁ ? ··· କିନ୍ତୁ ସେ ହସୁଛୁ । ମୋତେ ରାଗିଲା ପରି ଦିଶୁନାହିଁ । ସତେକି ଆହତ ହେଲେ ମଧ୍ୟ ବଡ଼ ଭାଇମାନେ ରାଗନ୍ତି ନାହିଁ । ରାଗିଲେ ରାଗିବ ସାନଭାଇ ଅଜୟ । ସବୁଥିରେ ସାନ, ଖାଲି ବୟସରେ ନୁହେଁ ।

ହଁ, ହଁ, ତୁ ବଡ଼, ମୁଁ ସାନ । ମୁଁ ମାନୁଛୁ, ହଜାର ବାର ମାନୁଛୁ । କିନ୍ତୁ ମୋ ଦୋଷ ନୁହେଁ, ମୋତେ ବିଶ୍ୱାସ କର ।

ନିଜର ନିର୍ଦ୍ଦୋଷପଣିଆକୁ ସାବ୍ୟସ୍ତ କରିବା ପାଇଁ ମୁଁ ସ୍ଥିର କଲି ଯେ, ଯେ କୌଣସି ମତେ ମୁଁ ଷୋହଳ ନମ୍ବର ରୋଗୀ ପାଖକୁ ଯିବ, ଉପରେ ପଡ଼ି ତା'

ସାଙ୍ଗରେ ଗପିବ, ଅର୍ଥାତ୍ ନାନା ସାମାଜିକ, ରାଜନୈତିକ ଓ ତାତ୍ତ୍ୱିକ ଆଲୋଚନା କରିବ । ଜଣାଇ ଦେବ ଯେ କେହି ବୁଝନ୍ତୁ ନ ବୁଝନ୍ତୁ, ଅଜସ୍ର ପ୍ରଧାନ ବୁଝିଛି ଯେ, ଅସଲ ହେଉଛି ମଗଜ । ମାନସ ହଂସ । ଦେହର ତଳ ଅଧିକ ନଷ୍ଟ ହୋଇଗଲେ ଯାଉ, ମଣିଷ ସମ୍ମାନର ପାତ୍ର, ମର୍ଯ୍ୟାଦାର ଅଧିକାରୀ, ଯେ ପର୍ଯ୍ୟନ୍ତ ତା' ବୁଦ୍ଧି ସିଧା ସଳଖ ଅନେଇ ପାରୁଛି ।

ଯିବ ! ପୁଅ କାଲି ସକାଳେ ଉତ୍ସର୍ଗ୍ ହୋଇଯିବ ଡାକ୍ତର କହୁଥିଲେ । ତା' ମାନେ ଆଜି ଘଣ୍ଟା ଭିତରେ ତା' ସାଙ୍ଗରେ ଗପ ଜମେଇବାକୁ ହେବ । ହୁଏତ ଏଇକ୍ଷଣି କ୍ଷତି କଅଣ ?

କିନ୍ତୁ ଦେଖିଲି ସେ ଶୋଇ ରହିଛି । ଏବଂ ତା' ମୁହଁରେ ଦାରୁଣ ବ୍ୟଥାର ଚିହ୍ନ । ନା, ତୁ ଅକ୍ଷୟ ଭାଇ ପରି ନୁହଁ । ଯେତେ କଷ୍ଟ ପାଇଲେ ମଧ୍ୟ ତା' ମୁହଁ ହସିଲା ଦେଖାଯାଏ । ସେଇଥିପାଇଁ ମୁଁ କେବେ ହେଲେ ଭାବ ନାହିଁ ଯେ, ସେ ଦୟାର ପାତ୍ର ଏବଂ ମୋର ତା' ପାଖକୁ ବାରମ୍ବାର ଯିବା ଦରକାର, ତାକୁ ଦମ୍ଭ ଦେବା ଦରକାର...

ମିଛ, ମିଛ ! ତୁ ମୋ ପାଖକୁ ଆସିବାକୁ ଚାହିଁଲୁ ନାହିଁ, କାଳେ ମୋର ପରାଭବ ଛୁଇଁବ ତୋତେ—ନୁହେଁ ? କାହିଁକନା, ପିଲାଦିନୁ ଆମେ ଦି'ଜଣ ହାତ ଧରାଧରି ହୋଇ ଚାଲିଛୁ । ମାଟ୍ରିକ୍, ବି.ଏ., ଏମ୍.ଏ. ବାହାଘର, ପିଲାଝିଲା, ଚାକରୀ । ମୁଁ ଟିକିଏ ଆଗକୁ, ତୁ ଟିକିଏ ପଛରେ, ମୋର କିଛି ଅଧିକ, ତୋର କିଛି ଊଣା । କିନ୍ତୁ ମୋର ଚିତ୍ ହୋଇ ପଡ଼ିବା ଯାଏଁ । ସେଇଠୁଁ ତୁ ଡରିଲୁ, କାଳେ ତୋର ବି ସେଇ ଦଶା ହେବ—ନୁହେଁ ? କହିପାର ହସୁଛି ତା'ର ସେଇ ସବ୍‌ଜାନ୍ତା ହସ ।

ଓଃ, ଅକ୍ଷୟ ଭାଇ, ମୋତେ ବିଶ୍ୱାସ କର୍, ମୁଁ ସେମିତି କିଛି ଭାବୁ ନ ଥିଲି ।

ଡ୍ୟାମ୍ ଇଟ୍ ! ମୁଁ ଡାକ୍ତରଖାନାକୁ ଆସିଛି ମୋ ପୁଅର ଭଲମନ୍ଦ ବୁଝିବା ପାଇଁ । ଷୋହଳ ନମ୍ବର କି ଅକ୍ଷୟ ଭାଇକୁ ନେଇ ମୁଣ୍ଡ ଖରାପ କରିବାର କୌଣସି ଅର୍ଥ ନାହିଁ । ତା'ଛଡ଼ା ମୁଁ କୋଉ ବୁଦ୍ଧିରେ ସ୍ୱାକୁ ଯୋଡୁଛି ତା' ସାଙ୍ଗରେ ? ଦି'ଜଣ ଯାକ ଧରାଶାୟୀ, ଦେହର ଅଧାଅଧି କି ବେଶି ଭାଗ ବେକାର, ତା' ବୋଲି କ'ଣ ସେମାନେ ସମାନ ହୋଇଗଲେ ?

ଏହି ଭାବରେ ମୁଁ ସେଦିନର ପୂର୍ବାହ୍ଣକୁ ନଷ୍ଟ ହେବାକୁ ଦେଲି ନାହିଁ । ଯଦିଓ ମୋ ମନରେ ଥାଏ ଯେ, ଅପରାହ୍ଣରେ ଷୋହଳ ନମ୍ବର ସାଙ୍ଗରେ କଥାଭାଷା ହେବ । ଗୋଟାଏ ଉତ୍ତମ ଆବେଗ ଆସିଛି ଯେତେବେଳେ ମୋ ମନ ଭିତରେ, ତାର ଅବହେଳା କରିବାର ନୁହେଁ ।

କିନ୍ତୁ ଦୁଃଖର ବିଷୟ ଯେ, ପୂର୍ବାହ୍ଣରୁ ଅପରାହ୍ଣ ଅନେକ ବାଟ । ସେଇ ସୁଯୋଗରେ ଡାକ୍ତରଖାନାରୁ ଘର, ଘରୁ ଅଫିସ୍, ଅଫିସ୍‌ରୁ ମାର୍କେଟ୍ ଇତ୍ୟାଦି ଇତ୍ୟାଦି

ଦିନର ସମସ୍ତ କାର୍ଯ୍ୟକ୍ରମ ଭିତରେ ଅକ୍ଷୟ ଭାଇ ମୋର ବାଟ ଓଗାଳୁଥାଏ । ଏବଂ ହସୁଥାଏ ମୋତେ ଛୁଗୁଲେଇଲା ପରି, ସତେକି ମୁଁ ପରିହାସ, ଦୟାର ପାତ୍ର ।

ଏଣୁକରି ମୁଁ ମୂଳରୁ ଶେଷ ଯାଏ ପିଲାଦିନୁ ତା'ର ଚିତ୍ର ହୋଇ ପଡ଼ିବା ଯାଏଁ, ଏଇ ଅକ୍ଷୟ-ଅଜୟ ଇତିହାସ ମନେ ପକାଇବାକୁ ବାଧ୍ୟ ହେଲି । ଏବଂ ଯଥାଶୀଘ୍ର ମୁକ୍ତି ପାଇବା ପାଇଁ ତା' କଥାରେ ହଁ ଭରିଲି । ହଁ, ହଁ, ହଁ, ଆମେ ଏକାଠି ଥିଲୁ, ଏକା ଜଳି ଥିଲୁ, ତୁ ଟିକିଏ ବଡ଼, ମୁଁ ଟିକିଏ ସାନ । ଆମେ ସାଧାରଣ ସଂସାରରୁ ଅଲଗା ଥିଲୁ, ସମସ୍ତେ ଆମକୁ "ପାଠୁଆ ଯୋଡ଼ି" ବୋଲି ଚିଡ଼ଉଥିଲେ । କିନ୍ତୁ ଆମେ ଆମ ସାରସ୍ୱତ ତଥା ଚଗଲା ସଂସାରରେ ମସ୍ତ ଥିଲୁ । ଯଥା :

—ଅନ୍ୟମାନେ ଖେଳ ପଡ଼ିଆରେ ଗୋଟାଏ ଚମଡ଼ା ବଲ୍‌କୁ ମିଛୁଟାରେ ଏପାଖରୁ ସେପାଖକୁ ଠେଲିଲାବେଳେ ଆମେ ସ୍କୁଲ୍ ଲାଇବ୍ରେରୀର ଛାତ ଉପରକୁ ଉଠିଯାଇ ସୂର୍ଯ୍ୟାସ୍ତ ଦେଖୁଥିଲୁ, ମୂଳରୁ ଶେଷ ଯାଏଁ । ଏକୁଟିଆ । ମାନେ ଦି'ଜଣିଆ—ଏକୁଟିଆ । ପରସ୍ପର ସାଙ୍ଗରେ କଥାଭାଷା ହେଉ ନଥିଲୁ । କିନ୍ତୁ ମୁଁ ତାର ଅନୁଭବକୁ ଛୁଇଁ ପାରୁଥିଲି, ଆଉ ସେ ମୋତେ ଛୁଉଁଥିଲା ବୋଲି ଧାରଣା । ନ ହେଲେ କି ଆମେ ଯୁଗ୍ମ ଏବଂ ଯୁଗପତ୍ ଆନନ୍ଦର "ଆଃ !"ଟିଏ କହି ଉପମା ସମ୍ମତ ହେଉଥାଆନ୍ତୁ ? ବେଳେ ବେଳେ ଫାଜିଲ୍ ଉପମା । ଇଏ କିମିତି ଦେଖାଯାଉଛି ଜାଣିଚୁ ? ଘିଅ କଡ଼େଇରେ ଯେମିତି ଖଣ୍ଡି ଖଣ୍ଡି କା ଛେନା ଭାସୁଥାଏ, ପାଚି ଆସୁଥାଏ, କ୍ଷଣକରେ ଥାଳିରେ ଅଜାଡ଼ି ଦେଇ ହେବ, ଏବଂ ବେଳେ ବେଳେ ଗମ୍ଭୀର ଉପଲବ୍ଧିର ଉପମା । ବଉଦଶୂନ୍ୟ ନୀଳ ଆକାଶରେ ଲାଲ୍ ଟକମକ ସୂର୍ଯ୍ୟ, ବୁଡ଼ି ଯାଉଛି ତଳକୁ, ଆହୁରି ତଳକୁ । ଏବଂ ମନେ ହେଉଛି ସେଇ ଲାଲ୍ ପେଣ୍ଡୁଲା ଭିତରେ (ଅନିମେଷ ନୟନରେ ଅନେଇ ପାରିଲେ ହେଲା) କେତେ ଭାବ ତରଳି ଯାଉଛି, ପୁଣି ବାନ୍ଧି ଆସୁଛି, ବୁଡ଼ିଲା ପୂର୍ବରୁ କିଛି ଗୋଟାଏ କହିଯିବାପାଇଁ । ମୁଁ ଯେ ସବୁବେଳେ ହାଲୁକା ଉପମା ଦେଉଥିଲି ଓ ସେ ଓଜନିଆ ଭାଗବତ ଉପମା ଦେଉଥିଲା, ତା ନୁହେଁ । କିନ୍ତୁ ମୋତେ ମାନିବାକୁ ପଡ଼ୁଛି ଯେ, ସାଧାରଣତଃ ତା'ର ଉପମା ଥିଲା ଅଧିକ ବିସ୍ମୟକର ଓ ଚମକପ୍ରଦ । ସତେ କି ମା'ଆ ସରସ୍ୱତୀ ଆମ ଦି'ଜଣଙ୍କୁ ଉସ୍‌କେଇଲେ ସିନା, ପ୍ରସାଦ ଢାଳି ଦେଲେ ତା'ରି ହାତକୁ । ସେତେବେଳେ ମୋର ଇଚ୍ଛା ହୁଏ ମୁଁ ଅକ୍ଷୟଭାଇକୁ କୁଣ୍ଢେଇ ପକେଇବି, ଯେମିତିକି ମୁଁ ତା'ଠାରୁ କିଛି ପାଇବି, ପ୍ରସାଦରୁ ଟିକିଏ ସ୍ପର୍ଶ କରି ନେବି, ଯେଉଁଥିରେ ମୋର ଅଭାବ ଘୁଞ୍ଚିଯିବ ।

—କଲେଜ୍‌ରେ ପଢ଼ିଲାବେଳେ ଆମେ ବି ଝିଅମାନଙ୍କୁ ଅନାଉଥିଲୁ । ହେଲେ ଦୂରରେ ଥାଇ । ସିଟି ମାରୁ ନ ଥିଲୁ । ଅଶ୍ଳୀଳ ଇଙ୍ଗିତ କରୁ ନଥିଲୁ । କିନ୍ତୁ ତାଙ୍କୁ ଗୋଡ଼ରୁ ମୁଣ୍ଡଯାଏଁ ଅନେଇବାରେ ତ୍ରୁଟି କରୁ ନଥିଲୁ । ଏବଂ ତାଙ୍କ ନୟନ ଦଶନ ସ୍ତନ ଜଘନ ଆଦି କୌଣସି ଅଂଶକୁ ପ୍ରସିଦ୍ଧ କବିମାନଙ୍କର ବଚ୍ଛା ବଚ୍ଛା ଉପମାରୁ ବାଦ୍ ଦେଇପାରୁ ନଥିଲୁ । କିନ୍ତୁ ଏଠି ମଧ୍ୟ ଅକ୍ଷୟଭାଇ ମୋଠୁଁ ବଳି ପଡ଼ିଲା । ଥରେ କାମୁକତାରେ ଏକ ଅଜବ

ଦାର୍ଶନିକତା ଯୋଡ଼ି ଦେଇ ପାରିଲା । କହିଲା, "ବୁଝିଲୁ ଅଜୟ, ନିର୍ଦ୍ଦିଷ୍ଟ ଅଙ୍ଗର ମାଧ୍ୟମରେ ଅନଙ୍ଗ ଓରଫ୍ ଅଦେହ, ହୁଏତ ଆମ୍ଭର ଅନୁମାନ ନକରି ପାରିଲେ ଆମେ ଚିରଦିନ ଭକୁଆ ହୋଇ ରହିଯିବା । ମନୋନୀତ ପଥରରେ ସିନ୍ଦୂର ଲଗେଇ ଭକ୍ତି କରିବା ଯାହା, ପ୍ରଣୟିନୀର ସୁନିର୍ବାଚିତ ଅଙ୍ଗକୁ ଏଇ ମୋର ଭଲ ପାଇବାର ବିଗ୍ରହ ବୋଲି ଆତୁରି ବସିବା ସେଇଆ । ହେଉ ପଛେ ସେ ତା'ର ଚେପ୍‌ଟା ନାକ, ଗାଲରେ ଚିପଚିହ୍ନ, ପୋଇଗୁଲିଆ ସ୍ତନାଗ୍ର କି ଆଉ କଅଣ···କିଛି ଗୋଟାଏ ବାଛିନିଅ, ଯାହାର ସାହାଯ୍ୟରେ ତୁମେ ତୁମର ସତ୍ତା ହଜେଇ ଦେଇ ପାରିବ, ଆଖି ବୁଜିଦେଇ ଊର୍ଦ୍ଧ୍ୱକୁ, ଅତି-ଅନୁଭବର ସ୍ୱର୍ଗକୁ ଛୁଇଁ ପାରିବ । ସେକ୍‌ସ ନୁହେଁ, ତୁଚ୍ଛା ସେକ୍‌ସ ନୁହେଁ, କାହିଁକି ନା ସେଥିରେ ବୈଶିଷ୍ଟ୍ୟ ନାହିଁ, ଅନ୍ଧାରରେ ଖାଇଲେ ଗୁଡ଼, ଆଲୁଅରେ ଖାଇଲେ ଗୁଡ଼—କଅଣ ବୁଝିଲୁ ନା ମୁଁ କ'ଣ କହୁଛି ?" ମୁଁ କିଛି ବୁଝିଲି ନାହିଁ ଏବଂ ସେତିକିବେଳେ ମୋ ମନରେ ପାପ ଛୁଇଁଥିଲା ଯେ, ଏଇ ଲୋକଟା ଶାନ୍ତି ପାଇବ । ତା'ର ଏଇ ଅତିବୁଦ୍ଧିର ଅଦ୍ଭୁମିକାକୁ କୋଉ ବିଧାତା ସହି ପାରିବ ନାହିଁ ।

କଲେଜ ହତାରେ ବୁଲୁଥିବା କୁକୁର ବିଲେଇଙ୍କ ଗଣତନ୍ତ୍ରଠାରୁ ଆରମ୍ଭ କରି ସୁଦୂର ଇଟାଲୀରେ ଚାଲିଥିବା ନିର୍ବାଚନ, ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟଙ୍କ ମାଡ଼ୁଆ ଢଙ୍ଗର ଚମତ୍କାରିତା, ତଥା ନେତା ବିଶେଷଙ୍କ ମହାନୁଭବ ସ୍ୱାର୍ଥପରତା—କେଉଁଠୁ କେଉଁଯାଏଁ ଆମେ ଗପିଯାଉ, ତା'ର ଠିକଣା ନଥାଏ । ଏବଂ ପ୍ରତ୍ୟେକ କଥାବସ୍ତୁରେ ଅକ୍ଷୟ ଭାଇ ତା'ର ଅତି ବୁଦ୍ଧିର ନିଜର୍ ଗୁଡ଼ିଯାଏ ମୋ ପାଇଁ । ଗୋଟାଏ ଅଭିନବ ଉପମା, କେଉଁ ପଙ୍କରୁ ଉଙ୍କି ମାରୁଥିବା ପଦ୍ମ, କେଉଁ ପଦ୍ମର ଅନ୍ତସ୍ଥଳକୁ ଗ୍ରେବଉଥିବା କୀଟ, କେଉଁ ଉଚ୍ଛନ୍ନ ଭଗବାନ୍, କେଉଁ ବିରସ ସଇତାନ୍··ସତେକି ଆମ ଦେବଦତ୍ତ ବୁଦ୍ଧିର କାମ ହେଲା ନିତ୍ୟ ନୂତନ ଏବଂ ଉଦ୍ଭଟ ଆବିଷ୍କାର, ସେଇ ହେଲା ତା'ର ସାର୍ଥକତା ।

ଥରେ ସେ ମୋତେ କହିଲା—"ବୁଝିଲୁ ଅଜୟ, ମୋ ଜୀବନରେ ଯେଉଁ ଦୁଃଖ ଆସିବ, ନ ଆସିବାର କୌଣସି କାରଣ ନାହିଁ, ତା'କୁ ବି' ମୁଁ ଚଡ଼େଇ ପାରିବ, ଛଗୁଲେଇ ପାରିବ, ଏବଂ ହସି ଉଡ଼େଇ ଦେଇ ପାରିବ । କିନ୍ତୁ···"

"କିନ୍ତୁ କଅଣ ?" ମୁଁ ପଚାରିଲି ।

"ତୁ ମୋ ପାଖରେ ଥିବା ଦରକାର, ତୁ କେବଳ ବୁଝିବୁ ତା'ର ମର୍ଯ୍ୟାଦା । ଅକ୍ଷୟ-ଅଜୟ ଦୁଇଟି ଭାଇ, ଖେଳ ଖେଳୁଛନ୍ତି ଜୀବନ ନେଇ···"

ସେଇଠୁଁ ସେ ହସିଲା ଠୋ' ଠୋ' ହୋଇ ଏବଂ ମୁଁ ଏଥର ସତସତିକା ତା'କୁ କୁଣ୍ଢେଇ ପକେଇଲି । ଏବଂ ମୋ ଛାତିକୁ ପିଟି ଚାଲିଥିବା ଏକ ଅମାନିଆ ଦମ୍‌ଦମ୍‌କୁ ଥାପୁଡ଼େଇଲି । ପାରିବୁ ତ ? ତୁଲେଇ ପାରିବୁ ଏଇ କୋଳାକୋଳିର ଅଙ୍ଗୀକାର ?

ଆଃ ! କିଏ ଜାଣିଥିଲା ସେ ମୋତେ ଏମିତି ଦଗା ଦେବ ବୋଲି ?

ଭଲରେ ଭଲରେ ଆମେ ଏକାଠି ପାସ୍ କରିଗଲୁ, ମାଟ୍ରିକ୍, ବି.ଏ.,ଏମ୍.ଏ । ସେ ଫାଷ୍ଟକ୍ଲାସରୁ ମୁଁ ବି ଫାଷ୍ଟକ୍ଲାସ୍, କିନ୍ତୁ ସେ ଟିକିଏ ଉପରକୁ, ମୁଁ ଟିକିଏ ତଳକୁ । ଥରେ ଅଧେ ମୋତେ ଅବଶ୍ୟ ବିରକ୍ତ ଲାଗୁଥିଲା, ବିଧାତାଙ୍କ ଉପରେ ରାଗିବାକୁ ଇଚ୍ଛା ହେଉଥିଲା —କିଅଣ ଲେଖା ହୋଇଛି ଯେ, ସେ ସବୁବେଳେ ଟିକିଏ ଉପରେ ଥିବ, ଆଉ ମୁଁ ଟିକିଏ ତଳେ ? ଥରେ ହେଲେ କି'ଣ ଏଇ ନିୟମର ବିଚ୍ୟୁତ ହେବ ନାହିଁ ? କିନ୍ତୁ ତା'କୁ ଈର୍ଷା କୁହାଯିବା ଅନୁଚିତ । ଗୋଟାଏ ନିରବଚ୍ଛିନ୍ନ ବୈଷମ୍ୟର ସମତାରେ ବୋର୍ ହୋଇଯିବ ନାହିଁ ମଣିଷ ?

ଯଥା ସମୟରେ ଏବଂ ପାଖାପାଖି ହୋଇ ଆମେ ବାହା ହୋଇ ପଡ଼ିଲୁ । ପ୍ରାୟ ଏକା ଧରଣର ସ୍ତ୍ରୀ ପାଇଲୁ । ତା' ସ୍ତ୍ରୀ ଟିକିଏ ଅଧିକ ସୁନ୍ଦର ଏବଂ ମୋ ସ୍ତ୍ରୀ···ଏଭଳି ବକ୍ତବ୍ୟ ଏଠି ଚଳିବ ନାହିଁ ଅବଶ୍ୟ । କିନ୍ତୁ ଗୋଟିଏ କାରଣରୁ ମୋତେ ଯେତିକି ହସ ଲାଗିଲା, ସେତିକି ଚିଡ଼ ମାଡ଼ିଲା । ମନେ ହେଲା ଯେ, ଠାକୁରେ ଅକ୍ଷରେ ଅକ୍ଷରେ ତା'ର ମନୋବାଞ୍ଛା ପୂରଣ କରିବାକୁ ଚାହାଁନ୍ତି । କାହିଁକିନା ସତ୍ତ ନୂଆବୋଉ ମୋଟା ମୋଟି ସୁନ୍ଦର ହେଲେ ମଧ୍ୟ ଥିଲେ ଟେପ୍ଟାନାକୀ ! ପତ୍ନୀ-ପ୍ରଣୟିନୀର ସୁନିର୍ବାଚିତ ଅଙ୍ଗଟିଏ ରେଡ଼ିମେଡ଼୍ ହୋଇ ଆସିଛି ଆମ ବନ୍ଧୁ ପାଇଁ, ଯେମିତିକି ତା'କୁ ଆଶ୍ରା କରି ଆଖି ବୁଜିବାରେ, ଊର୍ଦ୍ଧ୍ୱକୁ ଉଠିବାରେ, ଆଦୌ ଅସୁବିଧା ହେବ ନାହିଁ ତା'ର ! ସେ ଯାହା-ହେଉ, ସେ ତା'ର ସ୍ତ୍ରୀକୁ ଅତି ଭଲ ପାଉଥିଲା, ଏଥିରେ ସନ୍ଦେହ ନାହିଁ । ଦୁଃଖର ବିଷୟ ଯେ, ମୋ ସ୍ତ୍ରୀ ସୁମତି ସତ୍ତ ନୂଆବୋଉଙ୍କୁ କ୍ଷମା କରି ପାରିଲା ନାହିଁ । ଛାଡ଼, ସେ କଥା ପରେ···

ଯଥାକ୍ରମେ ସେ ଅନ୍ୟତମ ଅଗ୍ରଗଣ୍ୟ କଲେଜର ଅଧ୍ୟାପକ ହେଲା, ମୁଁ ହେଲି ଡେପୁଟି ମାଜିଷ୍ଟ୍ରେଟ୍ । ଏବଂ ମୋର ମନେ ହେଲା ଯେ, ଏଥର ବି ସେ ଦି' ଖୋଜ ଆଗେଇଗଲା ମୋଠୁଁ ।

ପ୍ରାୟ ଏକା ସମୟରେ ମୋର ସୁନାନାକୀ ଝିଅଟିଏ ହେଲା, ଆଉ ତା'ର ଗୋଟିଏ ସୁସ୍ଥ ସବଳ ପୁଅ ।

ସେଇଠୁଁ ହଠାତ୍ ଦିନେ ମୁଁ ଶୁଣିବାକୁ ପାଇଲି ଯେ, ଅକ୍ଷୟ ଭାଇ ଶକ୍ତ ବେମାର ହୋଇ ଡାକ୍ତରଖାନାରେ ପଡ଼ିଛି । ମୁଁ ଅବିଳମ୍ବେ ତା' ପାଖକୁ ଗଲି, ଘଣ୍ଟା ଘଣ୍ଟା ଧରି ତା' ପାଖରେ ବସି ରହିଲି । ଆମର ତଥାକଥିତ ବାକ୍‌ବିତଣ୍ଡାରେ ସତ୍ତ ନୂଆବୋଉ ବି ତାଙ୍କ ଲୁହ ଭିତରେ ହସି ଉଠିବାକୁ ବାଧ୍ୟ ହେଲେ ।

କିନ୍ତୁ ସମୟ ଆସିଲା ଯେ, ଉଦ୍‌ବିଗ୍ନତାର ଗୁରୁତ୍ୱକୁ କଥାରେ କି ହସରେ କାଟି ଦେଇ ହେଲା ନାହିଁ । ସେତେବେଳକୁ ଅକ୍ଷୟଭାଇର ଡାକ୍ତରଖାନାରେ ପଡ଼ି ରହିବାର ବର୍ଷେ ଉପରେ ହୋଇଗଲାଣି । ସତ୍ତ ନୂଆବୋଉଙ୍କ ଲୁହଧାରକୁ ଆଉ ବନ୍ଦ କରି ହେଲା ନାହିଁ । ହେଲେ ସେ ଲୁହକୁ ପୋଛି ପୋଛି କହି ଚାଲିଥାଆନ୍ତି—

ଡାକ୍ତର କହୁଛନ୍ତି, ଶକ୍ତି ଫେରି ଆସିବ···

ସମୟ ଲାଗିବ ସିନା, ଫେରି ଆସିବ···

ନିଶ୍ଚୟ ଆସିବ, ଅଲ୍‌ବତ୍‌ ଆସିବ, ମୋତେ ଠାକୁରେ ସପନେଇଥିଲେ ପରି !

ଏଣେ ମୁଁ ଡାକ୍ତରଙ୍କଠାରୁ ଯାହା ବୁଝିଥିଲି, ତା'ର ତାତ୍ପର୍ଯ୍ୟ ଭିନ୍ନ । ଯେ ତା' ହାଡ଼ ଭିତରେ ଯକ୍ଷ୍ମାର ବୀଜାଣୁ ଘର କରି ସାରିଲେଣି, ତାଙ୍କୁ ସେଠୁଁ କାଢ଼ି ଦେଇ ହେବ ଏଭଳି ଆଶା ପୋଷଣ କରିବା ବୃଥା । ଅତଏବ ଅକ୍ଷୟ ମହାପାତ୍ର କେତେ ଦିନ ଅକର୍ତ୍ତବ୍ୟ ହୋଇ ପଡ଼ି ରହିବ ବିଛଣାରେ, କହି ହେଉ ନାହିଁ···ହୁଏତ ସବୁଦିନ ପାଇଁ ।

ଅକ୍ଷୟ ଭାଇ ତା ବୁଦ୍ଧିର ଆଣ୍ଟେନା ସାହାଯ୍ୟରେ ଅନୁମାନ କରି ସାରିଥିଲା ଯେ, ଏହିଭଳି କିଛି ଗୋଟାଏ ଘଟିବ । ତେଣୁ ସତୀ ନୂଆବୋଉ ଆଶାର ସଳିତାକୁ ତେଜିଲା ବେଳେ ସେ କେବଳ ହସୁଥାଏ । ଥରେ କହିଲା ଯେ ହଁ, ଅବଶ୍ୟ ଫେରି ଆସିବ, ଶକ୍ତିର କ୍ଷୟ ନାହିଁ, କିନ୍ତୁ କେଉଁବାଟେ ଏବଂ କାହା ପାଇଁ ଆସିବ, କହି ହେଉ ନାହିଁ ।

ଅକ୍ଷୟ ଭାଇ ଚିତ୍‌ ହୋଇ ଶୋଇଗଲା । ଶୋଇ ରହିଛି ଆଜଯାଏଁ ।

କହିବା ବାହୁଲ୍ୟ ଯେ, ସେ ଆଉ ମୋ ସାଙ୍ଗରେ ତାଳ ଦେଇ ପାରିଲା ନାହିଁ, ମୋତେ ଟପିଯିବା ଦୂରର କଥା । ମୁଁ ଉଠିଲି ଉପରକୁ, ଆହୁରି ଉପରକୁ । ଆଇ.ଏ.ଏସ୍.କୁ ପ୍ରମୋସନ ପାଇଲି । ଆଉ ଗୋଟିଏ ପୁଅ ଏବଂ ଝିଅଙ୍କର ବାପ ହେଲି । ଏକ କେନ୍ଦ୍ରୀୟ ସରକାରୀ ନିଗମରେ ଯୋଗ ଦେଇ ଓଡ଼ିଶା ଛାଡ଼ିଲି ଏବଂ ମଝିରେ ମଝିରେ କବିତା ଲେଖିଲି, ଯାହା ପୂର୍ବରୁ କେବେ ଲେଖିବାପାଇଁ ସାହସ ହେଉନଥିଲା । କିନ୍ତୁ ବେଳେ ବେଳେ ମନେ ପଡ଼େ ଏବଂ ଛାତିରେ ଛନକା ପଶେ (ବିଶେଷତଃ ରାତିରେ, ଦାମ୍ପତ୍ୟ ସୁଖରେ ନିଆଁ ଲାଗିଲା ପରି) ଯେ ମୋର ପରମ ବନ୍ଧୁ, ସାଇଲେଖା ବନ୍ଧୁ, ପଡ଼ି ରହିଛି ସେମିତି । ଡାକ୍ତରଖାନାରୁ ଖଲାସ ହେଲା ପରେ ପୁରୀରେ ଗୋଟାଏ ଘର ଭଡ଼ା ନେଇ, ଗୋଡ଼କୁ ଟେକି ଛାତକୁ ଅନେଇ ଶୋଇ ରହିଛି । ଖାଲି ଭାବୁଛି, ଭାବ ଗିଳୁଛି, ଯେତେକ ମହା-ମନୋହର ଭାବନା । ଏକୁଟିଆ । ହେଲେ ମୁଁ ନିଜକୁ ଆଶ୍ୱାସନା ଦିଏ ଯେ, ତଥାପି ସେ ହସୁଥିବ ମୁର୍‌କି ମୁର୍‌କି,—ହସୁ ନଥିବ ? ସେଇ ପରି ତା'ର ବିଶେଷତ୍ୱ ? ଅଦ୍ୱିତୀୟ ବ୍ୟକ୍ତିତ୍ୱ ?

ସହଜେ ଚାକିରି ଖଣ୍ଡିକ ଗଲା । କିନ୍ତୁ ସ୍ତ୍ରୀ ପିଲା ଚଳିବେ କେମିତି ? ଅଗତ୍ୟା ସତୀ ନୂଆବୋଉ ପୁଅକୁ ନେଇ ଗାଁରେ ରହିଲେ ପୈତୃକ ଜମିବାଡ଼ି ବୁଝିବାପାଇଁ । ପୁରୀରେ ସ୍ୱାମୀଙ୍କ ସେବାପାଇଁ ଲୋକ ଖଞ୍ଜି ଦିଆଗଲା । ସେବାକାରୀ ପୂଜ, ଯେ ତା' ଧରାଶାୟୀ ମାଲିକର ଦେହକୁ ସଫା ରଖିବ । ମାଲିକର ମନୋବୃତ୍ତି ସାଙ୍ଗରେ କିଛି କାରବାର ନାହିଁ ତା'ର ।

ସେ କ'ଣ ଏକୁଟିଆରେ କାନ୍ଦୁ ନଥିବ ବେଳେ ବେଳେ ? ଟ୍ରାଜେଡ଼ି କଣ ଏଭଳି ଏକ ମହାନ୍ ବସ୍ତୁ ଯେ, ତା'ର ଅନୁଭବରେ ମଣିଷ ଦେବତା ପାଲଟିଯାଏ ? ବାଜେ କଥା ! ଥରେ ଅଧେ ମୋର ମନ ହୁଏ, ମୁଁ ଚୁପ୍‌ଚୁପ୍ ତା' ପୁରୀ ଘରର ବାରିବାଟେ ଯାଇ

ଯୁଧିଷ୍ଠିର ଆସି ପହଞ୍ଚିଲେ ଶିଖରରେ । ଏକାକୀ । ହେଲେ ନିଜକୁ ନିରେଖି ଅନୁଭବ କରିବାର ସମୟ ମିଳିଲା ନାହିଁ ତାଙ୍କୁ । କାରଣ ସ୍ୱର୍ଗର ନିମନ୍ତ୍ରଣ ଅଜାଡ଼ିହୋଇ ପଡ଼ିଲା ତାଙ୍କ ଉପରେ—ଚିହିଦଣ ଦେବତାଙ୍କ ସାଧୁବାଦ, ଏବଂ ଦେବଦୁନ୍ଦୁଭିର ଧ୍ୱନି ।

ପଞ୍ଚାଶ ସହସ୍ର ଯୋଜନ ତଳକୁ ଶୁଭୁନି ହେଉ ନାହିଁ । ସେଇଠି ଅଛନ୍ତି ମୋ ବୀରବର ଭ୍ରାତୃଗଣ ଓ ଦ୍ରୌପଦୀ । କିନ୍ତୁ ସେଇ ଅନୁମାନର ବେଦନାଟିକ ମଧ୍ୟ ଉଷ୍ଣି ପାରିଲା ନାହିଁ ବେଶି ସମୟ । ସ୍ୱର୍ଗ ହାତ ପାହାନ୍ତାରେ । ଉଚ୍ଛନ୍ନ କରୁଛି ।

(୨)

ଦେହ ଥରି ଯାଉଛି । ରୋମ ଟାଙ୍କୁରି ଉଠୁଛି । ଯୁଧିଷ୍ଠିର ନିଜକୁ କହିଲେ ଯେ, ଏଇ ଶିହରଣ ସ୍ୱର୍ଗରୁ ଆସୁଛି । ଦିବ୍ୟ ଅନୁଭବ ଏଇଆକୁ କୁହନ୍ତି । କିନ୍ତୁ ସେଥିର ପୁଲକ କଣ ଏମିତି ଥରାଇ ଦିଏ ଅସ୍ଥିମଜ୍ଜାକୁ ? ସମ୍ପୂର୍ଣ୍ଣ ରାଜବେଶ ପିନ୍ଧିଛି ମୁଁ, ହେଲେ ମନେ ହେଉଛି ମୁଁ ନଗ୍ନ, ଏକୁଟିଆ । ନା, ଯୁଧିଷ୍ଠିର ନିଜକୁ ବୁଝେଇଲେ । କହିଲେ, ତୁ ଏକୁଟିଆ ନୁହଁ, ତୁ ଅଦ୍ୱିତୀୟ । ତୋ ଧର୍ମାଚରଣର ତୁଳନା ନାହିଁ, ସେଇଥିପାଇଁ ତୁ ଅଦ୍ୱିତୀୟ । ଏତିକ ଭୁଲିଗଲେ ଚଳିବ ନାହିଁ ।

ସେଇଠୁଁ ସେ ଚତୁଷ୍ପାର୍ଶ୍ୱକୁ ଅନେଇଲେ । ଆପଣା ଅଦ୍ୱିତୀୟ ସ୍ୱରୂପକୁ ସ୍ୱସ୍ଥାନରେ ଥାପନା କରି ଏଇ ଅଭିନବ ଜଗତର ସ୍ୱାଦ ମୂଲେଇଲା ପରି । ଆଃ, ପୂର୍ବରେ ହିମଗିରି, ଯେଉଁଠି ସୂର୍ଯ୍ୟଦେବତାଙ୍କ ଆସ୍ଥାନ । ଦକ୍ଷିଣକୁ ଅନନ୍ତଗିରି, ତା'ଉପରେ ବସିଛନ୍ତି ଅନନ୍ତ ନାରାୟଣ । ପଶ୍ଚିମରେ ମେରୁପର୍ବତ, ଇନ୍ଦ୍ରଦେବଙ୍କ ଆସ୍ଥାନ । ଏବଂ ଉତ୍ତରକୁ କୈଳାସ । ତା'ଉପରେ ଢୁଳୁଢୁଳୁ ନେତ୍ରରେ ବସିରହିଛନ୍ତି ସ୍ୱୟଂ ସଦାଶିବ । ଅପୂର୍ବ ଅପରୂପ ଏଇ ଦୃଶ୍ୟ ଅଧାସ୍ୱର୍ଗର ପରିବେଶ । ସ୍ୱଚକ୍ଷୁରେ ଏହାକୁ ଦେଖିପାରିଲି, ଏହାଠାରୁ ବଳି ସୌଭାଗ୍ୟ ଆଉ କଅଣ ଥାଇପାରେ ? ଅବଶ୍ୟ ନିଜକୁ ନିଜେ ଦେଖିଲି, ନିଜପାଇଁ, ଆଉ କେହି ନାହାନ୍ତି ମୋପାଖରେ । ଏକାକୀ । କିନ୍ତୁ ଏକାକୀ ବୋଲି ତ ଅଦ୍ୱିତୀୟ···ଆରେ ଇଏ କଅଣ ? ଏଠି ଏଇ ଜୀର୍ଣ୍ଣ କୂପଟାଏ କୁଆଡୁ ଆସିଲା ? ଏବଂ ଏମାନେ କିଏ ? ଯୁଧିଷ୍ଠିରଙ୍କ ଦୃଷ୍ଟି ପଡ଼ିଲା ତା'ଭିତରେ ଯନ୍ତ୍ରଣା ଭୋଗୁଥିବା ଛୟାଳିଶ ସହସ୍ର ରାଜାଙ୍କ ଉପରେ । ସେମାନେ ଥିଲେ ନର୍କର ଅନ୍ୟତମ ଅଂଶରେ ଦଣ୍ଡ ଭୋଗୁଥିବା ପାପିଗଣ ।

ଧର୍ମରାଜଙ୍କ ଦୃଷ୍ଟି ପଡ଼ିଲାରୁ ତାଙ୍କ ପାପ କଟିଗଲା, ଅଭିଶାପର ସର୍ତ୍ତ ଅନୁଯାୟୀ । କିନ୍ତୁ ଯୁଧିଷ୍ଠିର ନର୍କ ଦେଖିଲେ । ତାଙ୍କୁ ନର୍କ ଦେଖିବାକୁ ପଡ଼ିଲା, କାହିଁକିନା । ମହାଭାରତ ଯୁଦ୍ଧରେ ସେ ଅଧା ମିଛଟିଏ କହିଥିଲେ ଦ୍ରୋଣାଚାର୍ଯ୍ୟଙ୍କୁ । ଖାଲି ହାତୀ ଅଶ୍ୱତ୍ଥାମା ମରିଛି ବୋଲି ଜାଣିଥିଲେ ମଧ୍ୟ କହିଲେ ଯେ, ହାତୀ ହେଉ କି ମଣିଷ ହେଉ, ଅଶ୍ୱତ୍ଥାମା ମରିଯାଇଛି । ବେଶ୍, ସେତିକ ହେଲା ତାଙ୍କ ଦଣ୍ଡ । ସେଇ ଦୃଷ୍ଟିପାତ । ରାଶି ରାଶି

ସତ୍ୟବଚନର ସ୍ତୂପକୁ ଆଡ଼େଇ ଦେଇ ଏଇ ସାମାନ୍ୟ ଅଧା ମିଛ (କିମ୍ବା ଅଧା ସତ)ଟିକ ଆଉ କଅଣ କରିପାରିଥାଆନ୍ତା ତାଙ୍କର ?

ଯାହାହେଉ, ସେତିକ ଦୁର୍ଦ୍ଦଶାରୁ ମଧ୍ୟ ସେ ଶୀଘ୍ର ରକ୍ଷା ପାଇଗଲେ, ତଥା ତା'ର ଯନ୍ତ୍ରସାମାନ୍ୟ ହସ୍ତପରୁ, ଏବଂ ପୁଣି ଫେରି ଆସିଲେ ଶୁଭ୍ରହିମର ଆସ୍ତରଣକୁ, ଯେଉଁଠି କେବଳ ସେ, ଉପରେ ସ୍ୱର୍ଗ, ଏବଂ ପୁଣି ସେଇ ଅଭୂତପୂର୍ବ ଶିହରଣ ।

ଯଥାକ୍ରମେ ଯୁଧିଷ୍ଠିର ଶିହରଣକୁ ସମ୍ଭାଳିନେଲେ । କିନ୍ତୁ ସେ ତାଙ୍କର ଅଦ୍ୱିତୀୟପଣକୁ ସହଜେ ମୁଠେଇ ଧରି ପାରିଲେ ନାହିଁ କି ନିଃସଙ୍ଗତାକୁ ଜିଣିପାରିଲେ ନାହିଁ । ଫଳରେ ବିଷାଦ ଘୋଟିଗଲା ତାଙ୍କ ମନରେ, ଏବଂ ତା' ସାଙ୍ଗକୁ ଗୋଟାଏ ଅକାରଣ ଦୋଷୀଭାବ । ଭାବିଲେ—ସେତେକ ବନ୍ଧୁସୋଦରଙ୍କୁ ମରାଇ ଆସିଛି ମୁଁ । ସେଇଲାଗି ଆଜି କେହି ନାହାନ୍ତି ମୋ ପାଖରେ, କେହି ନାହାନ୍ତି ମୋତେ 'ଆହା' ପଦୁଟିଏ କହିବାପାଇଁ । ସ୍ନେହସହାନୁଭୂତିର ଧାପେ ଉଷୁମ ଆଣି ଦେବା ପାଇଁ । ହୋଇପାରେ ମୁଁ ଧର୍ମରାଜ, ଅତି-ମାନବ, ଅଦ୍ୱିତୀୟ । କିନ୍ତୁ ଅତିମାନବ ଯାହା, ଅଣମାନବ ସେଇଆ ନୁହେଁ କି ?

ସ୍ୱୟଂ ଧର୍ମଦେବତାଙ୍କ ମନରେ ଦୟା ଆସିଲା ତାଙ୍କର ଏଇ ଦୁରବସ୍ଥା ଦେଖି । ନିଃସଙ୍ଗତାରେ ଏତେ ଦୁଃଖ ଥାଏ ? କଅଣ ମିଳେ ସେଇ ସଙ୍ଗ ସୁଖରୁ, ଯାହାର ପ୍ରତି ପଦରେ କଳହ କନ୍ଦଳ, ରାଗରୋଷ ଓ କ୍ରନ୍ଦନର ରୋଳ ଉଠୁ ଥାଏ ? ଅଦ୍‌ଭୁତ ଏଇ ମର-ମଣିଷର ଚରିତ୍ର ! ହେଲେ ସେ ତାଙ୍କ ପ୍ରିୟତମ ଭକ୍ତର କଷ୍ଟ ସହି ପାରିଲେ ନାହିଁ । ବ୍ୟତିବ୍ୟସ୍ତ ହୋଇ ଉଠିଲେ । କିନ୍ତୁ ଉପାୟ କଅଣ ? ଯୁଧିଷ୍ଠିରଙ୍କୁ ସଶରୀରେ ଯିବାକୁ ପଡ଼ିବ ସ୍ୱର୍ଗକୁ । ତେଣୁ କେହି ତାଙ୍କ ସାଙ୍ଗରେ ଯାଇପାରିବେ ନାହିଁ, ଅସମ୍ଭବ ।

କେହି ମରଦେହୀ ତାଙ୍କ ସାଙ୍ଗରେ ଯିବେ ନାହିଁ ସିନା, ମୋତେ କିଏ ମନା କରିଛି ? ଧର୍ମଦେବଙ୍କର ସଦୟସ୍ୱଭାବ ହଠାତ୍ ଏକ ସୁମଧୁର ସସ୍ନେହ ହାସରେ ରୂପାୟିତ ହେଲା । ସତେକି ସେ ଗୋଟାଏ ରହସ୍ୟର ସେତୁ ବାନ୍ଧୁଛନ୍ତି ତାଙ୍କ ଭକ୍ତଙ୍କ ପାଇଁ ।

ଏହି ସମୟରେ ଯୁଧିଷ୍ଠିର ଗୋଟିଏ ଆବିଷ୍କାର କଲେ । ଦେଖିଲେ ଜଣେ ଅଛି ତାଙ୍କ ପାଖରେ, ଟିକିଏ ଗୁଡ଼ି । ଧୋବଧାଉଳିଆ କୁକୁରଟିଏ ! କୁକୁରଟିଏ କେମିତି କୁଆଡ଼ୁ ଆସି ପହଞ୍ଚିଗଲା ଏଠି, ଏଇ ଘୋର ହିମ ଭୂଇଁରେ ? ପୁଣି ଆସି ବସିଯାଇଛି କେଡ଼େ ଆରାମରେ, ହିମବନ୍ତର ଶୁଭ୍ରତାରେ ମିଶେଇ ଦେଇଛି ନିଜକୁ !

ହେଲେ ସେ ଏଇ ରହସ୍ୟକୁ ନେଇ ମୁଣ୍ଡ ଘୁରାଇବାକୁ ଚାହିଁଲେ ନାହିଁ । ବଡ଼କଥା ହେଉଛି ଯେ, ଜୀବଟିଏ ଆସିଛି ତାଙ୍କ ପାଖକୁ । ରକ୍ତମାଂସର ପ୍ରାଣୀଟିଏ । ଆବେଗର ବଶ ତଳେ ବସି ଯୁଧିଷ୍ଠିର ତା'କୁଇ ଚାହିଁ ରହିଲେ । ମନ ହେଉଥାଏ ତାକୁ ଆହୁରି ପାଖକୁ ଟାଣି ଆଣନ୍ତେ, ତା'କୁ ଆଉଁସି ଦିଅନ୍ତେ, ଆଉ ତା'କୁ ବାରମ୍ବାର କୁହନ୍ତେ—ତୁଇ ମୋର ସାର୍ଥୀ, ତୁଇ ମୋର ସଖା !

ହଠାତ୍ ବାଘଟାଏ ବାହାରି ଆସିଲା ପର୍ବତ ତଳର ବନସ୍ତ ଭିତରୁ । ଏବଂ ଶ୍ୱାନକୁ ଖାଇବା ପାଇଁ ଅଗ୍ରସର ହେଲା । ତହୁଁ ଶ୍ୱାନ ପ୍ରାଣବିକଳରେ ବୋବାଳି ଛାଡ଼ିଲା ଯୁଧିଷ୍ଠିରଙ୍କ ଆଡ଼କୁ ଚାହିଁ—"ମୋତେ ବଞ୍ଚେଇ ପାରିବ ନାହିଁ, ନେଇ ଯିବ ନାହିଁ ତୁମ ପାଖକୁ ?"

ଓଃ ! ପୂର୍ବରୁ କିଏ ଏମିତି ଡାକୁଥିଲା କି ମୋତେ ? ଯାହାର କାନ୍ଦଣାକୁ ମୁଁ ଶୁଣିଲି ନାହିଁ ? ନା, ନା, ଏଇ ପ୍ରଥମ । ଏଇ କୁକୁର ହିଁ ଡାକୁଛି ମୋତେ ତାକୁ ରକ୍ଷା କରିବା ପାଇଁ । ଆଉ ମୋ ଅନ୍ତଃସ୍ଥଳ ମନ୍ଥି ହୋଇ ଯାଉଛି ତା'ର ଡାକରା ଶୁଣି । ମୋ ସଖାସୋଦର ସଭିଏଁ ନାଶ ଗଲେ, ହେଲେ କାହାରି ପାଇଁ ଦୟା ବଳିଲା ନାହିଁ ମୋ ହୃଦୟରେ । କିନ୍ତୁ ଏଇକ୍ଷଣି ମନେ ହେଉଛି, ବୋଧହୁଏ ସେଇଥିପାଇଁ ମନେ ହେଉଛି ଯେ, ଏଥର ଆଉ କ୍ଷମା ନାହିଁ ମୋର । ମୁଁ ଏହା'ର ମରଣ ଦେଖି ପାରିବି ନାହିଁ, ସହି ପାରିବି ନାହିଁ ! ଏହାର ବିନାଶରେ ମୋର ଧର୍ମନାଶ ହେବ, ଜୀଇଁବାରୁ ମରଣ ହିଁ ସାର ହେବ, ସେଇ ହେବ ମୋର ପଉରୁଷ···

ଭବଦଗ୍ଧ ଯୁଧିଷ୍ଠିର ଅବିଳମ୍ବେ କୁକୁରକୁ ଆବୁରି ବସିଲେ । ତାକୁ ରକ୍ଷାକଲେ ବ୍ୟାଘ୍ର ମୁଖରୁ ।

ସେଇଠୁଁ ବିଧାତା ପୁରୁଷ ବିଚାରିଲେ ଯେ, ଯଥେଷ୍ଟ ହେଲାଣି ଏଇ ଲୀଳାଖେଳାର ଛନ୍ଦର । ବିଚରା ଧର୍ମରାଜାଙ୍କୁ ଅଧିକ ବିଭ୍ରାନ୍ତିରେ ପକାଇବା ଉଚିତ ହେବ ନାହିଁ । ଏଥର ତାଙ୍କୁ ତାଙ୍କର ପାଉଣା ଦେଇଦେବାକୁ ପଡ଼ିବ । ଯଶସ୍ୱୀରେ ସ୍ୱର୍ଗ । ସେଇଠୁଁ ସେ ଇନ୍ଦ୍ରଙ୍କୁ ଆଜ୍ଞା ଦେଲେ ଯୁଧିଷ୍ଠିରଙ୍କୁ ପୁଷ୍ପକ ବିମାନରେ ବସାଇ ସସମ୍ମାନେ ନେଇଆସିବା ପାଇଁ ।

ଇନ୍ଦ୍ରଙ୍କୁ ଆସିବାର ଦେଖି ଯୁଧିଷ୍ଠିର ବାଟତଳୁ ଉଠି ଆସି ତାଙ୍କୁ ସ୍ତୁତି କରିବାରେ ଲାଗିଲେ । ଏବଂ ଜାଣିଲେ ଯେ, ମହାଯାତ୍ରା ଶେଷ ହେବାକୁ ଯାଉଛି । କିନ୍ତୁ ଇନ୍ଦ୍ର ଯେତେବେଳେ ଓହ୍ଲାଇ ଆସି ତାଙ୍କୁ ସାଦର ନିମନ୍ତ୍ରଣ ଜଣାଇଲେ ରଥକୁ ଉଠି ଆସିବା ପାଇଁ, ଧର୍ମରାଜା ଗୋଟାଏ ନିର୍ବୋଧ ପିଲାଳିଆ ପ୍ରଶ୍ନ ପଚାରିଲେ ତାଙ୍କୁ—"ଯିବି ଯେ, ଏକୁଟିଆ ଯିବି କେମିତି ? ସୋଦରମାନଙ୍କୁ ନାଶ କରି ଏକୁଟିଆ ଅମର ହୋଇ ବସିବି ?" ସତେକି ସେଇଥିପାଇଁ ଏତେ କଥା, ଏତେ ବ୍ୟଥା, ସେଥିପ୍ରତି ତାଙ୍କର ପ୍ରକୃତରେ ସ୍ପୃହା ନାହିଁ ଥିଲେ ହେଲେ । ସ୍ୱର୍ଗଲାଭରୁ ଓହରି ଯିବାର କିଛି ଗୋଟାଏ ବାହାନା ଖୋଜୁଛନ୍ତି ଧର୍ମରାଜ ।

ଯାହାହେଉ ସସ୍ମିତ ଇନ୍ଦ୍ରଦେବ ତାଙ୍କୁ ବୁଝାଇଦେଲେ ଯେ, ଚିନ୍ତାର କୌଣସି କାରଣ ନାହିଁ । ଯେହେତୁ ମରଦେହ ତ୍ୟାଗ କଲା ପରେ ତାଙ୍କ ନିଜଲୋକସାଜ ବସିଲେଣି ଯାଇଁ ସ୍ୱର୍ଗରେ । ଚାରିପାଣ୍ଡବ, ତଥା ତାଙ୍କ କୁଳକୁଟୁମ୍ବ । ଏବଂ ସ୍ୱୟଂ ଶ୍ରୀକୃଷ୍ଣ । କହିଲେ, "ସେମାନେ କେବେଠୁଁ ତୁମର ବାଟ ଚାହିଁ ବସିଛନ୍ତି ପରା ! ଆସ, ଆସ, ଚାଲିଆସ ଏଥର···"

ଇନ୍ଦ୍ରଙ୍କ କଥା ମାନି ଯୁଧିଷ୍ଠିର ରଥ ଆଡ଼କୁ ମୁହାଁଇଲେ । କିନ୍ତୁ ତା' ପୂର୍ବରୁ ସେ ଗୋଟାଏ ବିଚିତ୍ର କାର୍ଯ୍ୟ କଲେ । ସେଇ ଶୁକ୍ଳାମ୍ବର ଶ୍ୱାନଟାକୁ କୋଳରେ ଧରିଲେ । ଜଣାଇଦେଲେ ଯେ, ସେ ବି ଯିବ ତାଙ୍କ ସାଙ୍ଗରେ ।

"ଆରେ ଇଏ କ'ଣ କରୁଛ ଧର୍ମରାଜ ?" ଆଚମ୍ବିତ ହେଲା ପରି ଇନ୍ଦ୍ରଦେବ ପଚାରିଲେ ଯୁଧିଷ୍ଠିରଙ୍କୁ, ଯଦିଓ କୁକୁରର ପ୍ରକୃତ ପରିଚୟ ଜଣା ଥିଲା ତାଙ୍କୁ । କହିଲେ, "ଏଇ ଅପବିତ୍ର ଜନ୍ତୁଟାକୁ ସାଙ୍ଗରେ ନେବାକୁ ବସିଛ ? ଯାହାକୁ ଛୁଇଁଲା କ୍ଷଣି ସ୍ନାନ କରି ଶୁଚି ହେବାକୁ ପଡ଼େ, ଯାଗଯୋଗ ନଷ୍ଟ ହୋଇଯାଏ ଏବଂ ଯାହାର ପାଦଧୂଳି ଲାଗିଲେ ଆୟୁଷ ତୁଟିଯାଏ ? ଇଏ ପୁଣି ଯିବ ସ୍ୱର୍ଗକୁ ??"

କିନ୍ତୁ ଯୁଧିଷ୍ଠିର ତାଙ୍କୁ କୋଳରୁ ଓହ୍ଲେଇ ଦେବାକୁ ନାରାଜ । ଏବଂ ସେ ମିନତି କଲେ ଇନ୍ଦ୍ରଦେବଙ୍କୁ, "ଅନେକ ସୋଦର ଥିଲେ ମୋର । କିନ୍ତୁ କେହି ମୋର ସାଥି ହୋଇ ରହିପାରିଲେ ନାହିଁ । ମୋତେ ଏକୁଟିଆ ଛାଡ଼ି ଦେଇ ଗଲେ । କେବଳ ଏଇ ଶ୍ୱାନ ଗୋଟି ରହିଲା ମୋ ପାଖରେ । କେବଳ ଏଇ ରକ୍ଷା କଲା ମୋତେ, ମୋର ଧର୍ମ, ମଣିଷ ହୋଇ ବଞ୍ଚି ରହିବାର ଧର୍ମ । ତେଣୁ ଦୟା କରି ଏ।'କୁ ନେବାକୁ ଦିଅନ୍ତୁ ମୋ ସାଙ୍ଗରେ, ମୁଁ ନେହୁରା ହେଉଛି ! ସ୍ୱର୍ଗସୁଖ ଲୋଡ଼ା ନାହିଁ ମୋର, ଯଦି ଏ ମୋ' ସାଙ୍ଗରେ ନ ଆସେ ।"

ଏବେ ଧର୍ମଦେବ, ଇନ୍ଦ୍ରଦେବ, କମ୍ବା ଉପରୁ ଏଇ ଦୃଶ୍ୟ ଦେଖୁଥିବା ଯେ କି ଦଶ ଦେବତାଙ୍କର ବୁଝିବାରେ ବାକି ରହିଲା ନାହିଁ ଯେ, ତଥାକଥିତ ସାଙ୍ଗସାଥୀଙ୍କ ଅଭାବ ପ୍ରକୃତରେ ଅତି ମାରାତ୍ମକ, ମରଦେହୀ ପାଇଁ । ନ ହେଲେ କି ଧର୍ମରେ ଅଟଳ ହୋଇ ରହିଥିବା, ଦୟାମାୟା ତେଜି ପ୍ରିୟଜନ ପ୍ରତି ଯେତେକ କଟୁକଥା କହି ଛାତିକୁ ପଥର କରିଥିବା ଧର୍ମରାଜାର ମଧ୍ୟ ଏଇ ଦଶା ହୋଇଥାଆନ୍ତା ଶେଷବେଳକୁ ? ହାୟ !

ସେଇଠୁଁ ରହସ୍ୟର ଉନ୍ମୋଚନ ହେଲା । ଇନ୍ଦ୍ରଦେବ ପ୍ରକାଶ୍ୟରେ ହସିଉଠି ଜଣାଇଦେଲେ ଯେ, ଶ୍ୱାନଗୋଟି ଆଉ କେହି ନୁହେଁ,—ଛଦ୍ମବେଶଧାରୀ ପରମଶୁଦ୍ଧ ଧର୍ମଦେବତା । ତହୁଁ ଧର୍ମଦେବ କ୍ଷଣକେ ଶ୍ୱାନରୂପ ତେଜି ଅନ୍ତର୍ଦ୍ଧାନ ହୋଇଗଲେ । ଏବଂ ଶୂନ୍ୟରେ ଥାଇ ସମ୍ବୋଧିଲେ ଯୁଧିଷ୍ଠିରଙ୍କୁ—"ହିମବନ୍ତରେ ଏକା ହୋଇ ପଡ଼ିଥିଲୁ ବତ୍ସ, ହିତମ୍ବର ପ୍ରାୟ । ସେଥିଲାଗି ମୁଁ ଆସିଥିଲି ତୋ ପାଖକୁ ଦୟାପରବଶ ହୋଇ । ତୋର ଆଚରଣ ପରି । ଯାହାହେଉ, ପରୀକ୍ଷା ସରିଗଲା ତୋର । ଯେତେକ ଦୁଃଖକଷ୍ଟର ଅବସାନ ହେଲା । ଯା' ଏବେ ସ୍ୱର୍ଗପୁରକୁ, ଆନନ୍ଦରେ ।"

ଏଥର ଯୁଧିଷ୍ଠିର ରଥକୁ ଉଠିଲେ । ଏବଂ ବିଧିବିଧାନ ଅନୁଯାୟୀ ସଶରୀରେ ସ୍ୱର୍ଗଲାଭ କଲେ । ମହାଯାତ୍ରା ଶେଷ ହେଲା । କିନ୍ତୁ ସ୍ୱର୍ଗରେ ପହଞ୍ଚି ମରଦେହ ତେଜି ଅମର ହୋଇ ବସିଥିବା ପତ୍ନୀ ସୋଦର ଜ୍ଞାତିକୁଟୁମ୍ବ ଆଦିଙ୍କୁ ଦେଖିଲା ପରେ ମଧ୍ୟ ତାଙ୍କର

ନିଃସଙ୍ଗତା ଦୁଃଖ କି ନିଃସଙ୍ଗତା ଦୋଷ ପୁରାପୁରି କଟିଯାଇଥିବ ବୋଲି ମନେ ହେଉ ନାହିଁ ତ ? କାରଣ ଦେବରାଜାଙ୍କ ନିର୍ଦ୍ଦେଶରେ ତାଙ୍କୁ ଏକା ହୋଇ ଭିନ୍ନ ଆସ୍ଥାନରେ ବସିବାକୁ ପଡ଼ିଲା, ଯେହେତୁ ସେ ଅନ୍ୟମାନଙ୍କ ପରି ସାଧାରଣ ଭାବରେ ଆସି ନାହାନ୍ତି ଏଠିକି । ସଶରୀରେ ଆସିଛନ୍ତି, ଅପାର ପୁଣ୍ୟର ଫଳ ସ୍ୱରୂପ । ଏକାକୀ, ଅଦ୍ୱିତୀୟ ।

ଯାହାହେଉ ଆଶା କରାଯାଏ ଯେ, କ୍ରମଶଃ ସେ ତାଙ୍କର ଅବଶିଷ୍ଟ ନିଜତ୍ୱକୁ ତ୍ୟାଗ କରି ପାରିଥିବେ । ଧ୍ୟାନମୁଦ୍ରାସ୍ଥିତ ଯୁଧିଷ୍ଠିର ଯେତେବେଳେ ମିଶି ଯାଇଥିବେ ଏକମେବ ବ୍ରହ୍ମଙ୍କଠାରେ, ଏବଂ ଜୀବଦ୍ଦଶାର ଯେତେକ ରଙ୍ଗରୂପ ଦୋଷଗୁଣ ଏକାକାର ହୋଇ ହଜି ଯାଇଥିବ ବସ୍ତୁଢରେ, ସେତେବେଳେ କ'ଣ କେଉଁ ଦୁଃଖ ଥିବ ଏକୁଟିଆପଣର ନା କେଉଁ ଅଦ୍ୱିତୀୟବୋଧର ଅହମିକା ?*

---

* ଶାରଳା ମହାଭାରତର ଆଧାରରେ ଲିଖିତ ।

# ଯେତେକ ବାଲିଗରଡ଼ା

ଭର୍ତ୍ସନାର ଛନ୍ଦେ ଛନ୍ଦେ ତାଳେ ତାଳେ ମୁଁ ସେଇ ବାଲିଗରଡ଼ାମାନଙ୍କୁ ଫିଙ୍ଗୁଥିଲି ସମୁଦ୍ର ଉପରକୁ । ଗୁରୁଚକ୍‌କଣ ବାଲିଗରଡ଼ା । କେଉଁଟି ଗୋଲ୍, କେଉଁଟି ଅଣ୍ଡାକାର, ଏବଂ ଗୋଟେ ଅଧେ ଗୁଣକୋଣିଆ, କିନ୍ତୁ ସବୁଗୁଡ଼ିକ ଚକ୍‌କଣ । କେଉଁଟି କଳା, କେଉଁଟି ଧଳା, କେଉଁଟି କଳା-ଧଳା ଗ୍ରୁପିଗ୍ରୁପିକା, କେଉଁଟି ଅବା ଧୂସର, ବାଦାମି ଇତ୍ୟାଦି, କିନ୍ତୁ କାହାର ରଙ୍ଗ ଘଡ଼ିଲି ପରି ବା ଜଳିଲି ପରି ନୁହେଁ । ତେଣୁ ପ୍ରତ୍ୟେକେ ସୁରୁଖୁରୁରେ ଆସୁଥାଆନ୍ତି ମୋ ହାତକୁ, ମୋ ହାତରେ ଘଷିହୋଇ ମୋତେ ସୁଖ ଦେଉଥାଆନ୍ତି, ଏବଂ କେଡ଼େ ମଜାରେ ଟୁବ୍‌କିନି ପଶିଯାଉଥାଆନ୍ତି ପାଣିର ଗହ୍ୱରକୁ । ଅବଶ୍ୟ ତାଙ୍କ 'ଟୁବ୍' ଶବ୍ଦ ପ୍ରକୃତରେ ମୋତେ ଶୁଭିଯାଉଥିଲି ବୋଲି କହି ହେବ ନାହିଁ । ତେବେ ମୁଁ ସେଥିର ସଙ୍ଗୀତକୁ ବେଶ୍ ଅନୁମାନ କରି ପାରୁଥିଲି । କାରଣ ନିକ୍ଷେପର କାର୍ଯ୍ୟକଳାପ କେବଳ ମୋ ଭର୍ତ୍ସନାପଦାବଳୀର ମାତ୍ରା ନ ଥିଲି (ମୋର ଅସ୍ଥିର ଆବେଗକୁ କମାକୋଳନ୍ ଦେଇ ସଜାଡ଼ିଲି ପରି), ସେ ବି ଥିଲି ପଦାବଳୀର ଅଙ୍ଗଲଗା ଅଂଶ । ଅନ୍ତରଙ୍ଗ ।

ହେଲେ କିଛି ସମୟ ପରେ ମୋର ମନେ ହେଲି, ଏବଂ ଦୁଃଖର ସହିତ ଯେ, ପଦାବଳୀ ସରିଯିବାକୁ ବାଧ୍ୟ । ମୋର ଭାଷା ସୀମିତ । ତା'ଛଡ଼ା ମୁଁ ଥକିଯାଇ ପାରେ । କିନ୍ତୁ ବାଲିଗରଡ଼ାମାନେ ତଥାପି ଅନେଇ ରହିଥିବେ ମୋଆଡ଼କୁ । ଏବଂ ପ୍ରଶ୍ନ ପଚାରୁଥିବେ— କିଓ, କ'ଣ ହେଲି ? ଆମେସବୁ କ'ଣ ପଡ଼ି ରହିଥିବୁ ଏଠି ? ଯିବୁ ନାହିଁ ସମୁଦ୍ର ଭିତରକୁ ?

ଜାଣିସିଆଣିଆ ପ୍ରଶ୍ନ । କାରଣ ସେମାନେ ଅସଂଖ୍ୟ, ଅନନ୍ତ । ସେକଥାଟି ବେଶ୍ ଜଣାଅଛି ତାଙ୍କୁ । ତାଙ୍କୁ ସାରବା ପାଇଁ ଜିଦ୍‌କରି ବସିଲେ ମୁଁ କେବଳ ଥକିଯିବ ନାହିଁ; ମୁଁ ମରିଯିବ ।

ତା'ବୋଲି ମୁଁ ହାର୍ ମାନିଯିବ ବୋଲି ଭାବୁଛ ? ସତେ ? ଦେଖିପାର ଯେ, ମୁଁ ମନବୋଧ କରି ଶୋଧୁଛି ଏ ଝିଅଟାକୁ, ଏବଂ ତତ୍‌ସହ ସେମାନଙ୍କୁ ଫିଙ୍ଗୁଛି ପାଣି ଭିତରକୁ । ମୋ ଅରମାନ ମେଣ୍ଟିବା ସାଙ୍ଗେ ସାଙ୍ଗେ ତାଙ୍କ ଅରମାନ ବି ମେଣ୍ଟିଯିବ, ଏଭଳି କୌଣସି ଯୁକ୍ତି ନାହିଁ । ଅତଏବ ଭାବୁଥାଉ ଏମିତ :

"ତୋ ମନେ ମନେ ତୁ ଗୋଟାଏ ବଡ଼କଥା କରିବାକୁ ଯାଉଛୁ, ନୁହେଁ ? କିନ୍ତୁ ମନେ ରଖିଥା', ତୋ ପୂର୍ବରୁ ଅନେକେ ଏଇ କାମ କରିଛନ୍ତି । ଆଉ ମରିଛନ୍ତି ତଳି ତଳି

ହୋଇ । ମରିଛି ତାଙ୍କର ଶିକ୍ଷାଦୀକ୍ଷା, ସଭ୍ୟତା, ସଂସ୍କୃତି, ଆପଣା ଦେଶ ଓ ଜାତିକୁ ନେଇ ଗର୍ବ, ଆପଣାର ନିଜସ୍ୱ, ନିଜତ୍ୱ, ଆତ୍ମା···"

ଆସୁ ଆଉ ଗୋଟାଏ ବାଲିଘରଡ଼ା । ସିଲ୍‌ଟ୍‌ରଙ୍ଗର ଘୁମ୍‌ସାଟା ବେଶ୍ ପାଲିସ୍ । ତାକୁ ହାତରେ ଖେଳେଇଲା ପରେ ଗାଲରେ ଘଷିବାକୁ ମନ ହେଉଛି । ତା'ପରେ ହାତ ଉଠେଇ....ହାତଟା ଯେତେ ପଛକୁ ଯାଇ ଚକ୍‌କର କାଟି ପାରିବ ସେତେ ଭଲ···ତା'କୁ ଫିଙ୍ଗିଦିଅ ପାଣି ଭିତରକୁ ଦୂରରୁ ଦୂରକୁ, ଆହୁରି ଦୂରକୁ···ଏବଂ ଶୁଣ ତା'ର ଟୁବ୍, ନିବିଡ଼ ନିଥର ଟୁବ୍, ନିମଜ୍ଜନର ଶେଷକଥା ।

"ଇଏ ହେଉଛି ଶୋଖ ଚମତ୍କାର ମୋହ, ଆଉ କିଛି ନୁହେଁ—ବୁଝିଲ୍ ? ଏବଂ ସେଇ ଲୋକଟା ପାଇଁ କଲା ଚମତ୍କାର ଭିନ୍ନ ସ୍ୱାଦ । ସ୍ୱା'କୁ ଲଭ୍ ବୁଝାଯାଏ ନାହିଁ, ଲଭ୍‌ର ମାନେ ଯଦି ପ୍ରେମ ହୋଇଥାଏ । ପ୍ରେମ ହେଉଛି ପ୍ରତିଶ୍ରୁତି, ସାରା ଜୀବନକୁ ନେଇ । ହଜାରେ କଳିକଜିଆ ରାଗରୁଷା ସତ୍ତ୍ୱେ ଗୋଟାଏ ଅଙ୍ଗୀକାର ଯେ, ଏଇ ମୋ ଜୀବନ, ଗୋଟିଏ ବୋଲି ଜୀବନ, ଏଇ ମୋ ସ୍ତ୍ରୀ, ମୋ ସ୍ୱାମୀ, ଗୋଟିଏ ବୋଲି । ଚିରନ୍ତନ, ଏଇ ସମୁଦ୍ର ଓ ତା' ଢେଉ ପରି ।"

ଆସୁ ପୁଣି ଗୋଟାଏ ବାଲିଘରଡ଼ା । କାଳିଆ-ଧଳା । କେଉଁ ଏକ ଚଢ଼େଇ ଅଣ୍ଡା ପରି । କିନ୍ତୁ ଚେପ୍‌ଟାଳିଆ । ଏବଂ ଅତି ବେଶୀ ପାଲିସ୍ । ତା'ଛଡ଼ା ବିଶ୍ୱାସ ନାହିଁ ଏଇ ବୋଉଳୀମାନଙ୍କୁ । ଯାହାହେଉ ଇଏ ବି ଯିବ ··ଆହୁରି ଦୂରକୁ···ଏବଂ ଶୁଣେଇବ ଟୁବ୍, ଅଲବତ୍ ଶୁଣେଇବ....

"ଭାବୁଛୁ ତୁ ତା'କୁ ନେଇ ଘର କରି ରହିବୁ ସବୁଦିନ ପାଇଁ ? ତୋ ମୁହଁକୁ ଟିକିଏ ଲାଜ ନାହିଁ ? ଶୁଣ ମୋ ଦୀର୍ଘଜୀବନର ଅଭିଜ୍ଞତା, ସେଥିରୁ ଯନ୍ତ୍ରକଥିନ୍···

"ଆମର ଅଞ୍ଚଳର ଜଣେ ବିଶିଷ୍ଟ ନେତା, ତାଙ୍କ ନାଆଁ ଶୁଣିଥିବୁ ବୋଧହୁଏ । ଚୌଧୁରୀ ସନାତନ ଦାସ । ଜର୍ମାନୀରୁ ଜଣେ ସୁନ୍ଦରୀକୁ ଫୁସୁଲେଇ ଆଣିଥିଲେ । ତା'କୁ ବନ୍ଦେ ମାତରମ୍ ଶିଖେଇଥିଲେ । ସୁନ୍ଦରୀ ଗାଇଲା ବନ୍ଦେ ମାତରମ୍ । ବେଶ୍ ଦଶବର୍ଷ ଯାଏଁ । କିନ୍ତୁ ଆଉ ପାରିଲା ନାହିଁ । ସନାତନବାବୁଙ୍କ ରୋଗଶେଯରେ ଗୋଡ଼ ଦେଇ ପଳେଇଲା । ଏବେବାର ଜଣେ ପ୍ରସିଦ୍ଧ ଅର୍କିଟେକ୍ଟ । ଦିଲ୍ଲୀର ଲୋକ । ଯେତେବେଳେ ନୂଆ ରାଜଧାନୀ ଗଢ଼ିବାରେ ତାଙ୍କ ହାତ ଅଛି । ସେ ତାଙ୍କ ଗାର୍ଲ୍‌ଫ୍ରେଣ୍ଡ୍‌କୁ ନେଇ ଆସିଥିଲେ ସୁଇଡେନ୍‌ରୁ । ଦି'ଦି'ଟା ଭେଣ୍ଡା ପୁଅ, ସ୍ୱାମୀ ରିଟାୟାର୍ କରିବା ପାଖ ହୋଇ ଆସିଲାଣି, ଏହି ସମୟରେ ବୁଢ଼ୀର ଚେତା ପଶିଲା ଯେ, ସେ କେଉଁ ଦୂର ବିଦେଶରେ ପଡ଼ିଛି । ଏବଂ ତା' ଜନ୍ମମାଟି ଡାକୁଛି ତାକୁ, ତା' କୋଳରେ ମରିବା ପାଇଁ । ବୁଢ଼ୀ ଗୋଟାଏ ଦିନରେ ଫଇସଲା କରିନେଲା । କହିଲା—ଡାର୍ଲିଙ୍ଗ୍ ତୁମେ ଏଠି ମର, ମୁଁ ସେଠି ମରିବି । ବାଏ !"

'ବାଏ' କହିଲାବେଳେ ମୁଁ ମୋ କଣ୍ଠସ୍ୱରକୁ କଅଁଳ କେଁକେଇଆ କରିଦେଲି, ଶ୍ୱେତାଙ୍ଗିନୀକୁ ଖତେଇ ହେଲା ପରି । ଆଶା କଲି ଟୋକା ବୁଝିବ ଯେ, ମୁଁ ତା'କୁ ବି'

ଖୁଁଟେଇ ହେଉଛି । ତା'ର ଗୋଟା ପ୍ରେମକୁ । କିନ୍ତୁ ମୋତେ ରାଗ ଲାଗିଲା ଯେ, ସେ ମୋ ମୁହଁକୁ ମୋଟେ ଅନେଇବାକୁ ନାହିଁ । ସେମିତି ବସି ରହିଛି ଆଣ୍ଠୁ ଦି'ଟା ଭିତରେ ମୁହଁକୁ ମାଡ଼ି ଦେଇ । ସେ ବି' ବାଲିଗରଡ଼ାଙ୍କ ସାଙ୍ଗରେ ଲାଗିଛି, ହେଲେ ତାଙ୍କ ସାଙ୍ଗରେ ଖେଳିଲା ପରି, କଥାଭାଷା ହେଲା ପରି । ମୂର୍ଖ ! ମୋତେ ଅନେଇଲେ, ମୋ ଭାବଭଙ୍ଗୀକୁ ଲକ୍ଷ୍ୟ କଲେ ସିନା ବୁଝିବ ମୋର ବିଦ୍ରୂପ କେତେ ବିଷାକ୍ତ, କେତେ ବିରାଟ !

ହଠାତ୍ ଗୋଟାଏ ଖିଆଲ୍ ଆସିଲା ମୋ ମନକୁ । ଝିଅଟେ, ଓ ଲୁଚେଇ ଲୁଚେଇ କାନ୍ଦୁ ନାହିଁ ତ ? ସେଇଠୁ ମୁଁ ହଲୁସି ଉଠିଲି । ହେଲେ ମୁଁ ସ୍ଥିର କରି ପାରିଲି ନାହିଁ ଯେ, କଥାଟା ପ୍ରକୃତରେ ସେଇଆ କି ଆଉ କଅଣ । ନା, ଆହୁରି କମ୍ କଥା କହିବାକୁ ପଡ଼ିବ । ଦୃଷ୍ଟାନ୍ତ ଦେଇ ଲାଭ ନାହିଁ । ତା'ଛଡ଼ା ଦୁଃଖର ବିଷୟ ଯେ, କାଳୀ ଝିଅ ଗୋରା ପୁଅଙ୍କୁ ନେଇ କିଛି ମନେ ପଡ଼ୁ ନାହିଁ, ଖାଲି ଇଣ୍ଡିଆନ୍ ପୁଅ ଆଉ ବିଦେଶିନୀ···ରହ, ରହ ମନେ ପଡ଼ୁଛି । ଅଷ୍ଟ୍ରେଲିଆରେ ଦେଖିଥିବା ସେଇ ଯୋଡ଼ି ତରୁଣ ସ୍ୱାମୀ ସ୍ତ୍ରୀ । କାଲି ଝିଅ ଖଣ୍ଡିକ ଗାଢମତ କାଳୀ, ଦକ୍ଷିଣ ଭାରତରୁ ଆସିଛି; ଗୋଟାଏ ଡେଙ୍ଗା ଗୋରା ନିଉଜିଲାଣ୍ଡବାଲାକୁ ବାହା ହୋଇଛି । କିନ୍ତୁ, ଡ୍ୟାମ୍ ଇଟ୍ । ଦି'ଜଣଯାକ ଖାଲି ହସୁଥିଲେ କଥାକଥାକେ । ଉଚ୍ଛୁଳୁଥିଲେ, ଉଚ୍ଛୁରୁଥିଲେ, କଳା ମୁହଁରେ ତା' ହେଡ଼ା ଦାନ୍ତଗୁଡ଼ାକ ଚକ୍ ଚକ୍ କରୁଥିଲା ।

କିଛି କ୍ଷତି ନାହିଁ । ମାରି ଗୋଲି ଦୃଷ୍ଟାନ୍ତକୁ । ଜଳଜଳ ହୋଇ ଦିଶିଯାଉଥିବା ସତ୍ୟକୁ ଚଟ୍ଟେଇବା ପାଇଁ ନଜିର ଲୋଡ଼ା ନାହିଁ । ଭର୍ତ୍ସନା ହିଁ ଯଥେଷ୍ଟ । ଭାବିଲି ଓ ଭାଙ୍ଗିକି ଭର୍ତ୍ସନା ।

"ଦେହର ନାଆଁ ଆସେ ଯାଏ । ଯାହାକୁ ଅଶ୍ଳୀଳ ଭାଷାରେ କୁହାଯାନ୍ତି ଗଲୁ କରୁଛି । ଶ୍ୱେତ ଗୋରାକୁ କଳା କଳାକୁ ଗୋରାର ଆକର୍ଷଣ ଅଭିନବ ବୋଲି ମନେ ହୁଏ, ତେଣୁ ଗଲୁ ପ୍ରବଳ ହୋଇଉଠେ । ଏକ୍ସ୍‌କିଉଜ୍ ମି, ଭାବୁଥିବୁ ଯେ, ମୁଁ ତୋ ଅଜାହିପାବ, ପୁଣି ଜଣାଶୁଣା ବିଦ୍ୱାନଟିଏ ହୋଇ କେମିତି ଏଭଳି ଖରାପ କଥା କହୁଛି । କିନ୍ତୁ ଇଏ ଖରାପ କଥା ନୁହେଁ, ଖାରା କଥା । ଆଉ ସେଥିପାଇଁ ଠିକଣା ଭାଷା ବ୍ୟବହାର । ବୁଝିଲୁ ?

"ନହେଲେ ଆମ ସଭ୍ୟ ଇଂରେଜି ଶବ୍ଦ କହୁଛି ଶୁଣ୍ । ସେକ୍ସ୍ ! ଭୁଚ୍ଛା ଫିଜିକାଲ୍ ସେକ୍ସ୍ ! ସେଇ ହେଉଛି ଗଲୁର ନାଆଁ ଓ ପାଉଁଶ । ତାକୁ ଆଡ଼େଇ ଦେଇ ହେବ ନାହିଁ, ନହେଲେ ଫ୍ରଏଡୀୟ ବିକୃତ ଦେଖାଦେବ । ତା'ବୋଲି କ'ଣ ତାକୁ ପ୍ରେମ ବୋଲି କହିବ ନା ତାକୁ ନେଇ ଘର କରି ହେବ ? ଅସଲ ହେଉଛି କଲ୍‌ଚର୍ । ସଂସ୍କାର । ଭଲମନ୍ଦକୁ ନେଇ ଏକାଭଳି ବିଚାର । ଏକାଭଳି ସଙ୍ଗୀତ, ପୁରାଣ, ବୁଢ଼ୀମା କାହାଣୀ, ଛବି, ଦୃଶ୍ୟ, ଏମିତିକି ଅନ୍ନବ୍ୟଞ୍ଜନକୁ ନେଇ ପରସ୍ପରକୁ ପାଇବାର, ଏକାଠି ହେବାର ଆନନ୍ଦ । ସେଇସବୁକୁ ନେଇ ପ୍ରେମ ବସିଯାଏ ବହଳ ହୋଇ, ବସା ବାନ୍ଧେ,

ଭବଭୂତିଙ୍କ ଭାଷାରେ 'ସ୍ନେହସାରେ ସ୍ଥିତଃ' ହୋଇ କମିଯାଏ ବୁଢ଼ାହେବା ଯାଏଁ ।-
ଖୁରୁଡ଼ି ନଡ଼ିଆ ପରି । ବାହାରକୁ ଶୁଖିଲା, ହେଲେ ଭିତରେ ଜୁଡ଼ୁବୁଡ଼ୁ..."

ଯଣିଦରେ ହସିଲି । ଭାବିଲି, ଅନ୍ତତଃ ଏଥର ସେ ମୋ ଆଡ଼କୁ ଅନେଇବ, ଓ ତା' ବୁଢ଼ା ଅଜାର ରସାଳ ଇମେଜ୍‌କୁ ହେଜିବ । କିନ୍ତୁ ତା'ର ଆଣୁପଣା ମୁହଁ ଟିକିଏ ହେଲେ ଉଠିବାକୁ ନାହିଁ ଉପରକୁ । ସତେକି ତାକୁ ଶାସ୍ତି ଦିଆ ହୋଇଛି ମୋ'ଠାରୁ ବଡ଼ କୋଉ ଗୁରୁଜନ, କୋଉ ଦେବତାଠାରୁ ।

ମୁଁ ଆଉ ବରଦାସ୍ତ କରି ପାରିଲି ନାହିଁ । ମୁଠାଏ ବାଲିଗରଡ଼ାକୁ ଏକାସାଙ୍ଗରେ ଫିଙ୍ଗିଦେଲି ସମୁଦ୍ର ଭିତରକୁ । ସହଜେ ଗୋଟାଏ ଯୋଡ଼ାଏ ପାଣି ଯାଏଁ ଯାଇ ପାରିଲେ ନାହିଁ, ଦାଢ଼ର ପାଣି କାଦୁଅରେ ଆଣ୍ଠେଇ ପଡ଼ିଲେ । ଏବଂ ମୁଁ ଘୋଷଣା କଲି—

"ଦେଖ୍, ମୁଁ ତୋ ନିଜ ଅଜା, ସମାନେ ଅଜା ନୁହେଁ ବାପ, ପୁରୁଣା ବନ୍ଧୁ, ପରି କହୁଛି, ତୋତେ ସାବଧାନ କରି ଦେଉଛି ଯେ, ଇଏ ହେଉଛି ତୁଚ୍ଛା ସେକସ୍, କଦର୍ଯ୍ୟ ଭସ୍କଙ୍କର ସେକସ୍, ଏଇ ଗୋରି-କଳା ହମହମ । ପାପ, ନିରୋଳା ପାପ !"

ଏଥର ବି ତା'ଦେହକୁ ଲାଗିବ ନାହିଁ ? ଟୋକା ଟିକିଏ ହେଲେ କାନ୍ଦିବ ନାହିଁ ?

ମୁଁ ତାକୁ କନ୍ଦେଇବାକୁ ଚାହୁଁଥିଲି, ତା'ର ଅର୍ଥ ମୁଁ ଗୋଟାଏ ସାଡିଷ୍ଟ, ଅନ୍ୟକୁ କଷ୍ଟ ଦେବାକୁ ଭଲପାଏ ବୋଲି ମନେହେବା ସ୍ୱାଭାବିକ । କିନ୍ତୁ ପ୍ରକୃତରେ ତା'ନୁହେଁ । ମୁଁ ଅନୁ, ଅନୁପମାକୁ ଭାରି ଭଲ ପାଏ । କିଓ ସେ ପରି ଆମ ଗୀତାର ଝିଅ ! ଯୋଉ ଗୀତା ମାଆକୁ ଖୁସୀ କରିବ ବୋଲି ଦାମିକା ତାଜମହଲଟାକୁ ଭାଙ୍ଗିଦେଲା ଭୁଲ୍‌ରେ, ଯୋଉ କାନ୍ଦୁରାଟା ଆମେରିକା ଗଲା ପରେ କାନ୍ଦିବ ନାହିଁ ବୋଲି ଠିକ୍ କଲା, ଆଉ ଯୋଉ ହୁଣ୍ଡୀ ବାହାଘର ଆଗରୁ ନାଲି ଗୁଲୁଗୁଲୁ ସାଧବବୋହୂଙ୍କୁ ଗୋଟଉଥିଲା । ମନେ ନାହିଁ ? ଗୀତା ଆଜି ନାହିଁ, କିନ୍ତୁ ତା' ଝିଅଟା ତ ଅଛି । ଅବଶ୍ୟ ସେ ତା' ମାଆପରି ନରମ ନୁହେଁ, ବାପପରି ଟାଣ ଓ ପ୍ରାକ୍‌ଟିକ୍ୟାଲ୍ ବୋଲି ଦେଖେଇ ହୁଏ ନିଜକୁ, କିନ୍ତୁ ସେହେତୁ ତା'ପ୍ରତି ମୋର ଦରଦ କେଉଁ ହିସାବରେ ଊଣା ବୋଲି ଭାବ ନାହିଁ ।

ମୋଟ ଉପରେ ମୁଁ ତା'କୁ ଅତି ବେଶୀ ଭଲପାଏ, ଉଚିତରୁ ଅଧିକ । ପ୍ରକୃତରେ ଏ ବୟସରେ ମୁଁ ପୁଣି ଥରେ ଏଇ ମାର୍କିନ ଦେଶକୁ ଆସି ନ ଥାଆନ୍ତି ଆଉ ଗୋଟାଏ ୟୁନିଭର୍ସିଟିରେ ଭାଷଣ ଦେବା ପାଇଁ, ଯଦି ଅନୁ ସେଠି ଥାଇ ଖର୍ଚ୍ଚ କରୁ ନ ଥାଆନ୍ତା । ହେଲେ ସେଇଥିପାଇଁ ମୁଁ ତାକୁ ହିଁ, ମାନେ ନିଜକୁ ଆଘାତ କରିବାକୁ ଚାହେଁ । ନିଦାରୁଣ ଆଘାତ, ଯେଉଁଥିରେ ଲୁହଲହୁ ଏକାକାର ହୋଇଯିବ । ଆଉ ମୁଁ ମୋର ଏଇ ଜୀବନଟାକୁ, ତା'ର ସନ୍ଦେହକୁ, ଆବ୍‌ସର୍ଡ଼ ସତର ମିଛକୁ (କହିପାରି ମିଛରେ ଲୁଚି ରହିଥିବା କେଉଁ ଆବ୍‌ସର୍ଡ଼୍ ସତକୁ ) ପୁରାପୂରି ପଖାଳି ଦେଇ ପାରିବି । ଯେମିତିକି ସବୁକିଛି ଧୋଇ ପୋଛି ହୋଇଯିବ । ଏବଂ ମୋ ଭିତରଟା ଶୂନ୍ୟ ହୋଇଯିବ । ସେଣିକି ମୋ ଇଚ୍ଛା, ମୁଁ ଯାହାକୁ ବସେଇବି ତା' ଭିତରେ—ମୋର ସ୍ୱନିର୍ବାଚିତ ଦେବତା କି

ଦାନବ, ମିଶ୍ର କି ଶତ୍ରୁ, ପ୍ରିୟା କି ସଖୀ କି କୋଉ ବାରନାରୀ । ହୁଏତ ଦ୍ୱୀପ କାହାକୁ ବସେଇବ ନାହିଁ ସେଠି, ଆଉ ନିଜେ ଡୁବି ଦେବ ସେଇ ଶୂନ୍ୟ ଭିତରେ । ସେଇ ହେବ ମୋର ସିଦ୍ଧି । ଆତ୍ମହତ୍ୟା ।

ଭାଗ୍ୟ ଭଲ, ମୋତେ ଏମିତି ଗୋଟାଏ ସୁବିଧା ମିଳିଗଲା । କାଲିଠୁଁ ଅନୁ ମୋତେ କ'ଣ କହିବ କହିବ ବୋଲି ହେଉଛି । ଭାବିଥିଲି, ସେ କହିବ ତା'ର ରିସର୍ଚ୍ଚ ବିଷୟରେ, ଅମୁକ ପ୍ରଫେସର ତାକୁ କେମିତି ହଇରାଣ କରୁଛି, ଫାଉଣ୍ଡେସନ୍ ତରଫରୁ ଗ୍ରାଣ୍ଟ ମିଳୁନାହିଁ ଯଥା ସମୟରେ, ଅଥବା ସ୍ୱଦେଶରୁ ଚାପ ଆସୁଛି ଶୀଘ୍ର ଫେରିଯିବା ପାଇଁ । ଏମିତି କିଛି । ଯେଉଁଥିରେ ମୁଁ ତାକୁ କିଛିଟା ସାହାଯ୍ୟ କରି ପାରିବି । କିନ୍ତୁ ମୁଁ କଳ୍ପନା କରି ନ ଥିଲି ଯେ, ସେ ଆଜି ସକାଳୁ ସକାଳୁ ଏମିତି ଗୋଟାଏ ସମ୍ବାଦ ଶୁଣେଇବ ମୋତେ । କ'ଣ ନା ସେ କୋଉ ସସେଜ୍‌ଫ୍ୟାକ୍ଟ୍ରିରେ କାମ କରୁଥିବା ଜନ୍ ଫିଲ୍‌ଡମ୍ୟାନ୍‌କୁ ବାହା ହେବାକୁ ଚାହେଁ । ସେ କୁଆଡ଼େ ଅତି ଉତ୍ତମ ଲୋକ, ଭାରତକୁ ଭଲ ପାଏ, ଏବଂ ସ୍ୱାମୀ'କୁ ତା'ଠୁ ବେଶୀ ଭଲ ପାଏ । କହିଲା—"ଭିନୁଅଜା, ତମେ ତାକୁ ଦେଖି ମୁଗ୍ଧ ହୋଇଯିବ । ଇଣ୍ଡିଆକୁ ଫେରିଗଲେ ବାପାଙ୍କୁ ଟିକିଏ ବୁଝେଇକରି କହିବ ସବୁକଥା । କହିବ ନା ?"

ଶୁଣିଲାକ୍ଷଣି ମୁଁ ଅବଶ୍ୟ ଖୁସୀ ହୋଇଯାଇଥିଲି । କ୍ଷଣକ ପାଇଁ । ଯେ ଯାହାହେଉ, ଝିଅଟା ଏଥର ଘରଦ୍ୱାର କରି ସୁଖରେ ରହିବ । ରିସର୍ଚ୍ଚର ଫଳାଫଳ ଯାହା ହେଉନା କାହିଁକି । କିନ୍ତୁ ସେଇଠୁଁ ମୋ ମୁଣ୍ଡକୁ ଭୂତ ଚଢ଼ିଲା । ଏବଂ ମୋ ଭିତରେ ଲୁଚିହୋଇ ରହିଥିବା କ୍ରୋଧ, ଆକ୍ରୋଶ, ଅଭିମାନ (କାହା ଉପରେ ବୋଲି ପଚାରନା ନାହିଁ, ତା' ଜାଣିଥିଲେ ମୋର ଆବେଗ ବୋଧହୁଏ ଏତେ ଅସମ୍ଭାଳ ହୋଇ ନ ଥାଆନ୍ତା) ଦାବୀ କରି ବସିଲା ଯେ, ମୋତେ କିଛି ଗୋଟାଏ କରିବାକୁ ପଡ଼ିବ । ତାକୁ ମୁକୁଳେଇବା ପାଇଁ । ଏଇ ହେଉଛି ତା'ର ସୁଯୋଗ । ଝିଅଟାକୁ କପିକରି ଶୋଧିବାକୁ ପଡ଼ିବ । ଯେମିତିକି··· । ତେବେ ମୁଁ ସେଇ ପ୍ରଚଣ୍ଡ ଆବେଗକୁ କୌଣସିମତେ ସମ୍ଭାଳି ନେଲି । ହୁଏତ ବେଳକାଳ ଅନୁକୂଳ ନ ଥିଲା । ଆଖପାଖରେ ଅନ୍ୟମାନେ ଥିଲେ, ତା' ଆଈ ସମେତ । କିମ୍ବା ହୁଏତ ମୋ ପାଟିରୁ ଠିକଣା ଶବ୍ଦ ବାହାରିଲା ନାହିଁ ହଠାତ୍ । ମୁଁ ଖାଲି ଗମ୍ଭୀରିଆ ଲମ୍ବା "ହୁଁ !" ଟିଏ ଛାଡ଼ିଦେଲି ତା'ର ଆବେଦନକୁ ଚିପି ରଖିଲାପରି । ଜଣେଇଦେଲି ଯେ, କଥାଟା ଏତେ ସହଜ ନୁହେଁ । ଏବଂ ମୋର ବି ଗୋଟାଏ ଦାୟିତ୍ୱ ଅଛି ତା'ର ପରମ ଶୁଭାକାଙ୍କ୍ଷୀ ଅଜା ହିସାବରେ । ତେଣୁ ଭାବିବା ସେ ବିଷୟରେ, ପରେ ମୁଁ ମୋ ଫଇସଲା ଶୁଣେଇବି । ସେଇଠୁଁ ଅନ୍ୟ କଥା ପକେଇଲି । ପଚାରିଲି,—"ଆଜିକା ପ୍ରୋଗ୍ରାମ୍ କଅଣ ? ଆଜି ତ ମୋର ମିଟିଙ୍ଗ୍ ଫିଟିଙ୍ଗ୍ କିଛି ନାହିଁ । ତା'ହେଲେ କ'ଣ ଆମକୁ ନେଇଯିବୁ କୋଉ ପାହାଡ଼ ନା ଲେକ୍ ଦେଖେଇବା ପାଇଁ ?"

“କହିବ ? ଚାଲ ଯିବା ଗୋଟାଏ ସମୁଦ୍ର କୂଳକୁ । ନାମ୍‌ଜାଦା ବିଚ୍ ନୁହେଁ । କିନ୍ତୁ ମୋତେ ଖୁବ୍ ଭଲ ଲାଗେ ।”

“କୋଉଥିପାଇଁ ଭଲ ଲାଗେ ?”, ମୁଁ ଜେରା କଲି ।

“କହିପାରିବ ନାହିଁ । ଢେଉଗୁଡ଼ାକ ସେମିତି କିଛି ବଡ଼ ନୁହେଁ କି ନୀଳ ନୁହେଁ । କିମ୍ବା ପାହାଡ଼ପଥରରେ ପିଟି ହେଉ ନାହିଁ । ଗର୍ଜୁ ନାହିଁ । ଧଳା ଚଢ଼େଇମାନେ ମତ୍ତ ହେଉ ନାହାଁନ୍ତି । ପାଣିରୁ ପଥରକୁ ପଥରରୁ ପାଣିକୁ ଧାଉଁ ନାହାନ୍ତି କାଉଁକାଉଁ ହୋଇ, କ’ଣ ବୋଲି କ’ଣ ଖାଇବେ ବୋଲି । କିନ୍ତୁ ମୋତେ ସେଠି ଖୁବ୍ ଭଲ ଲାଗେ । ଶାନ୍ତ ଲାଗେ । ନାହିଁକିନା ପାଣିରୁ ରାସ୍ତା ଯାଏଁ ସାରା ବିଚ୍‌ଟାଯାକ ଖାଲି ବାଲିଗରଡ଼ା, ଅଜସ୍ର ବାଲିଗରଡ଼ା । ସତେକି ବାଲିଗରଡ଼ା ସମୁଦ୍ରକୁ ଠେଲି ଠେଲି ନେଇ ଯାଉଛି ପଛକୁ, ବାଲିଗରଡ଼ା ହିଁ ସମୁଦ୍ର, ଆଉ ସମୁଦ୍ର ହେଉଛି ତୁଚ୍ଛା ପାଣି···”

ମୁଁ କାବା ହୋଇ ଅନେଇଲି ଅନୁର ମୁହଁକୁ । ଫିଜିକସ୍‌ର ଛାତ୍ରୀ କବି ହେଲା କେବେଠୁଁ ? ଏବଂ ଏତେ କାବ୍ୟକତା ଛାର ବାଲିଗରଡ଼ାକୁ ନେଇ ?

କିନ୍ତୁ ସେତେବେଳେ ମୁଁ ଦେଖି ନ ଥିଲି ଏଇ ସୃଷ୍ଟିଛଡ଼ା ଦୃଶ୍ୟ । ଆମେରିକାର ପଶ୍ଚିମକୁ ଥିବା ପ୍ରଶାନ୍ତ ମହାସାଗରର ଅନ୍ୟତମ ବେଳାଭୂମି । ଅପରେକ ଚକଚକିଆ ଟୁରିଷ୍ଟ ପତ୍ରିକାର ଅନ୍ୟତମ ଆକର୍ଷଣ । ତଥା ‘ପ୍ରକୃଷ୍ଟ’ ସମୁଦ୍ରଖାଦ୍ୟ ପରଷୁଥିବା ହୋଟେଲ୍ ରେସ୍ତୋରାଁରେ ଭରପୂର । କିନ୍ତୁ ପ୍ରକୃତରେ ଇଏ ଆଉ କାହାପରି ନୁହେଁ । ଯା’ର ନିଜକଥା ନିଆରା ।

ହଁ, ଏଠି ବାଲିଗରଡ଼ା ହିଁ ସମୁଦ୍ର । ବାଲିଗରଡ଼ା ହିଁ ରାଜା । କିନ୍ତୁ ଏତେ ଆତ୍ମୀୟ ତା’ର ରାଜଦରବାର ! ମନେହେଲା ସେ କହୁଛି ଯେ, ଭୁଲିଯାଅ ପଛରେ ଯାହାସବୁ ଅଛି, ହୋଟେଲ୍ ରେସ୍ତୋରାଁ ସଭ୍ୟତାର ଚାକଚକ୍ୟ । ଏବଂ ଅନେଇ ଲାଭ ନାହିଁ ଆଗରେ ଥିବା ସେଇ ଅବିରତ ନିରର୍ଥକ ଢେଉମାନଙ୍କୁ । ଖାଲି ବସିରହ ଆମ ପାଖରେ, ଏବଂ ଭାବ ନିଅ ଯେ, ତୁମେ ଆମରି ଭିତରୁ ଜଣେ । ମଜା ଲାଗୁନାହିଁ ? ଶାନ୍ତ ଲାଗୁନାହିଁ ?

ଶାନ୍ତ ନା ଚୁପ୍ । ଏମିତିକା ସେ ଶାନ୍ତ ଯେ, ମନେ ହେଉଛି ନୋଧକ୍ରୋଧର କିଛି ମୂଲ୍ୟ ନାହିଁ ଏଠି । ମଣିଷର କାମ ହେଉଛି ଶେଷକୁ ମିଶିଯିବା, ନିଜକୁ ଗୋଲ୍ ଓ ଚିକ୍କଣ କରି ମିଶେଇଦେବା, ଅଣୁରେ ତଥା ଅଗଣିତରେ । ମୁଖୁହୀନ ସାମାନ୍ୟ ସାଧାରଣରେ, ଯାହାଙ୍କର ଶୋକ ନାହିଁ ଶୋଷ ନାହିଁ, ରାଗ ନାହିଁ ରୋଷ ନାହିଁ···କିଛି ନାହିଁ । ଖାଲି ରହିଥିବାର, କେବଳ ଅସ୍ତିତ୍ୱର ସୁଖ, ଯଦି ତାକୁ ସୁଖ କୁହାଯାଏ । ଯାହା ଜନ୍ମରୁ ବାହାରି ନାହିଁ କି ମୃତ୍ୟୁରେ ସରିଗଲା ପରି ଲାଗୁ ନାହିଁ ।

ଆସୁ ଆସୁ ଅନୁ ଧୁମ୍‌କିନି ବସିପଡ଼ିଲା ତଳେ, ସତେକି ସାଙ୍ଗମାନେ କେତେବେଳଠୁଁ ଅନେଇ ବସିଛନ୍ତି ତା’ ପାଇଁ । ସୁନ୍ଦର ବଢେଇ । ଏବଂ ସେ ତା’ ଶ୍ୟାମଳ ଧାରୁଆ ମୁହଁକୁ, ଦରଖୋଲା ଓଠରୁ ଦିଶିଯାଉଥିବା ଭଙ୍ଗା ଛାମୁଦାନ୍ତ ଓ

ଗୃହିଣୀର ସଦାବସ୍ଥସ୍ୱଭାବକୁ (ଠିକ୍ ତା’ ମାଆପରି) ତୋଳି ଧରିଲି ମୋ ଆଡ଼କୁ । ସତେକି ସେ ମୋଠୁଁ କିଛି ନେଉଛି ବା ଦୂରର କଥା, ତା’ର ବୟସ୍କ ଏଇଥିପାଇଁ ଯେ ମୋର ତଥାପି ସାହସ ହେଉ ନାହିଁ ତା’ସପଦରୁ ଅଳ୍ପ ବହୁତ ମାଗିବା ପାଇଁ । ଅର୍ବାଚୀନ ବକଟେନାଙ୍କୁ ଝିଅ ହାତରୁ କୋଉ ଶାନ୍ତିର ଖିସ୍ଖିସା ପାଇବାପାଇଁ !

ଅସହ୍ୟ ମନେ ହେଲା ସେଇ ଶାନ୍ତିର ଚ୍ୟାଲେଞ୍ଜ୍ । ତତ୍‌କ୍ଷଣାତ୍ ମୁଁ ଗୋଟାଏ ବାଲିଗରଡ଼ାକୁ ଉଠେଇ ଆଣିଲି, ମୁଠି ଚକଟିଲି ତା’ ଦେହକୁ, ଏବଂ ଫିଙ୍ଗିଲି ସମୁଦ୍ରକୁ । ଏଣେ ଆରମ୍ଭ କଲି ମୋ ତିରସ୍କାରର ପର୍ବ । ଆଉ ରକ୍ଷା ନାହିଁ ! ଏକେ ତା’ ଆଉ ଆସିନାହିଁ ଆମ ସାଙ୍ଗରେ । କହିଲା ସେ ହୋଟେଲ୍‌ରେ ରହିବ, ତା’ ମୁଣ୍ଡ ବିଥଉଛି । ଯଦିଓ ତା ପକ୍ଷରେ ଏଇ ନୂଆ ପୃଥିବୀକୁ ଆସି କିଛି ନୂତନ ଦୃଶ୍ୟ ନ ଦେଖିବାକୁ ଚାହିଁବା ନିହାତି ଅସୁନ୍ଦର କଥା । (ଆଉ କିଏ ହୋଇଥିଲେ ହୁଏତ ତା’ ମୁଣ୍ଡବିଥାର ଭିନ୍ନ ଅର୍ଥ କରିଥାଆନ୍ତା,-ଛିଃ ! ) ଦ୍ୱିତୀୟରେ ଏଇ ଅଭିଳ ଶାନ୍ତିର ଭେଳିକି । ପଚାରିଲି ଟୋକୀକୁ—

“ହିଁ, କ’ଣ କହୁଥିଲୁ ଆଜି ସକାଳେ ? ତୁ କଣ ପ୍ରକୃତରେ ବାହା ହେବାକୁ ଚାହୁଁ ସେଠି ? ସେଇ ଗୋରା ସସେଜ୍‌ବାଲାକୁ ? ”

ସେ ମୁଣ୍ଡ ଟୁଙ୍ଗାରିଲା ।

ସେଇ ମୁହୂର୍ତ୍ତିରୁ ଆସି ଏତେବେଳଯାଏଁ । କେଜାଣି କେତେ ବାଲିଗରଡ଼ାକୁ ଉଡ଼େଇସାରିଲିଣି । କିନ୍ତୁ ତାଙ୍କ ପ୍ରତିପତ୍ତି କମିବାକୁ ନାହିଁ । ଆଉ ସେମାନେ ମୋତେ ଚଡ଼େଇ ଖେଳିଛନ୍ତି । କୌତୁକରେ । ମୋ ମୁଣ୍ଡକୁ ଥଣ୍ଡା କରିବା ଛଳରେ । ଏଣେ ମୋ ଭର୍ତ୍ସନା ହାଲିଆ ହୋଇଗଲାଣି । ଧକେଇଲାଣି କହିଲେ ଚଳେ ।

ସେଇଠୁଁ ମୋର ଇଚ୍ଛା ହେଲା ଯେ ଏଥର ମୁଁ ମୋ ଅଜାପଣିଆ କହିବାକୁ ଗଲେ ଆତ୍ମସମ୍ମାନକୁ ଭୁଲିଯାଇ ଟୋକୀର ହାତକୁ ଧରି ପକେଇବି । ଗାଳିମନ୍ଦ ଛାଡ଼ିଦେଇ କାକୁତିମିନତିର ସୀମା ଯାଏଁ ଯିବି । କହିବି, —ମୋ ସୁନା ଝିଅଟା ପରା, ଥରେ ହେଲେ କାନ୍ଦିବୁନି’ ମୋ ପାଇଁ ? ମୁଁ କ’ଣ ଏଡ଼େ ଅଯୋଗ୍ୟ, ନା ଅକର୍ମଣ୍ୟ ?

କହିବି ··ତା’କୁ କହିବି ସବୁକଥା, ମୂଳରୁ ଶେଷଯାଏଁ । ସେଇଦିନଠାରୁ, ଯେଉଁଦିନ ମୋତେ ବୁଝାଗଲା ଯେ ମୁଁ କାନ୍ଦିବାର ଅଯୋଗ୍ୟ । ତେଣୁ ମାନବିକ କରୁଣାର, ସଂବେଦନାର । ଅତଏବ ଭଲପାଇବାର । ବିଶଦବ୍ୟାଖ୍ୟା କରି ବୁଝା ନଗଲେ ମଧ୍ୟ ତା’ର ଅର୍ଥ ସେଇଆ । ଅଥଚ ମୋର ସମବୟସ୍କ ଆଉ ଜଣେ ଅଛି, ଆଉ ଜଣେ ଅଧ୍ୟାପକ, ପ୍ରତିବେଶୀ, ବନ୍ଧୁ କହିଲେ ଚଳେ ;(ସେତେବେଳେ ସେ ପୂରାପୂରି ବନ୍ଧୁ ହୋଇ ନ ଥିଲା), ଯେ କାନ୍ଦିପାରେ । ଉଚିତ ସମୟରେ । ସେହେତୁ ମଣିଷ ହିସାବରେ ସେ ମୋଠୁଁ ଉଚ୍ଚରେ, ମୁଁ ତା’ ତଳେ । ଅତି ସହଜ ଓ ସୁବୋଧ ଏଇ ସତକଥାଟିକି ।

ଏବଂ ଉତ୍ତମ ପୁରୁଷ ହିଁ ଉତ୍ତମ ପ୍ରେମିକ । ସେ ଜଣକୁ ଖୋଲି ଖୋଲି ପ୍ରେମ କରୁ ବା ନ କରୁ, ଏବଂ ପ୍ରେମାସ୍ପଦା ତା’କୁ ପ୍ରଶ୍ରୟ ଦେଉ ବା ନ ଦେଉ ସେକଥା ଭିନ୍ନ ।

ଏହାହିଁ କ'ଣ ନଥିଲା ଅନୁର ଆଉ ଓରଫ୍ ମୋର ପତ୍ନୀ ନଳିନୀ ଦେବୀଙ୍କ ସ୍ୱତଃସ୍ଫୂର୍ତ୍ତି ଟୀପ୍ପଣୀର ଅର୍ଥ ? ଆଜକୁ ପ୍ରାୟ ପଇଁତିରିଶ ବର୍ଷ ତଳେ ? ତା' ବୋଲି ମୁଁ ମୋର ପକ୍ୱକେଶା ଧର୍ମପତ୍ନୀକୁ ଯଥେଷ୍ଟ ଭଲ ପାଏ ନାହିଁ, ଅଥବା ସେ ମୋତେ ଯଥାବଧି ଭଲପାଏ ନାହିଁ, ଏପରି ଭାବିବା ଭୁଲ୍ । ଏକାନ୍ତ ଅନୁଚିତ । କହିଲି ପରା, ଗୁଡ଼ୁଚ୍ଚି ନଡ଼ିଆ, ସ୍ନେହସାରେ ସିକ୍ତ, ଘନୀଭୂତ ରସରେ ଜୁଡୁବୁଡ଼ୁ···ନା, ନା, ମୁଁ ଖୋଲି କହୁଛି ଏଇ କାହିବା କଥାଟାକୁ ନେଇ । ଲୁହ ଗଡ଼େଇବାର ମାହାତ୍ମ୍ୟ ବିଷୟରେ । ଯେମିତିକି ତୁ ଆଉ ଅଡ଼ି ବସିବୁ ନାହିଁ । ଠୋପାଏ ହେଲେ ଲୁହ ଝରେଇବୁ । ବୁଝିଲୁ ?

କହୁଛି ଶୁଣ । ସେଦିନର ସକାଳଟା ଅତି ଚମତ୍କାର ଥିଲା । ଏପରିକି ଆମ କ୍ୟାଂପସ୍‌ର ପ୍ରଫେସର ଭାରତେନ୍ଦୁ ମେହେଡ଼ା, ପ୍ରିୟ ମେହେଡ଼ାଜୀ, ଯଦି ଭୁସ୍‌କିନା ଆମ ଘରକୁ ପଶି ଆସି କାଖରେ ଜାକିଥିବା ଟେନିସ୍ ର୍ୟାକେଟକୁ ସୋଫାରେ ଫିଙ୍ଗି ଦେଇ କେବଳ ମୋତେ 'ହ୍ୟାଲୋ ପ୍ରଫେସର୍' ବୋଲି ନ କହି ସିଧାସଳଖ ଭିତରକୁ ଯାଇ ନଳିନୀକୁ କୁଣ୍ଢେଇ ପକେଇ ଥାଆନ୍ତା, ସେଥିରେ ମୁଁ ଅବଶ୍ୟ ଚକିତ ହୋଇ ଉଠି ଥାଆନ୍ତି, ଏବଂ ପରେ ହୁଏତ ଲୋକଟାର ଏଡ଼େ ସାହସ ବୋଲି ରାଗିଥାନ୍ତି, କିନ୍ତୁ ସେହି ମୁହୂର୍ତ୍ତିରେ ଭାବିଥାଆନ୍ତି ଯେ ଇଏ ତା'ଉଚ୍ଛୁଳା ଆନନ୍ଦର ଗୋଟାଏ ନୂତନ ଦିଗ । ଯାହାର ମହାନ୍ ଉଦ୍ଦେଶ୍ୟ ହେଉଛି ମୋର ସୁଖଭାବକୁ ତେଜିବା, ତା'କୁ ଲମ୍ବାଚଉଡ଼ା ସଲାମ୍‌ଟିଏ ପକେଇ ଜଣାଇବା—ପ୍ରଫେସର୍ ସାହେବ୍, ତୁମେ ସତରେ କେତେ ଭଲ, ଭାବୀଜୀ କେତେ ସୁନ୍ଦର, ଆଉ ଏଇ ସୃଷ୍ଟିଖଣ୍ଡିକ କେତେ ବଢ଼ିଆ ! ଆସ ତିନିଙ୍କି ତିନିହେଁ ଏକାଠି ହୋଇଯିବା···

ସକାଳଟା କେଉଁଥିପାଇଁ ଏତେ ଚମତ୍କାର ଲାଗୁଥିଲା, ତା'ର କାରଣ ବୁଝେଇ ପାରିବି ନାହିଁ । ସେଦିନ ମୋର କ୍ଲାନ୍‌ସ୍-ବିରୋଧୀ ଇକନମିକ୍‌ସ୍‌ର ଗୋଟାଏ ନୂଆ ଫରମୁଲା ସଜାଡ଼ି ହୋଇଗଲା, କୃଷ୍ଣଚୂଡ଼ା ଫୁଲ ହଠାତ୍ ଭରିଗଲା ମୋ ଦାଣ୍ଡ ଅଗଣାର ଗଛ ଦ'ଟାରେ, ମୋଟୁ ମେହେନ୍ତରର ସଦାକ୍ଳିଷ୍ଟ ଦୋଷଦିଆ ମୁହଁର ଚେହେରାରେ ହସ ଫୁଟି ଉଠିଲା, କି କ'ଣ ହୋଇଥିଲା ଭଗବାନ୍ ଜାଣନ୍ତି, ମୋତେ ଏଇ ସଂସାରଟା ପ୍ରକୃତରେ ଭାରି ଭଲ ଲାଗୁଥିଲା । ଗୋଟାଏ ବିଷ୍ଣୁସୁଲଭ ଉଦାରତା । ସତେକି ଯେତେବେଳେ ଏଇସବୁ ମୋର ଭିଆଣ, ମୋର ଖିଆଲ୍, ମୋର ଚଗଲାମି ।

ଏଇ ମନୋଭାବ ନେଇ ମୁଁ ଅପେକ୍ଷା କରିଥିଲି କେତେବେଳେ ମେହେଡ଼ାଜୀ ଆସି ହାଜର୍‌ହେବ ମୋ ଦୁଆରରେ, ସବୁଦିନପରି । ସେ ହେଉଛି ଆମ ୟୁନିଭର୍ସିଟିକୁ ଉଧାରସୂତ୍ରେ ଅଣାହୋଇଥିବା ବୋଟାନି ପ୍ରଫେସର, ଖେଳୁଆଡ଼ ପ୍ରଫେସର୍, ଯେ ସବୁବେଳେ ନିଜକୁ ଉତ୍ତମ ଧରଣର ଦୋସ୍ତ, ମଧ୍ୟମ ଧରଣର ଖେଳୁଆଡ଼, ଏବଂ ନିକୃଷ୍ଟ ଧରଣର ପାଠୁଆବୋଲି ଦାବୀ କରେ, ଏବଂ ପରିହାସ ଛଳରେ ମୁଇଁ ଏକା କ୍ୟାମ୍ପସ୍‌ର ଯଥାର୍ଥ ପ୍ରଫେସର ବୋଲି କୁହେ, କାହିଁକିନା ମୋର ଭାବୁକତା କୁଆଡ଼େ ଆଉ କାହା ପାଖରେ ନାହିଁ । ଅନେଇଥିଲି

ସେ କେତେବେଳେ ଆସିବ, ଆଉ ମୁଁ ତା'କୁ କେତେଟା ଜୋକ୍ ଶୁଣେଇବି, ଯେଉଁଥିରେ ନଳିନୀ ବି' ଜାବା ହୋଇଯିବ (ମୁଁ ହୋ-ହଲ୍ଲା ହୁଏ ନାହିଁ ସିନା, ବହୁତ ବହୁତ ଜୋକ୍ ମନେ ରଖିପାରେ, ଓ ନିଜେ ନ ହସି ଅନ୍ୟକୁ ହସେଇପାରେ ମୋର ମୁଡ୍ ହେଲେ ); ଆଉ ମେହେତାଜୀ ହସିବ ଠୋ-ଠୋ ହୋଇ, ତା'ର ସେଇ ପୃଥ୍ୱୀଟାକୁ ଉଡ଼େଇଦେଲାପରି ହସ, ଅଜବ୍ ହସ, ଯାହାର ସ୍ୱରଭଙ୍ଗୀ ହୁଏ ଠିକ୍ ସରିଲାବେଳକୁ । ସେଥିରେ ନଳିନୀର ମୁହଁ ନିଶ୍ଚୟ ଉଦ୍ଭାସିତ ହୋଇ ଉଠିବ ଓ ସେ ଆହୁରି ସୁନ୍ଦର ଦେଖାଯିବ । ଏବଂ ମେହେତାଜୀ ଅନେଇବ ତା'ଆଡ଼କୁ ତା'ର ମାର୍କାମରା ଝୋକଲ ଚାହାଣୀରେ··· । ମୁଁ ସେ ଦୃଶ୍ୟଟିକୁ ଗାଢ଼ମତ ଉପଭୋଗ କରିବି । ଅବଶ୍ୟ କରିବି ।

କିନ୍ତୁ ସେ ଆସିବାକୁ ନାହିଁ । କଥା କଅଣ ? କେତେବେଳକେ ନଳିନୀ ଫୋନ୍ ପାଖରୁ ଉଠି ଆସି ମୋତେ କହିଲା—

"ତୁମେ ଟିକିଏ ଯାଅ ମେହେତାଜୀଙ୍କ ଘରକୁ ।"

"କାହିଁକି···କଣ··· ?"

"ସେ କାନ୍ଦୁଛନ୍ତି ।"

"ଏଁ?? କ'ଣ ହେଲା କି ?"

"ତାଙ୍କ ପ୍ରଦେଶରୁ, ମାନେ ଆହମଦାବାଦ୍‌ରୁ ଚିଠି ଆସିଛି । ଯାହା ଶୋଭାବେନ୍ କହିଲେ । କହିଲେ ମସୁଦ୍ ବୋଲି ତାଙ୍କର ଜଣେ ସାଙ୍ଗର ଡେଥ୍ ହୋଇଗଲା ବୋଲି ଲେଖା ଅଛି ସେଥିରେ···"

ଅଜାଣତରେ ମୋ ଓଠରେ ହୁଏତ ଗୋଟିଏ କ୍ଷୀଣ ବିଦ୍ରୂପର ରେଖା ଦେଖା ଦେଲା, ସେଥିପାଇଁ ମୁଁ ଦାୟୀ ନୁହେଁ । ଯାହାହେଉ ମୁଁ ଟିକିଏ ଅପ୍ରସ୍ତୁତ ହେଲାପରି କହିଲି, "ଆଚ୍ଛା ! ସେକଥା କହୁନ' ? ମସୁଦ୍ ତା'ର ପିଲାଦିନର ସାଙ୍ଗ, ଇଞ୍ଜିନିଅର୍ । ମୁଁ ତା' ବିଷୟରେ ଅନେକ ଶୁଣିଛି ମେହେତାଜୀ ମୁହଁରୁ । ସେଇଆ କୁହ···"

"ଯେତେ ସାଙ୍ଗ ହେଲେ ବି (ନଳିନୀ ତା'ର ସ୍ଥିର ଚାହାଣୀ ଆପିଲା ମୋ ଉପରେ, ଗୋଟାଏ ନିର୍ଭୟ ନିଃସନ୍ଦିଗ୍ଧ ତଥ୍ୟ ଶୁଣେଇଲା ପରି ) ··· ତୁମେ ପାରିବ ? "

ହୁଏତ ଓଲଟା ପ୍ରଶ୍ନ ପଚାରି ପାରି ଆଆନ୍ତି । ଯେ ମୁଁ କ'ଣ ପାରିବି ନାହିଁବୋଲି କହୁଛ, ମୁଁ ବୁଝିପାରୁ ନାହିଁ । ଯେହେତୁ ଅତି ଅଳୀକ, ଅବାନ୍ତର ତୁମର ପ୍ରଶ୍ନ । କିମ୍ବା ହୁଏତ କହିଆଆନ୍ତି ଯେ ହଁ ମୁଁ ପାରିବି ନାହିଁ । କାହିଁକିନା ମୁଁ ଜଣେ ପ୍ରାପ୍ତବୟସ୍କ ପୁରୁଷ, ନିଜ ପରିବାର ଅର୍ଥାତ୍ ଘନିଷ୍ଠ ଆତ୍ମୀୟ ବେଷ୍ଟନୀର ବାହାରେ ଆଉ କାହାର ମୃତ୍ୟୁରେ ଲୁହ ଗଡ଼େଇବା ମୋର ଅଭ୍ୟାସ ନୁହେଁ । ଏଭଳି ତରଳ ଭାବପ୍ରବଣତା ନାରୀମାନଙ୍କୁ ଶୋଭା ପାଏ, ଯେଉଁମାନେ ପଡ଼ିଶାଘର ଝିଅ ବିଦା ହେଲାବେଳେ ହୋ' ହୋ' ହୋଇ କାନ୍ଦନ୍ତି, ଓ କ୍ଷଣକ ପରେ ଯେତେକ ରସରସିଆ କଥା କୁହନ୍ତି ମାଆଝିଅଙ୍କ ଚରିତ୍ର ନେଇ । ଇତ୍ୟାଦି । କିନ୍ତୁ ମୁଁ କିଛି କହି ପାରିଲି ନାହିଁ । କାରଣ ମୋର ମନେ ହେଲା ଯେ ସେ ମୋତେ

ଦୋଷ ଦେଲାପରି କହୁନାହିଁ । ମୋର ଗୋଟାଏ ସହଜାତ ଅବଗୁଣ କଥା କହୁଛି । ତା'ର ଉତ୍ତର ନାହିଁ ।

ମୁଁ ପାରିବ ନାହିଁ । ପୂର୍ଣ୍ଣଚ୍ଛେଦ । ମାଇଚଆ ହେଉ, ଭାବପ୍ରବଣ ହେଉ କି ଯାହା ହେଉ, ତା' ପାଖରେ ଅଛି ଗୋଟାଏ ଗୁଣ, ବନ୍ଧୁ ବନ୍ଧୁନେ କାନ୍ଦି ପାରିବାର ଗୁଣ, ଯାହା ମୋ ପାଖରେ ନାହିଁ । ସେଇ ମାପକାଠିରେ ମୋତେ ହାର୍ ମାନିବାକୁ ପଡ଼ିବ । ମାନିବାକୁ ପଡ଼ିବ ଯେ ସେ ସକ୍ଷମ, ଓ ମୁଁ ଅକ୍ଷମ··· ।

ଯାହା ନାହିଁ ତା' ନାହିଁ । ବାସ୍ । ମନେ ପଡ଼ିଲା ଗୋଟାଏ ପିଲାଦିନର ଅନୁଭୂତି । ମୁଁ ଯେବେ ପ୍ରଥମେ ମାଟ୍ରିକ୍ ପରୀକ୍ଷାରେ ବୃତ୍ତି ପାଇ ନାଆଁ କମେଇଲି, ବାପମାଆଙ୍କ-ଠାରୁ ଆରମ୍ଭ କରି ଯେତେକ ବନ୍ଧୁବାନ୍ଧବ ମୋତେ ବାହାବା କଲେ । କିନ୍ତୁ ଜଣେ ଭଦ୍ରଲୋକ, ବାପାଙ୍କ ସହକର୍ମୀ, ମୋ ଆଡ଼କୁ ଅନେଇ ରହିଲେ ବିଶ୍ୱାସ ନ କରିପାରିଲା ପରି । ଶେଷକୁ କହିଲେ—ଚେହେରାରୁ ମୋଟେ ଜଣାପଡ଼ୁ ନାହିଁ ! ତା'ପରେ କଥାଟାକୁ କଉତୁକ-ପରିହାସରେ ଉଡ଼େଇ ଦେଲେ, ଓ ମୋତେ ସିଙ୍ଗଡ଼ା ରସଗୋଲା ଖୁଆଇଲେ । କିନ୍ତୁ ମୁଁ ବୁଝିଲି । ଯେ ସେ ମୋ ଚେପ୍ଟା ନାକ ଓ ଢୋଲେଇଲା ଗ୍ରହାଣୀକୁ ନେଇ ଗୋଟାଏ ଖାପ । କଥା ନ କହି ରହିପାରିଲେ ନାହିଁ । ମୁଁ ଯେତେ ବିଦ୍ୟା ହାସଲ କଲେ, ନାଆଁ କମେଇଲେ ଯାଏ ଆସେ ନାହିଁ । ବୁଦ୍ଧିର ଖାପ୍ତି ନାହିଁ ମୋ ଚେହେରାରେ । ହୁଏତ ଜ୍ଞାନର ଗାରିମା ଅଛି, ଆହୁରି ଆସିବ ଓ ମୋର ଅଭିବ୍ୟକ୍ତିକୁ ଆହୁରି ଓଜନିଆ କରିଦେବ । କିନ୍ତୁ ଖାପ୍ତି, ଦ୍ୟୁତି, ଷ୍ଟୁଲିଙ୍ଗ···ଭୁଲି ଯା' ସେ ସବୁକୁ !

ଇଏ ବି' ସେମିତି ଗୋଟାଏ ଅବଗୁଣ । ଅବଗୁଣ ନୁହେଁ, ଅକ୍ଷମତା । ଉତ୍ତମ ।

ମୁଁ ତୋତେ ସତ କହୁଛି ଲୋ ଝିଅ, ମୁଁ ସେଇ ଅକ୍ଷମତାକୁ ଖାଲି ସ୍ୱୀକାର କଲି ତା' ନୁହେଁ, ମୁଁ ତା'କୁ ଗଣ୍ଠି ଧନ କରି ସାଇତି ରଖିଲି ମୋ ଭିତରେ । ସେମିତିକା ଇଏ ମୋର ଅନ୍ୟତମ ବିଶିଷ୍ଟତା । ଭଗବାନ୍ କରନ୍ତୁ ମୋ ଆଖିରେ ଲୁହ ଜକେଇ ନ ଆସୁ କେବେହେଲେ, କୋଉ ଅପର ଲୋକ ପାଇଁ···

(ହଠାତ୍ ସେ ତା' ଆଣ୍ଠୁରୁ ମୁହଁ ଟେକି ଅନେଇଲା ମୋ ଆଡ଼କୁ । ସତେକି ସେ ପ୍ରକୃତରେ ଶୁଣୁଥିଲା ମୋର ସ୍ୱଗତ ମନଉଜୁଡ଼ା କାହାଣୀ, ଲୁହ ବୋହିବା-ନ ବୋହିବାର ତତ୍ତ୍ୱ । ହୁଏତ ସୁଆଙ୍ଗ । ହେଲେ ତା' ସଜାଗ ଗ୍ରହାଣୀ ମୋତେ ଚେତେଇ ଦେଲା ପରି ମନେ ହେଲା । ଯେ ମୁଁ ମୋର ଅକ୍ଷମତାକୁ ଧରି ରଖି ପାରି ନାହିଁ । ଏବେକା କଥା ନୁହେଁ, କେତେ ବର୍ଷ ତଳର ଦାରୁଣ ଦୁଃସମ୍ବାଦ । ଯେତେବେଳେ ଖବର ଆସିଲା ଯେ ଗୀତା, ତା' ମାଆ, କାର୍ ଆକ୍‌ସିଡେଣ୍ଟ୍‌ରେ ପ୍ରାଣ ହରେଇଛି । ଆଉ ମୋ ଆଖିକୁ ଅନ୍ଧାର ଦେଖାଗଲା···

ଶୁଣ୍, ଶୁଣ୍; ମୁଁ ତୋ ପ୍ରଶ୍ନର ଠିକଣା ଉତ୍ତର ଦେବ । ଗୀତା ବେଳକୁ ବି' ମୁଁ କାନ୍ଦି ନ ଥିଲି—ଜାଣିଛୁ ? ହୋଇପାରେ ଯେ ମୋ ବଞ୍ଚିବାର ସବୁଗ ଗୁଳିଗଲା, କେଜାଣି

କେତେଦିନ ଯାଏ ମୋ ପାଟିକୁ ଖାଦ୍ୟ ଗଲା ନାହିଁ, କ୍ଲାସ୍‌ରେ ପାଠ ପଢ଼େଇ ପାରିଲି ନାହିଁ, ଇତ୍ୟାଦି । କିନ୍ତୁ ମୋ ଆଖିରୁ ଲୁହ ବୋହି ନ ଥିଲା । ଯଦିଓ ଗୀତା ମୋର ଅତି ଆପଣାର, ଝିଅ-ନ ଥିବା ବାପର ଝିଅଠୁ ବଳି ସୁନା, ସୁକୁମାରିଆ, ସୁନ୍ଦର···)

ଅବଶ୍ୟ ଭଗବାନ୍ ମୋ ଅକ୍ଷମତାକୁ ବଜାୟ ରଖି ଆସିଥିଲେ ଏତେଦିନ ଯାଏଁ । ସେଇଥିଲାଗି ଗତକାଲି ଯାହା ଘଟିଲା···ରହିଥା' କହୁଛି ସେକଥା, ତରତର ହେଲେ ଚଳିବ ନାହିଁ ।

ସଂକ୍ଷେପରେ କହିବାକୁ ଗଲେ ମେହେରବାଜୀ ଝଡ଼ ପରି ଆସିଥିଲା, ଓ ଚାଲିଗଲା । ଯୋଡ଼ାଏ ବର୍ଷ ପାଇଁ ପଢ଼େଇଲା ଆମ ୟୁନିଭର୍ସିଟିରେ, ଜମେଇଲା ଆମ କ୍ୟାଂପସ୍‌ରେ, ମୋ ସ୍ତ୍ରୀକୁ ପ୍ରେମ କଲା ଓ ମୋତେ ଭଲ ପାଇଲା । ନଳିନୀ ପ୍ରତି ତା'ର ପ୍ରେମ କେତେଦୂର ନିରାମିଷ ଥିଲା ଓ ସେଥି ସମ୍ବନ୍ଧରେ ମୋର ଈର୍ଷା ଭାବ କେତେ ଉପରକୁ ଉଠିଥିଲା ତା'ର ଆଲୋଚନା କରି ଲାଭ ନାହିଁ । ସେ ହିସାବରେ ମୁଁ ମଧ୍ୟ ସ୍ୱେଚ୍ଛା ପ୍ରେମ କରିଛି ଓ ତା'କୁ ନିହାତି ନିରାମିଷ ବୋଲି କହି ହେବ ନାହିଁ । ନଳିନୀ ଜାଣିଛି ସେକଥା । କିନ୍ତୁ ସନ୍ଦେହ ନାହିଁ ଯେ ସେଇ ଦୁଇ ବର୍ଷର ଅନୁଭବ କିଛି ଗମ୍ଭୀରିଆ ଆଞ୍ଚ ଲଗେଇ ପାରି ନ ଥିଲା ଆମ ଦିହିଙ୍କ ପ୍ରେମରେ, ଆମ ଦାମ୍ପତ୍ୟ ଜୀବନର ସୁଖରେ ।

ଯାହା ବା ଟିକିଏ ଥାଆନ୍ତା, ସୂତ୍ରର ସାମାନ୍ୟତମ ପୋଡ଼ାଜଳା, ତା'ର ଅବକାଶ ଚାଲିଗଲା, ଯେତେବେଳେ ମୁଁ ତା'କୁ ତା' ପରିବାର ଓ ଗଣ୍ଠିଲି ପଞ୍ଜ ସହ ଟ୍ରେନ୍‌ରେ ବସେଇ ଦେଇ ଆସିଲି ଶେଷ ଥର ପାଇଁ । ଏବଂ ମୁଁ ଦେଖିଲି ତା'ର ସେଇ ଶୁଖିଲା ଅରକ୍ଷିତିଆ ମୁହଁ । ବିଦାୟୀ କୋଲାହୋଳ, କରମର୍ଦ୍ଦନ ଇତ୍ୟାଦିର ଅନ୍ତରାଳରେ ଏବଂ ଠିକ୍ ଗାଡ଼ି ଛାଡ଼ିଲାବେଳକୁ ତା'ର ବିଧ୍ୱସ୍ତ ମୁହଁର ଚେହେରା । ଯାହାର ଅର୍ଥ କେବଳ ଗୋଟିଏ : ମୁଁ ପାଇଲି ନାହିଁ କି ଆଉ ପାଇବି ନାହିଁ । ମୁଁ ରିକ୍ତ !

ସେଇଦିନଠୁଁ ତା' ସାଙ୍ଗରେ ଆଉ ଦେଖା ହୋଇନାହିଁ ମୋର । କିନ୍ତୁ ତା'ର ସେଇ ଅବିସ୍ମରଣୀୟ ରିକ୍ତତାର ଛବି, ସତେକି ସେଇ ହେଉଛି ମଣିଷଦଶାର ଶେଷ କଥା, ମୋତେ ବାନ୍ଧି ରଖିଛି । ମୋ'ର ମନେ ହେଲା ସେ କହୁଛି—ପ୍ରଫେସର ସାହେବ, ଭାବୀ ସିନା ମୋଠୁଁ ଦୂରେଇ ଗଲେ ସବୁଦିନ ପାଇଁ, ତାଙ୍କର ଅନୁମାନ, ଆଶ୍ୱାସ ଟିକିକ ବି'ଣ ପାଇବି ନାହିଁ ତୁମ ଜରିଆରେ ?

ସମସ୍ତଙ୍କ ପରି ମୋତେ ବି' ଅନୁରୋଧ କରିଥିଲା ଚିଠି ଦେବା ପାଇଁ । କିନ୍ତୁ ମୋ ଜାଣିବାରେ କେବଳ ମୁଁହିଁ ତା'ର ଅନୁରୋଧ ରକ୍ଷା କରିଛି, ଅକ୍ଷରେ ଅକ୍ଷରେ ପାଳନ କରି ଆସିଛି । ଆମେ ପ୍ରତି ମାସେ ଦି'ମାସରେ ଖଣ୍ଡେ ଲେଖାଏଁ ଚିଠି ଦେଇ ଆସିଛୁ ପରସ୍ପରକୁ ।

ମୁହିଁ ତା'କୁ ବଞ୍ଚେଇ ରଖି ଆସିଛି ଏତେଦିନ ହେଲା । ଭବସାଗରରେ ଭସେଇ ଭସେଇ ଆଣିଛି, ବୁଡ଼ିବାକୁ ଦେଇ ନାହିଁ । ମୁଁ ତା'ର ବନ୍ଧୁ ।

ମୋତେ ବିଶ୍ୱାସ କର ଲେ ଅନୁ ଝିଅ, ମୁଁ ତା'ଙ୍କୁ ମୋର ବନ୍ଧୁ, ଅନ୍ତରଙ୍ଗ ବନ୍ଧୁ ବୋଲି ମଣିଛି ସେଇ ଦିନଠାରୁ ।

ଆମ ଚିଠିରେ ବନ୍ଧୁପଣିଆର ଆବେଗ, କ୍ରମଶଃ ବୁଢ଼ା ହୋଇ ଆସିବାର ହା-ହୁତାଶ, ଅବା ସ୍ମୃତିଚିତ୍ରଣର ମଧୁରିଆ ବ୍ୟଥା ନ ଥିଲା । ଏପରିକି ସେ ନଳିନୀ ବିଷୟରେ ବିଶେଷ କିଛି ପଚାରୁ ନ ଥିଲା କି ମୁଁ ହଠାତ୍ ପଡ଼ି ତା' ଭଲମନ୍ଦର ବର୍ଣ୍ଣନା କରୁ ନ ଥିଲି । ଖାଲି କିଏ କେମିତି ସମସ୍ତ ବିତାଉଛି, ମୁଁ ସ୍ୱା' ଭିତରେ କେମିତି ଶ୍ରମ-ଅର୍ଥନୀତିର ଅନ୍ଧାର ଗହ୍ୱରକୁ ପଶିଲିଣି ଏବଂ ମାର୍କସ୍ ଓ ମହାତ୍ମାଗାନ୍ଧୀ ଏକା ଧାତୁରେ ଗଢ଼ା ବୋଲି ନୂତନତମ ପ୍ରମାଣ ଯୋଗାଡ଼ ସାରିଲିଣି, ଅପରପକ୍ଷେ ସେ କେମିତି ଶହଟାସ୍ମାର କଲି ପରେ ପାହାଡ଼ଚଢ଼ାରେ ମାତିଲିଣି, ଗୋଟାଏ ବିବିଧ ନାଲିମୁହାଁ ହଳଦିଆ ଫୁଲ ଆବିଷ୍କାର କରିଛି, 'ସ୍ନେଡି' ନାମକ ଅଦୃଶ୍ୟମାନ ଜନ୍ତୁର ଅକାଟ୍ୟ ପ୍ରମାଣ ପାଇଛି, ଏଇସବୁ କଥା । ଅବଶ୍ୟ ଠିକେ ଠିକେ ପରିବାର ବିଷୟରେ ପଦେ ଅଧେ— କିଏ କେଉଁଠି ବାହା ହେଲା, କିଏ କେଉଁ ଧନ୍ଦାରେ ପଶିଛି, ଇତ୍ୟାଦି । କିନ୍ତୁ ପ୍ରତି ଚିଠିର ପ୍ରତିଟି ଧାଡ଼ି ଓ ଶବ୍ଦର ନେପଥ୍ୟରେ ଥିଲା ଏକ ଉଗ୍ର, ହେଲେ ବିକଳ ସଚେତନତା, ଯାହାକୁ ମୁଠେଇ ଧରିବାକୁ ହେବ ବଞ୍ଚିଥିବା ଯାଏଁ । କଅଣ ସେଇ ସଚେତନତା ? ପ୍ରେମ ? ନା ଭିନ୍ନରଙ୍ଗର ଭଲ ପାଇବା ? ଏବଂ କାହା ପାଇଁ କେଉଁଠି ?

ତା'ଛଡ଼ା ଖାଲି ମୁଁହିଁ କଣ ତା'ଙ୍କୁ ଭସେଇ ରଖିଥିଲି ବନ୍ଧୁପଣିଆର ଭେଳାରେ ? ସେ ବି' କଣ କିଛି ମୂଲ୍ୟବାନ ବସ୍ତୁ ଦେଇ ନ ଥିଲା ମୋତେ ? ଯଥା କେଉଁ ଏକ ଉଷ୍ମ ଆତ୍ମ-ପ୍ରତ୍ୟୟ, ଯେ ମୁଁ ଭଲ, କହିବାକୁ ଗଲେ ଅତି-ଭଲ ? ଯେହେତୁ ପୃଥିବୀରେ ବୋଧହୁଏ ମୋ ପରି ଆଉ କେହି ନ ଥିବ ଯେ ତା' ପତ୍ନୀର ପ୍ରଣୟୀ (ହେଲା ଏବେ ପ୍ରାକ୍ତନ ଅଥବା ପ୍ଲାଟୋନିକ୍ ପ୍ରଣୟୀ)କୁ ଏମିତି ଭଲ ପାଇ ପାରିବ······

ଝିଅ ଲେ, ଏଇ ଗତକାଲି ତା'ର ସ୍ୱୀକୃତି ମିଳିଗଲା ମୋତେ । ଏଇ ବିଦେଶ ଭୂଇଁରେ ।

ଜାଣିଛ କ'ଣ ହେଲା ? କାଲି ସକାଳେ ହୋଟେଲ୍‌ରେ ଗୋଟାଏ ଚିଠି ଆସି ପହଞ୍ଚିଲା । ଭାରତରୁ ରି-ଡାଇରେକ୍ଟ ହୋଇ ଆସିଛି । ମେହେତାଜୀର ପୁଅ ଲେଖିଛି ଯେ ବାପା ଗତ ମଙ୍ଗଳବାର ଦିନ ଚାଲିଗଲେ । ଅଲ୍ଟ କେଇଟା ଦିନର ଜଣ୍ଡିସ୍ ରୋଗ, ସେଇଠୁ ପେଟଫୁଲା, ସେଇଠୁ ଶେଷ !

ମୁଁ ଚିଠିଟିକୁ ପଢ଼ି ଶୁଣେଇଲି ନଳିନୀକୁ । ଏବଂ ପଢୁ ପଢୁ ମୋ ଆଖିରେ ଲୁହ ଭରିଗଲା । ଖାଲି ଭରିଗଲା ନୁହେଁ, ଥୋପା ଥୋପା ହୋଇ ଝରିଲା ଚିଠି ଉପରେ, ଚିଠି ବାଟ ଦେଇ ମୋ ଜାମା ଉପରେ, ସକାଳ ଖବରକାଗଜ ଉପରେ । ନଳିନୀ ଚାହିଁ ରହିଥିଲା ମୋତେ, ମାନେ ନିଶ୍ଚୟ ଚାହିଁ ରହିଥିବ । ମୋର ସାହସ ନ ଥିଲା ତା' ମୁହଁର ଭାବ ଲକ୍ଷ୍ୟ କରିବା ପାଇଁ ।

ମୁଁ ଖାଲି ମୋ ନିଜର ଦୁଃଖ ଓ ତା'ର ଏଇ ଅଭୂତପୂର୍ବ ପରିପ୍ରକାଶରେ ଅଭିଭୂତ ହୋଇ ପଡ଼ିଥିଲି । ଆରେ, ତା'ହେଲେ ମୁଁ ବି କାନ୍ଦିଲି !

ମୁଁ ବି କାନ୍ଦିଲି ମୋ ବନ୍ଧୁର ମୃତ୍ୟୁରେ । ଦେଖ, କେମିତି ଆପେ ଆପେ ମୋ ଆଖିକୁ ଲୁହ ଆସିଗଲା । ଆଉ ଧରି ରଖି ହେଲା ନାହିଁ ମୋର ଉଦ୍ଗତ ଅକ୍ଷମତାକୁ । ନଳିନୀ ଦେଖିଛି, ଓ ତାର ନିଶ୍ଚୟ ମନେ ପଡ଼ୁଥିବ ସେଇ ପଇଁତିରିଶ ବର୍ଷ ତଳର କଥା ।

ମୁଁ ହାତ ବଢ଼େଇଲି ନଳିନୀକୁ ଛୁଇଁବା ପାଇଁ, ଓ ସେ ହାତ ରଖିଲା ମୋ ହାତରେ ।

ଏବଂ କେଜାଣି କାହିଁକି ରାତିରେ ମୁଁ ବିଶେଷ ଭାବରେ ପ୍ରେମ କଲି ତା'କୁ । ମୋର ବର୍ଷୀୟାନ୍ ଶୀତଳ ହୋଇ ଆସୁଥିବା ଦେହ ଅପ୍ରତ୍ୟାଶିତ ଭାବରେ ଜାଗି ଉଠିଲା, ଓ ମୁଁ ମୋର ପକ୍ୱକେଶା ପତ୍ନୀକୁ ଦେହରେ ଦେହରେ, ଶିରାରେ ଶିରାରେ, ଅନୁଭବ କଲି । ଉପଭୋଗ କଲି । ଅନେକ ଦିନର ଅପୂରଣକୁ ମେଣ୍ଟାଇ ଦେଲା ପରି···

ଗ୍ଲାନି ଆସିଲା ପରେ । ରାତି କଟି ଯାଇ ଆଉ ଗୋଟିଏ ଦିନ ଆସିଲା ବେଳକୁ । ମନେ ହେଲା ମୁଁ ଧରା ପଡ଼ି ଯାଇଛି । ମେଣ୍ଢା ଚମଡ଼ାପିନ୍ଧା ଗଧିଆ । ପ୍ରତିବାଦ କରି ଲାଭ ନାହିଁ ଯେ ମୋ ଜାଣିବାରେ ମୁଁ ମେଣ୍ଢାଟିଏ, ଆଉ ଇଏ ମୋ ଦେହଲଗା ଚମ ।

ସତେକି ମୋ ଲୁହ ମିଛ ଥିଲା । ଅଥବା ମୋ ପ୍ରେମ ।

ଅବା ଶୋକ କି ପ୍ରେମଠାରୁ ବଳି ଆଉ ଗୋଟାଏ ଅଦ୍ଭୁତ ଭାବ ଜରି ଯାଇଥିଲା ମୋ ମନରେ, ଯାହାର ଶଙ୍ଖ ଶୁଭୁଥିଲା ଆମ ପ୍ରଚଣ୍ଡ ମିଳନର ସେକ୍ସରେ । ବୋଧହୁଏ କେଉଁ ଏକ ଭାରିପଣରୁ, ଭଲପଣିଆର ଦାୟିତ୍ୱରୁ, ଖଲାସ ହୋଇ ଯିବାର ହେଣ୍ଡିମରା ଆନନ୍ଦ !

ଠିକ୍ ଏତିକି ବେଳେ ତୁ ଆସି କହିଲୁ କ'ଣ ନା ତୁ ପ୍ରେମ କରୁଛୁ । ଗୋଟାଏ ଭିନ୍ନ, ଭିନ୍ନଦେଶୀୟ ପ୍ରେମ । ମାନେ ତୋ ବୁଢ଼ା ଅଜା ଆଗରେ ବଢ଼େଇ କରୁଛୁ ତୋ ତାରୁଣ୍ୟର, ସରଳସୁନ୍ଦର ଆବେଗର । ତେଣୁ ତୋତେ କଷ୍ଟ ଦେବି ନାହିଁ ତ ଆଉ କଣଟା କରିବି ? ଆଉ କେମିତି ମୋ ଅସନା (ଏବଂ ଅକାରଣ) ଗ୍ଲାନିକୁ ବାତିଲ କରି ଦେଇ ପାରିବି ?

ଚଳନ୍ତି ଢେଉଗୁଡ଼ାକ ସରିବାକୁ ନାହିଁ । ହ୍ୟାପ ଏଇ ଅଚଳନ୍ତି ବାଲିଗରଡ଼ା ବି ଭସିବ ନାହିଁ, ଟିକିଏ ହେଲେ ସରିବ ନାହିଁ । ଦେଖିଲି ଏଇ ଅଛୁଣ୍ଡା ପଣକୁ ଚହଲେଇବା ପାଇଁ କୋଉ ମାଲିକର କୁକୁର ଦଉଡ଼ୁଛି ବାଲିଗରଡ଼ା ଉପରେ ଓ ସମୁଦ୍ରକୁ ଫିଙ୍ଗି ଦିଆ ଯାଇଥିବା କାଠଗଡ଼ଟାଏ ଉଦ୍ଧାର କରି ଆଣୁଛି । ବାରମ୍ବାର ।

କିନ୍ତୁ ବାଲିଗରଡ଼ାକୁ କେହି ଉଦ୍ଧାର କରି ଆଣି ପାରିବ ନାହିଁ । ସେଇ ହେଉଛି ମଜା ! ଥରେ ଡୁବିଲା, ତ ଡୁବିଲା । ଅତଏବ ମୁଁ ତାଙ୍କୁ ଫିଙ୍ଗିବି ଗୋଟି ଗୋଟି କରି । ଯଦିଓ ତଥାପି ସେମାନେ ପଡ଼ି ରହିବେ କୋଟି କୋଟି ହୋଇ । ପଡ଼ି !

ଜଣେ ମହାମନୀଷୀ କହିଥିଲେ ବନ୍ଧୁମନଙ୍କୁ, 'ମୁଁ ଜ୍ଞାନୀ ନୁହେଁ, ମାତ୍ର ଉପଲଖଣ୍ଡ କେତୋଟିକୁ ସଂଗ୍ରହ କରୁଛି, ଆଉ ଜ୍ଞାନର ମହାସମୁଦ୍ର ପଡ଼ି ରହିଛି ମୋ ଆଗରେ ।' ସାବଲ ତାଙ୍କୁ କହିବ ପାଖରେ ପାଇଲେ, ସେ ଆଜ୍ଞା, ତା'କୁ ବି ଫିଙ୍ଗି ଦିଅନ୍ତୁ ଦୟା କରି । କାରଣ ଦେଖିବ କେଉଁ ଗୋଟେହେଲେ ଅନୁଭବ କି ତା'ର ନିର୍ଦ୍ଦିଷ୍ଟ ଜ୍ଞାନ ନୁହେଁ, ତାର କାଣିଚାଏ ନୁହେଁ । ହ୍ୟାପ ପ୍ରତ୍ୟେକେ ମିଛୁଆ...

ମୁଁ ପୁଣି ଗୋଟାକୁ ଉଠେଇ ଫିଙ୍ଗିବାକୁ ଯାଉଛି, ଏଇ ସମୟରେ ଅନୁ ହଠାତ୍ ପଛରୁ ଡାକିଲା ମୋତେ । ସ୍ୱର ଉଶ୍ୱେଇ, କୁରୁଳ ଖାଇଲା ପରି ।

"ଅଜା, ଦେଖ ଦେଖ । ଦେଖୁଛ ଏଇ ପଥରଟିକୁ ? ଚକ୍‌କଣ କଳା । ନିଖୁଣ ଶାଳଗ୍ରାମ..."

ମୁଁ ତା' ପାଖକୁ ଗଲି । ମୁର୍‌କିହସା ଦେଇ ପଥରଟିକୁ ନେଇ ଆସିଲି ମୋ ହାତକୁ ।....ହଉ, ବୁଝିଲି ତୁ କ'ଣ କହିବାକୁ ଚାହୁଁଛୁ । ସେ ଯାହା ହେଉ ପଛେ ତୁ ସେଠି ବାହା ହେବୁ । ଏବଂ ଯାହା ହେଉ ପଛେ ପଥରକୁ ଦାଁ କରି ହେବ, ମିଛକୁ ସତ କରି ହେବ । ସେଇ ହେଉଛି ଆମ ବାହାଦୁରୀ ।

ହଉ ଲୋ ସୁନାଝିଅ, ତୁ ଦେଉଛୁ ଯେତେବେଳେ ମୁଁ ତାକୁ ଅବଶ୍ୟ ନେବି । ହୁଏତ ପୂଜା କରିବି । କିନ୍ତୁ ସତ କହ, ତୁ କ'ଣ ଟିକିଏ ହେଲେ କାନ୍ଦି ନାହୁଁ ମୋ ପାଇଁ, ତା'ର ଚକ୍‌କଣ କଳା ଉପରେ ? ତା'ର ଦାଁ ପଣିଆ ଉପରେ ?

ଆଲୋ, ତୁ ମୋତେ ଠକି ପାରିବୁ ନାହିଁ । ଦେଖେ, କେତେ ଓଦା ଲାଗୁଛି ତା' ଦେହ...

□□□

# ଦୁଃସ୍ୱପ୍ନ, ଦିବାସ୍ୱପ୍ନ

ଯେଉଁମାନେ ସ୍ୱପ୍ନ ଦେଖୁଥିଲେ, ତାଙ୍କ ସ୍ୱପ୍ନ ବିଷୟରେ ବିଶେଷ କିଛି କହି ହେବ ନାହିଁ । ଅବଶ୍ୟ ତାଙ୍କ ନିଦ ତାଙ୍କର, ତା' ଭିତରକୁ ବାହାର ପ୍ରବେଶ ନାହିଁ । କିନ୍ତୁ ଖାଲି ସେଥିପାଇଁ ନୁହେଁ । ନିଦରୁ ଉଠି ଦୃଷ୍ଟ ଅନୁଭବର କାହାଣୀକୁ ମୋଟାମୋଟି ବର୍ଣ୍ଣନା କରିବାର କ୍ଷମତା, ଯେପରିକି ବାହାର ଲୋକେ ତାକୁ ଯନ୍ତ୍ରକିଞ୍ଚିତ୍ ବୁଝି ପାରିବେ, ସେତିକି ତାଙ୍କର ନ ଥିଲା । କାରଣ ଦୁହିଁଙ୍କ ଭିତରୁ ଜଣେ ଅତି ବୁଢ଼ା । ବୟସ ପଞ୍ଚାନବେ । ଆଉ ଜଣକ ତାଙ୍କ ଅଣନାତୁଣୀ, ତା' ନାଆଁ ରାଣୀ । ବୟସ ଛଅ ପାଖାପାଖି ।

ତେଣୁ ଯେଉଁ ଦି'ଜଣ ନିଦରେ ଶୋଇବା ବଦଳରେ ଜଳଜଳ ହୋଇ ଅନେଇ ରହିଥିଲେ, ବୁଢ଼ାକୁ, ରାଣୀକୁ, ତଥା ପରସ୍ପରକୁ, ସେମାନଙ୍କର କାହିଁକି ଏ ଦୁରବସ୍ଥା, ସେ ବିଷୟରେ ପ୍ରଥମେ କିଛି କହିଲେ ଭଲ ହେବ ପରା । ତାଙ୍କର ଭାବନା ଯେପରିଭାବରେ କଟାକଟି ହେଉଥିଲା, ତା'ର ନମୁନା ଏହି ପ୍ରକାର :

—ମିନା ଭୁଲ ବୁଝିଛି । ରାଣୀ ଜେଜେଙ୍କୁ ଭୂତ ବୋଲି କହିଲା ସିନା, ଠିକ୍ ସେମିତିଭାବରେ କହି ନଥିଲା । ହସି ହସି କହିଥିଲା । ତେଣୁ ମୁଁ ମୋଟେ ବିଶ୍ୱାସ କରିବି ନାହିଁ ଯେ, ସେଇ ହେଉଛନ୍ତି ତା' ଦୁଃସ୍ୱପ୍ନର କାରଣ ।

—ଜଗନ୍ନାଥ ମାନିବାକୁ ଚାହେଁ ନାହିଁ । ସେ ତା'ର ଘରକୁ ତା'ର କୂଅକୁ ଫେରି ଆସିଛି କି ନା ସେଇ ଲାଗି । ଏଠିକାର ସବୁ ବେଙ୍ଗ ସୁନ୍ଦର, ବିଶେଷତଃ ଅମର ହୋଇ ବସିଥିବା ବୁଢ଼ାହାଡ଼ା ପହିଲି ନମ୍ବର ବେଙ୍ଗ ! ମିନା ହସିଲା ତା' ରଙ୍ଗବୋଳା ଓଠକୁ ବଙ୍କେଇକରି ।

—ମିନା ଜାଣିଶୁଣି ତା' ଓଠକୁ ବଙ୍କଉଛି ସେମିତି । ଯେମିତିକି ମୁଁ ବୁଝିବି ଯେ, ତା' ଅନ୍ତରର ବିଦ୍ରୂପ ବହୁଳିଉଠୁଛି ମୋର ଏଇ ଘର, ସହର, ଜେଜେ ଓଗେରଙ୍କ ପ୍ରତି । ଯଦିଓ ସେ ଆମ ମୁହଁ ଉପରେ କଟୁକ୍ତି କରିବାକୁ ଚାହେଁ ନାହିଁ ଭଦ୍ରତା ଖାତିର୍‌ରେ । କିନ୍ତୁ ସେ ଭୁଲି ଯାଉଛି ଯେ, ତା'ର ଏଇ ଧରଣର ଢଙ୍ଗ ଦେଖିଲେ ମୋର ମନେହୁଏ ତା'ର ପିଲାଳିଆମି ମୋଟେ ଯାଇ ନାହିଁ । ଯୁକ୍ତି କରିବାର ବଳ ନାହିଁ କି ରଗେଇବାର ସାହସ ନାହିଁ । ସେଇଥିପାଇଁ ତା'ର ବ୍ୟଞ୍ଜନାକୁ ନଚେଇ ଲମ୍ବେଇ ଦେଉଛି ମୋ ଆଖିରେ ପଡ଼ିବ ବୋଲି । ଅସଲ ଫୁଲେଇଚିଏ । କିନ୍ତୁ ମୁଁ ଯଦି ତା'କୁ ବେଖାତିର୍ କରି ତା' ଓଠରେ ଚୁମ୍ବନଟାଏ କଷିଦିଏ, ତା'ହେଲେ ? ତା' ହେଲେ ଟୋକୀର ମଜା ବାହାରିଯିବ । ନା, ମୁଁ ଆସିଛି ଏଠି ରହିବି ବୋଲି । ଦାସ୍ । ରାଣୀ ତା' ସ୍ୱପ୍ନରେ ଚିକିଏ

ଚର୍‌ଚରେଇ ଉଠିଲା, ତା'ର ଅର୍ଥ ନୁହେଁ ଯେ, ସେ କେଉଁକଙ୍କୁ ଦେଖି ଡରୁଛି । ଏବଂ ସେହେତୁ ମୁଁ ଘରକୁ ଆସୁ ନ ଆସୁଣୁ ଦ୍ୱାର୍ ମାଡ଼ିବା ପୁଣି ପଳେଇଯିବି ।

—ଜଗନ୍ନାଥ କେବେହେଲେ ସ୍ପଷ୍ଟଭାବରେ କହି ନାହିଁ ଯେ, ସେ ଏଠିକି ଆସିଛି ସବୁଦିନ ପାଇଁ । କିନ୍ତୁ ମୁଁ ଜାଣିଛି ତା'ର ମତଲବ ସେଇଆ । ଅବଶ୍ୟ କେଇଟା ବର୍ଷ ପରେ ସେ ନିଜେ ଛଟପଟ ହେବ ପଳେଇ ଯିବା ପାଇଁ । ଆମ ସେଠିକାର ଖୋଲା ପବନ ଖୋଲା ପଡ଼ିଆକୁ ମନେ ପକେଇବ । କାହିଁକିନା, ହୁଏତ ଏଇ ସହର ମଫସଲରେ ବେଶୀ ପଡ଼ିଆ, ବେଶୀ ପବନ, କିନ୍ତୁ ତାକୁ କୋଉ ବୁଦ୍ଧିରେ ଖୋଲା ବୋଲି କହିବ ? ଯେଉଁଠି ଏତେ ଗନ୍ଧ, ଏତେ ଭଲ ପଡ଼ୁ ଗନ୍ଧର ଗଜବୁ, ସେଠି କେଉଁ ଅନୁଭବଟି ମୁକ୍ତ ? ନିର୍ଭେଜା କି ନିର୍ମଳ ? ଦୂର୍, ଜଗନ୍ନାଥ ପାରିବ ନାହିଁ । ତା'ର ଆଖି ଫିଟିବ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ତା' ଆଗରୁ ? ଅଯଥାରେ ଗୁଡ଼ାଏ ଦିନ କାହିଁକି କଷ୍ଟ ଦେବ ନିଜକୁ, ମୋତେ; ଆଉ ରାଣୀକୁ ? ଏଇଠି ମୀନା ସିଧାସଳଖ ଅନେଇଲା ଜଗନ୍ନାଥର ମୁହଁକୁ, ଯେତେକ ସେ କହିବାକୁ ଚାହେଁ ଯେ, ତୁମେ କଦାପି ଏତେ ନିର୍ବୋଧ ନୁହଁ । ତୁମର ବୁଝିବା ଉଚିତ । ଯଥାଶୀଘ୍ର । ବିଶ୍ୱାସ କରିବା ଉଚିତ ଯେ, ରାଣୀ କେଉଁକଙ୍କୁ ଦେଖି ଡରୁଛି, ସେଇଥିଲାଗି ତା'ର ଏଇ ଦୁଃସ୍ୱପ୍ନ··· ।

କିନ୍ତୁ ମୀନା ତା'ର ମୁହଁକୁ ସିଧାସଳଖ ଅନେଇଲାମାତ୍ରେ ଏକ ବିଚିତ୍ର ଅନୁଭବ ଆକ୍ରମଣ କଲା ଜଗନ୍ନାଥକୁ । ଆବ୍‌ସର୍ଡ୍‌ର, ଏକ ଅଲୀକ ଫାର୍ସ ରଚିବାର ଅନୁଭବ । ଆରେ, ଆମେ ଆଲୁଅ ଘରଟାରେ ଏମିତି ଚେଇଁ ରହିଛୁ କାହିଁକି ? କିଏ ମନା କଲା ଆଲୁଅ ଲିଭେଇ ଦେବାକୁ ? ରାଣୀ ପୁଣି ଥରେ ଚର୍‌ଚରେଇ ଉଠିଲେ କ'ଣ କାହା କାନକୁ ଶୁଭିବ ନାହିଁ ଯେ, ତା'ର ଶବ୍ଦକୁ ଦେଖିବା ବି ଦରକାର ? ତାକୁ ଦେଖି ଶୁଣି ପଢ଼ିବା ଦରକାର ? ଜଗନ୍ନାଥ ଅଭଦ୍ରଙ୍କ ପରି ହସିଉଠିଲା, ମୀନାର ଆହ୍ୱାନକୁ ଉପହାସ କଲା ପରି । ସେଥିକୁ ମୀନାର ପ୍ରତିକ୍ରିୟା କ'ଣ ହୋଇଥାଆନ୍ତା କେଜାଣି, ତା' ପୂର୍ବରୁ ଜଗନ୍ନାଥ ଆଉରି ଗୋଟାଏ ଆବିଷ୍କାର କଲା । ଭାବିଲା ସ୍ତ୍ରୀ'କୁ କେବଳ ଆବ୍‌ସର୍ଡ୍ କୁହାଯିବ ନାହିଁ । ବରଂ ଏଥିରେ ରାଗିବା କଥା । ମନେହେବ ମୀନାଦେବୀଙ୍କର ଗୋଟାଏ ଅଭିସନ୍ଧି ଅଛି । ରାଣୀକୁ ବାଧ୍ୟ କରି ହେଉଛି ଚର୍‌ଚରେଇବା ପାଇଁ । ଝାଳେଇ ହାମ୍‌ଫେଇ ଯେତେକ ଦୁଃସ୍ୱପ୍ନ ଦେଖିବା ପାଇଁ । କାହିଁକିନା କେବଳ କବାଟ ନୁହେଁ, ଦାମ୍ପତ୍ୟ ସୁରକ୍ଷାର କବାଟ ନୁହେଁ, ଆକାଶକୁ, ବାରବଗିଚ୍ଛକୁ ଚାହାଁଉଥିବା ଡନଡନଟା ଝରକା ବି ବନ୍ଦ ଅଛି ! ନିବୁଜ ହୋଇ ବନ୍ଦ ଅଛି ! ଜଗନ୍ନାଥ ହାସ୍ୟରସରୁ ଓହରି ଆସି ଟାଣି ହୋଇ କହିଲା, ଘୁରିଘୁରି ନ ରାଗିଲେ ବି ଉଚ୍ଚ ଆଓ୍ୱାଜରେ କହିଲା—

"ଇଏ କଅଣ? ଝରକା ସବୁ ବନ୍ଦ କରି ହୋଇଛି କାହିଁକି ? ପିଲାଟାକୁ ବାଧିବ ନାହିଁ ? ଖାଲି ପିଲା କାହିଁକି, ବଡ଼ ମଣିଷ ବି ଛଟପଟ ହେବ ଏଥିରେ, ବଲିବଲେଇବ···"

"ଭାବୁଛ ମୁଁ ସେଇଥିଲାଗି ବନ୍ଦ କରି ଦେଇଛି ? ଜାଣିଶୁଣିକା ?"

ଘୋର ବିସ୍ମୟର ଭଙ୍ଗୀରେ ଲୀନାର ଓଠ ଉଚିତରୁ ଅଧିକ ମେଲା ହୋଇଗଲା । କିନ୍ତୁ ଜଗନ୍ନାଥ ଭାବିବାକୁ ଭରସି ପାରିଲା ନାହିଁ ଯେ, ସେଥିରେ ଢଙ୍ଗ ଅଛି, ଛଳନା ଅଛି । "ଆଃ, ମୁଁ କ'ଣ କହିଲି ଯେ, ତୁମେ ଜାଣିଶୁଣି—?" ଏହିଭାବରେ ସେ କିଛି ଗୋଟାଏ ସଫେଇ ପ୍ରସ୍ତୁତ କରିବାକୁ ଯାଉଥିଲା, ଏହି ସମୟରେ ଲୀନାର ଖୋଲା ଓଠ ବୁଜି ହୋଇଗଲା, ଓ ସେ କଥା କହିବାକୁ ଆରମ୍ଭ କଲା,—

"ହଁ' ଜାଣିଶୁଣିକା । କିନ୍ତୁ ରାଣୀକୁ କଷ୍ଟ ଦେବା ପାଇଁ ନୁହେଁ । ତାକୁ ବଞ୍ଚେଇ ରଖିବା ପାଇଁ । ଜାହିକନା ଝରକା ଖୋଲିଦେଲେ ଯେଉଁ ଗନ୍ଧ ପଶି ଆସିବ, ସେଥିରେ ସେ ଉଧେଇ ପାରିବ ନାହିଁ ।"

"ଗନ୍ଧ ?"

"ମଲା, ଏଠିକାର ଗନ୍ଧ କ'ଣ ତୁମେ କେବେହେଲେ ସୁଙ୍ଘି ନାହଁ ? ନା ଘରପୁଅ ବୋଲି ଗନ୍ଧଫନ୍ଦ କିଛି ବାଜେ ନାହିଁ ତୁମ ନାକରେ ? ଦିନର ଧୂଳିଧୂଆଁରେ ତା'ର ସତ୍ତା ମିଳେଇ ଯାଉଥିବ ହୁଏତ, କିନ୍ତୁ ରାତରେ ? ଗୋଟିଏ ନୁହେଁ, ହଜାରେ କିସମର । ଖୋଲା ନର୍ଦ୍ଦମା ସାଙ୍ଗକୁ ସେଥିରେ ଛଡ଼ା ହୋଇଥିବା ଥୋଲି ଥୋଲି ମଣିଷ ବଳକାର । ମୁଣ୍ଡକଟା ମୂଷାର ଗନ୍ଧ । ଶୁକୁଟା-ଶୁକୁଟୀ ହଗୁରା-ହଗୁରୀଙ୍କ ଦିଆନିଆ ଦେନାଦେନର ଗନ୍ଧ । ଆଉ ଯାବତୀୟ ମେଞ୍ଚାମେଞ୍ଚି ହାଲୁଚୁବାଲୁରୁ ସମ୍ପର୍କର ଗନ୍ଧ, ରାତ ଅନ୍ଧାରରେ ସ୍ୱାଧୀନତା ପାଇ ମେଲେଇ ହୋଇ ପଡ଼ିଥିବା ଯେତେକ ଅପରିଚ୍ଛନ୍ନ ଦେହ, ଦେହର କାମଅକାମ ଝାଳନାଳ ବାମ୍ପ ଓ ବାୟୁ—"

"ଇସ୍, କ'ଣ ବକୁଛ ଏସବୁ ? ଗନ୍ଧକାବ୍ୟ ନା ଦେହ ରାମାୟଣ ?"

"ଉଭୟ । କ'ଣ ଭୁଲିଯାଉଛ ଯେ, ତୁମସ୍ତ୍ରୀ ସାହିତ୍ୟରେ ଏମ୍.ଏ. ପାସ୍ କରିଛି ?" ଲୀନା ହସିଲା ।

ବିଦ୍ରୂପ···ବିସ୍ମୟ···କ୍ରୋଧ···ଆମୋଦ···କେତେ 'ସହଜରେ ସ୍ୱଚ୍ଛନ୍ଦରେ ସେ ତା' ଭାବର ଶାଢ଼ୀ ବ୍ଲାଉସ୍ ବଦଳେଇ ଚାଲିଛି ! ଜଗନ୍ନାଥ ଆଜିକୁ ଦଶ ବର୍ଷ ହେଲା ତା'ର ସାଥୀ ଓ ପତ୍ନୀ ହୋଇଥିବା ରମଣୀର ପ୍ରତିଭାରେ ମୁଗ୍ଧ ହେଲା । ସେକ୍‌ଟୋକ୍ ଯୁକ୍ତିତର୍କ ପାଇଁ ବଳ ନାହିଁ କି ରଗେଇବାର ସାହସ ନାହିଁ ସିନା, ଏମ୍.ଏ ପଢ଼ାର ଭାଷା ଅଛି ଓ ତା' ସାଙ୍ଗକୁ ଏଇ ଭାବ ପ୍ରଦର୍ଶନର ଛିଇ । ଭାବକୁ ନଚେଇ ଲମ୍ବେଇଦେବା, ପୁଣି ଚାହୁଁ ଚାହୁଁ ବଦଳେଇଦେବା । ଯେମିତିକି ତୁମେ ବୁଝି ପାରିବ ନାହିଁ ତା'ର ଦୁଃଖ କେତେ ଏବଂ ସେ ପ୍ରକୃତରେ କ'ଣ ଚାହେଁ । କିନ୍ତୁ ବୁଝି ହେବ ଯେ, ସେ ଚାହେଁ । ବୋଧହୁଏ ଅସହାୟ, ସେଇଲାଗି । ଏବଂ ହୁଏତ ତୁମଠାରୁହିଁ ଚାହେଁ । ସେଇ ପ୍ରଥମ ଦିନର ସଞ୍ଜ ପରି···

···ମହାନଗରୀର ବିସ୍ତୃତ ମହାତ୍ମାଗାନ୍ଧୀ ପାର୍କ ଉପରକୁ ଅନ୍ୟତମ ରାଜକୀୟ ସଞ୍ଜ ନଇଁ ଆସୁଛି । ଯେଝାର ଯେଝା ଘରକୁ ଗଲେଣି, ଯିବା ପାଇଁ ବାହାରିଲେଣି, କିନ୍ତୁ ଏଇ ଝିଅଟି

ପାର୍କର ଗୋଟିଏ କୋଣରେ ବସି ରହିଛୁ ଚୁପ୍‌ଚାପ୍ । ଖାଲି ବସି ରହିଥିଲେ କିଛି ନୂଆ କଥା ହୋଇ ନ ଥାଆନ୍ତା । କିନ୍ତୁ ସେ ଥୁଣ୍ଟା ହୋଇ ବସି ନାହିଁ । ଗୁଣୁଗୁଣୁ ହେଉଛି, ଏବଂ ଗୁଣୁଗୁଣୁର ଶବ୍ଦ ମୋର ମାତୃଭାଷାରେ ଉଆଁର ହେଲା ପରି ଲାଗୁଛି । ବେଳେବେଳେ ମୁହଁକୁ ହାତରେ ଘୋଡ଼ଉଛି, ଲୁଚେଇଲା ପରି, ପୁଣି ବେଳେବେଳେ ହସି ଦେଉଛି ଫିକ୍‌କିନା । ସତେକି ତା'ର କେହି ନାହାନ୍ତି, ସେଇଥିପାଇଁ ବିଗ୍ୱଗ୍ୱ ସେତେବେଳେ ଭାବନାବର ଖେଳ ଖେଳୁଛି ନିଜ ସାଙ୍ଗରେ । ମୁଁ ଟହଲିଲା ପରି ଚାଲି ଆସିଲି ତା' ପାଖକୁ । ହେଲେ କାଳେ ଅଭଦ୍ରାମି ହେବ ବୋଲି କିଛି ପଚାରି ପାରିଲି ନାହିଁ ଅନେକ ସମୟ ଯାଏଁ । ଶେଷକୁ ଅଧମତାରଣ ପନ୍ଥା । ପାଣିପାଗ ।

"ବର୍ଷା ହେବ ଆଉ ଟିକିଏ ପରେ—"

ତା'ର ସେଇ ପ୍ରଥମ ଦୃଷ୍ଟିର ଗ୍ୱହାଣୀ । ବିମୂଢ଼ତା । ସେଇଠୁ ଆନନ୍ଦ, ଖାଲି ଆନନ୍ଦ । ତୁମେ କ'ଣ ସତରେ ଆସିଛ ମୋ ସାଙ୍ଗରେ କଥା କହିବାକୁ ? ମୋର ନିଃସଙ୍ଗତାକୁ ଛୁଇଁବାକୁ ? ବିଶ୍ୱାସ ହେଉ ନାହିଁ । ସତରେ ଆସିଛ ??

"ଏଁ ? ବର୍ଷା ହେବ ? ହେଉ । ଅର୍ଥାତ୍ ହେଲେ ହେଉ, ମୁଁ ଭିଜିବି । ତୁମର ଯାଏ କେତେ ଆସେ କେତେ ? ତା'ପରେ ଗୋଟିଏ ସମୁଜ୍ଜ୍ୱଳ ସ୍ମିତହାସ । ସେଇଠୁ ଆରମ୍ଭ । ଅନୁରାଗର ଉନ୍ମେଷ, ପ୍ରଥମ ପ୍ରତିଶ୍ରୁତି....

ତୁମ କବିତ୍ୱକୁ ଧନ୍ୟବାଦ, ତୁମ ରସବୋଧର ତୁଳନା ନାହିଁ, ତୁମର ଚପଳ ଆମୋଦକୁ ମୁଁ ସ୍ୱୀକାର କରୁଛି (ଏଇ ଦେଖୁନା ମୁଁ ବି ହସୁଛି ?), ଏହି ପ୍ରକାର ଭାବର ପରାକାଷ୍ଠା ଦେଖାଇ ଜଗନ୍ନାଥ ଖଟରୁ ଉଠିଯାଇ ପ୍ରତିଟି ଝରକା ପାଖକୁ ଗଲା ଓ ତାକୁ ଖୋଲିଦେଲା । ଝରକା ସବୁ ଖୋଲିଦେଲା ପରେ ସେ କିଛି ସମୟ ପାଇଁ ତା'ର ଏଇ ଘରକୁ ଘେରେଇଥିବା ଗଛର ଗନ୍ଧକୁ ସୁଙ୍ଘିଲା । ନ ସୁଙ୍ଘି ରହି ପାରିଲା ନାହିଁ । ଗୋଟାଏ ଲମ୍ବା ନିଃଶ୍ୱାସରେ ଟାଣି ନେଲା ଭିତରକୁ । ଏବଂ ମନେ ମନେ କହିଲା ମିନାକୁ—

ମିନୁ, ମୁଁ ତୁମକୁ ଭଲପାଏ । ହୁଏତ ତୁମେ ଏ ଘରର, ପଡ଼ାର, ସହରର ନୁହେଁ ବୋଲି ମୁଁ ତୁମକୁ ଭଲ ପାଇ ପାରିଲି । କିନ୍ତୁ ଦୟା କରି ମୋତେ ଏଇ ଗନ୍ଧ ସୁଙ୍ଘିବାକୁ ଦିଅ । ଇଏ ମୋର ପ୍ରିୟ ବୋଲି ମୁଁ କହି ପାରିବି ନାହିଁ । ତା' ହୋଇଥିଲେ ଗୁଟିପିଟି ହୋଇ ପଳେଇ ଯାଇ ନ ଥାଆନ୍ତି ତୁମ ବିଶାଳ ପୃଥିବୀକୁ । ତୁମ-ଆମ ମହାନଗରୀକୁ, ଯାହାର କୋଣରେ ତୁମେ ବସିଥିଲ ଏକୁଟିଆ ହୋଇ, ଓ ମୁଁ ତୁମକୁ ପରମ ଆଦରରେ ତୋଳି ଆଣିଲି । କିନ୍ତୁ ପ୍ରଣୟ କ'ଣ ଯଥେଷ୍ଟ ବଞ୍ଚି ରହିବା ପାଇଁ ? ନା, ମୋର ଲୋଡ଼ା ଏଇ ଗନ୍ଧ । ମୋର ଜନ୍ମ ଓ ଜୀବନର ପରିଣତିକୁ ଚେତାଇ ଦେଉଥିବା ଭିଟାମାଟିର ଗନ୍ଧ । ତୁମେ ବୁଝି ପାରିବ ନାହିଁ, କାହିଁକିନା ତୁମେ ମୂଳରୁ ବଢ଼ିଛ ସେଠି, ଯେଉଁଠି ଅନେକ ଲୋକ । କିନ୍ତୁ ତାକୁ ଗୋଟି ଗୋଟି କରି ଗଣିବାକୁ ପଡ଼ିବ । କାରଣ ଜଣକଠାରୁ

ଆଉ ଜଣେ କାହିଁ କେତେ ଦୂରରେ ଥାଏ, ମଝିରେ ମହାକାଶ ମହୋଦଧି, ମରୁଭୂମି କି ଆଉ କ'ଣ ଏବଂ ସେଇଲାଗି ମନ ଆତୁର ହୁଏ ଆର ଲୋକଟାକୁ ଛୁଇଁବା ପାଇଁ ।

କିନ୍ତୁ ଆଜି ମନେ ହେଉଛି ଯେ, ଏଇ ସାଲୁବାଲୁ ସମ୍ପର୍କ ବି ଦରକାର । ବୋଧହୁଏ ବୟସ ବଢିଲାରୁ ବେଶୀ ବେଶୀ ଦରକାର ହେଉଛି···

କାହିଁକିନା ଏଇ ଦେହମାନଙ୍କର—ଖାଲି ମଣିଷଙ୍କର ନୁହେଁ, ପଶୁ ପ୍ରାଣୀଙ୍କର, ଗଛଲତା ଗହଳର—ଅଶ୍ଳୀଳ ସାଲୁବାଲୁରେ ଅଛି ଗୋଟାଏ ଆଶ୍ୱାସନା ପ୍ରେମଠାରୁ, ଘୃଣାଟାରୁ ବଳି ଅନ୍ତରଙ୍ଗତା । ନିତ୍ୟନିୟୁତ ନିମନ୍ତ୍ରଣ ···ଆ'ରେ ବାଣୁ ଲେଞ୍ଜରାଆଖିଆ ଷଣ୍ଢ, ତୋର ଜେଜେ ବି ବୋଧହୁଏ ଢ଼ଳି ଢ଼ଳି ବୁଲୁଥିଲି ଏଇ ରାସ୍ତାରେ···ଆ'ରେ ଆସ୍ଥର ଗାଡ଼ିର ନବା ଲେଙ୍ଗଡ଼ା ( ଆସ୍ଥର, ନବା ଲେଙ୍ଗଡ଼ାକୁ ପସ୍ଥର ), ତୁ ପିଲାଦିନେ ଗୁଡ଼ିଉଡ଼ା ଶିଖଉଥିଲୁ ମୋତେ, କେତେ କୁଆଡ଼େ ଉଡ଼ିବୁ ବୋଲି ବସିଥିଲୁ, କିନ୍ତୁ ବାଟରେ କେଉଁଠି ଲେଙ୍ଗଡ଼ା ହୋଇଗଲୁ ଭଗବାନ୍ ଜାଣନ୍ତି···ଆ'ରେ ଶତ୍ରୁଘ୍ନଧୋବାର ପୁଅ ଭମରା, ମୋତେ ନାଆଁ ଧରି ଡାକୁଥିଲୁ ପିଲାଦିନେ, ଅରେ ତୋ ବାପାଠାରୁ ଗାଳି ଖାଇଲୁ ସେଥିପାଇଁ, ଯେ ବାବୁଘର ମର୍ଯ୍ୟାଦା ଜଣା ନାହିଁ ତୋତେ, ହେଲେ ତୁ ଖାଲି ଦାନ୍ତ ଦେଖେଇଲୁ, ତା'ପରଠୁଁ ମୋତେ 'ଜଗା' ନ ଡାକି 'ଜଗୁ' ଡାକିଲୁ, ଯଥାକ୍ରମେ ଚମତ୍କାର ଛତରଟିଏ ହୋଇ ମଦ ଖାଇଲୁ, ବରବାଦ୍ ହୋଇଗଲୁ,···ଆ'ଲୋ କେଉଟଘର କପିଳବୋଉ, ତୁ ଚଲାବୁଲା କରିପାରୁ ନାହୁଁ ସିନା, ତୁ ଭୂତ ପରି ଦେଖାଯାଉ ନାହୁଁ ଆମ ଜେଜେଙ୍କ ପରି, ତୁ ମୋ ବୋଉକୁ ବୋହୂ ବୋଲି ଡାକୁଥିଲୁ, କୁଆଡ଼େ ତା' ମନଲକ୍ଷି ବଡ଼ ଟଙ୍ଗୁଡ଼ି ଆଣି ଦେଉଥିଲୁ ତା' ପାଟିକୁ ରୁଚିବ ବୋଲି, ଯେତେବେଳେ ମୁଁ ତା' ପେଟରେ ଥିଲି···ଆ'ରେ ଫେସନିଆ ମଣ୍ଡୁଆ, ଅଧାରୁ ପଢ଼ା ଛାଡ଼ିଦେଲୁ ହେଲେ ଟିକସ ବିଭାଗରେ କାମ କରି ଦି'ଦି'ଟା କୋଠା ବାଡ଼େଇଲୁଣି···ଆସ ମୋ ଯେତେକ ପିଲାଦିନର ସାଥୀ, ସାହିପଡ଼ିଶାର ମଉସା ମାଉସୀ ଶୁକୁଟା-ଶୁକୁଟୀ ହଗୁରା-ହଗୁରୀଙ୍କ ଦଳ, ବିଫଳ ଦେପରୁଆ ମଦୁଆ ମସଗୁଲିଆ, ସଫଳ ବଦନାମିଆ, ଅରାଏ ବୋଲି ଭୂଇଁରେ ଥେଇ ଥେଇକା ହରିବୋଲିଆ, ନିମନ୍ତ୍ରଣ ଖାଲି ତୁମଆଡ଼ୁ ନୁହେଁ, ମୁଁ ବି ଡାକୁଛି ତୁମକୁ··· ଆହୁରି ଏକାଠି ହେବା, ଆହୁରି 'ମିଶିଯିବା ଆସ । ଉଠୁ ଯେତେକ ଗନ୍ଧ ବାମ୍ଫର ବାସ୍ନାର, ଜଳୀୟର, ସ୍ଥଳୀୟର, ସବୁ ଆମ ଏକାକାର ଦେହର ଆଉ ମନର । ନିଜକଥା, ଘରକଥା । ଏବଂ ସେସବୁକୁ ଶୋଷିନେବ ଆମର ଏଇ ଗୋଟିଏ ବୋଲି ସାତସିଆଁ ଶେଯ । ଆମରି ଲୀଳାଖେଳାରେ ଧର୍ଷିତ, ହେଲା ଏବେ ମୂକସିଦ୍ଧ ଭସ୍ମ ନାହିଁ, ଲାଜ ନାହିଁ···

ପଳେଇ ଯାଇଥିଲି ସିନା, ଫେରି ଆସିଛି ଆଜି । କାହିଁକିନା ଏଣିକି ମୋତେ ଡର ମାଡ଼ୁଛି ସେଠି । ବୁଝିବ ଲୀନୁ ? ବୁଝି ପାରିବ ?

ଜଗନ୍ନାଥ ତା'ର ଅନ୍ଧାରି ସାଥୀମାନଙ୍କଠାରୁ ଦୃଷ୍ଟି ଫେରାଇ ଆଣି ଅନେଇଲା ଲୀନା ଆଡ଼କୁ । ହସ ହସ ମୁହଁରେ ଅନେଇଲା, କାଲେ ଲୀନା ରାଗିଯିବଣି ଯା' ଭିତରେ,

ଭାବୁଥିବ ଜଗନ୍ନାଥ ଜିଦରେ ଝରକା ଖୋଲିଦେଲା । କିନ୍ତୁ ସେ ଦେଖି ଆଶ୍ୱସ୍ତ ହେଲା ଯେ ଲୀନା ହସୁ ନାହିଁ ସିନା, ତା' ମୁହଁରେ କ୍ରୋଧର ଟିକେ ମାତ୍ର ଲକ୍ଷଣ ନାହିଁ । ହୁଏତ ସେ ସାମାନ୍ୟ ବିରସ, ସାମାନ୍ୟ ଭାବାନ୍ୱିତ ଦେଖାଯାଉଛି । କିଛି କ୍ଷତି ନାହିଁ । କ୍ଷଣ କ୍ଷଣକେ ତା'ର ଭାବାନ୍ତର ହୁଏ, କନ୍ୟାକୁମାରୀର ସମୁଦ୍ର ପରି । ସେଇ ତା'ର ଅଦ୍ୱିତୀୟ ନାରୀତ୍ୱ ପରା ! ଜଗନ୍ନାଥ ତା'ର ହସ ହସ ଭାବକୁ ଧରି ରଖିଲା । ଲୀନାଲପନର ପରବର୍ତ୍ତୀ ରଙ୍ଗକୁ ଅପେକ୍ଷା କରି ରହିଲା ।

ଅବଶ୍ୟ ଲୀନା ଚାରୁ ନ ଥିଲା । ପ୍ରାୟ ପଇଁତିରିଶ ବର୍ଷର ଶ୍ୟାମଳୀ କୃଶାଙ୍ଗୀ ଖଟରେ ଲେପ୍‌ଟେଇ ପଡ଼ି ଶୂନ୍ୟକୁ ଅନେଇଥିଲା, ଏବଂ ତା'ର ଚାହାଣୀରେ ଏକ ପ୍ରକାର ଦୀପ୍ତି ବିହ୍ୱଳ ହୋଇ ବସିଥିଲା, ଯେଉଁଥିପାଇଁ ସେ ସାଧାରଣ ସ୍ତରରୁ ଉନ୍ନୀତାହୋଇ ବିଶେଷଭାବରେ ସୁନ୍ଦର ଦେଖାଯାଉଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଯେମିତି ସେ ତା'ର ବ୍ୟଞ୍ଜନାତ୍ମକ ସମୁଦ୍ରପଣକୁ ଅଟକେଇ ରଖିଛି, ଅଧିକାଂଶ ଆକାଶକୁ ଚ୍ୟାଲେଞ୍ଜ୍ କଲା ପରି । ଅଟକେଇ ରଖିଛି, କାହିଁକିନା ତା'ର ଜ୍ଞାନୋଦୟ ହୋଇଛି । ସେ ବୁଝି ପାରୁଛି ଯେ, ସ୍ୱାମୀ ଜଗନ୍ନାଥ ପ୍ରକୃତରେ ଆସିଛି ଏଠି ରହିବା ପାଇଁ । ତା'ର ପ୍ରତିରୋଧ କରିବାକୁ ହେବ । ଉପାୟ କ'ଣ ବୋଲି ଠିକ୍ କରି ହେଉ ନାହିଁ, କିନ୍ତୁ ମାମୁଲି ପତ୍ନୀସୁଲଭ ରାଗ ଅଭିମାନ ଯଥେଷ୍ଟ ନୁହେଁ, ଏଥିରେ ସନ୍ଦେହ ନାହିଁ । ଆହୁରି କିଛି ଆବଶ୍ୟକ, ଆହୁରି କିଛି··· । ଏବଂ ସେଥିପାଇଁ ନିଜକୁ, ନିଜତ୍ୱକୁ ପୁରାପୁରି ମୁଠେଇ ଧରିବାକୁ ହେବ, ଆହୁରି ସଚେତନ ହେବାକୁ ପଡ଼ିବ । ପରିସ୍ଥିତି ଆଦୌ ସହଜ ନୁହେଁ । ସୁବିଧାର ନୁହେଁ । ଶ୍ୟାମଳୀର ଆୟତ କଳାଡୋଳା ଚାହାଣୀ ସ୍ଥିର ହୋଇ ରହିଲା ଅନେକ ସମୟଯାଏଁ ।

ଅଗତ୍ୟା ଜଗନ୍ନାଥର ହସ ହସ ଭାବ ତା' ସାଙ୍ଗରେ ତାଳ ଦେଇ ପାରିଲା ନାହିଁ, କୋହଳ ହୋଇଗଲା । କିନ୍ତୁ ସେ ବିବ୍ରତ ହେଲା ନାହିଁ । ନିଜକୁ କହିଲା ଯେ, ଯେତେହେଲେ ଇଏ ଲୀନାର ଘର ନୁହେଁ, ମୋ ଘର । ତେଣୁ ଏଇ ଦ୍ୱୈତ୍ୱ ସ୍ୱାଭାବିକ । ହେଲେ ସେ ଧୀରେ ଧୀରେ ବାଗକୁ ଆସିବ, ମାନିନେବ ଏଇ ତଥାକଥିତ ଗନ୍ଧକୁ । ଧରି ମୋତେ ବାହା ହେଲା ପରେ ସେ ରହିଥାଆନ୍ତା ଏଇ ଶାଶୁଘରେ ସର୍ବସାଧାରଣ ଓଡ଼ିଆ ଝିଅଙ୍କ ପରି— ତା'ହେଲେ ?

ଜଗନ୍ନାଥ ନିଜକୁ ନିର୍ବିଚଳ ମନେକରି ଅଗ୍ରସର ହେଲା ଖଟ ଆଡ଼କୁ । ଭାବିଲା ଯେ, ସ୍ୱଇଚ୍ଛାରେ ଝରକା ଖୋଲି ଦେଲା ପରି ଆଲୁଅ ବି ଲିଭେଇ ଦେବ । ସପତ୍ନୀକ ଶୋଇ ପଡ଼ିବ । ମିଛୁଟାରେ ରାଣୀର କ'ଣ ହେଉଛି ବୋଲି ଜଗି ବସିବାର ପ୍ରହସନକୁ ବାତିଲ୍ କରିଦେବ ।

ସେଇଆ ହେଲା । ଜଗନ୍ନାଥ ଆଲୁଅ ଲିଭେଇ ଦେଇ ଶୋଇ ପଡ଼ିଲା, ଏବଂ ହାତ ବଢ଼େଇଲା ଲୀନାକୁ ଛୁଇଁବ ବୋଲି । ଲୀନା ସେହି ସ୍ପର୍ଶର ପ୍ରତ୍ୟୁତ୍ତର ଦେଲା ନାହିଁ କି ତା' ହାତକୁ ଉଠେଇ ଆଣିଲା ନାହିଁ ।

କିନ୍ତୁ ସେଇ ରାଣୀର ଦୁଃସ୍ୱପ୍ନକୁ ନେଇ ମଞ୍ଚ ଆଲୋକିତ ହୋଇ ରହିଥିଲା ଏତେବେଳଯାଏଁ, ତା' ଆଡ଼କୁ କେହି ବିଶେଷ ଧ୍ୟାନ ଦେଇ ନଥିଲେ । ଦେଲେ ଜାଣିଥାଆନ୍ତେ ଯେ, ଅନ୍ତତଃ ଆଜିର ଏଇ ରାତିରେ ଦୁଃସ୍ୱପ୍ନର ପ୍ରଶ୍ନ ଉଠୁନାହିଁ । ଝିଅ ଥାଇ ଥାଇ ହସୁଛି । ମଧୁରିଆ ଆନନ୍ଦର ହସ ।

ଏବଂ ସତକଥା କହିବାକୁ ଗଲେ ରାତିର ଗନ୍ଧରେ ମଧ୍ୟ ଥିବା ଉଚିତ ଗୋଟାଏ ଉତ୍କଟ ସୁଗନ୍ଧରୁ ଧାପେ, ଅନ୍ୟତମ ଝରକାକୁ ଓହ୍ଲାଇ ଆସିଥିବା ପେଣ୍ଠାରେ ଧଳା ଫୁଲର ଅବଦାନ, ଯାହା ଲୀନା ପାଖରେ ନିଶ୍ଚୟ ପହଞ୍ଚୁଥିବ । କିନ୍ତୁ ଲୀନା ତାକୁ ଉପଭୋଗ କରିବାର ଅବସ୍ଥାରେ ନଥିଲା । ସେ ତଥାପି ସଚେତନତାର ଶୀର୍ଷରେ ବସି ରହିଥିଲା । ଅଡ଼ି ବସିଥିଲା ବୋଲି କହିଲେ ଭୁଲ ହେବ ନାହିଁ । ରାତି ପାହିବାକୁ ଡେରି ଅଛି ।

ସଚେତନତା କେତେ ଉପରକୁ ଉଠିଲେ ଭାବଭାବନାଗୁଡ଼ାକ ଧସ୍ତାଧସ୍ତି ହୋଇ ଫାଟି ଯାଆନ୍ତି, ଲହୁଲୁହାଣ ହୋଇଯାଆନ୍ତି ଏବଂ ମଣିଷ କିଛି ଗୋଟାଏ କାଣ୍ଡ କରିବାକୁ ବାଧ୍ୟ ହୁଏ ? ଲୀନାର ମନେହେଲା ସେ ସେଇଭଳି ଉଚ୍ଚ ପର୍ବତରେ ପହଞ୍ଚିଲାଣି ଆସି । ବାହାରେ ରାତି ପାହିବାକୁ ଡେରି ନାହିଁ ଆଉ । ବେଶ୍ ଅନ୍ଦାଜ କରି ହେଉଛି—ଆସିବ ଗୋଟାଏ ପହିଲି ଚଢ଼େଇ, ଚୁଇଁ ଚୁଇଁ ଚୁଇଁ, ତା'ପରେ ଚିଁ-ଇଁ-ଇଁ-ଇଁ, ତା'ପରେ ଉହୁଁ-ଉହୁଁ-ଉହୁଁ, ତା'ପରେ କେତେ କ'ଣ, ଯେତେକ ମୂର୍ଖ ପାଗଳ ଚଢ଼େଇ, କୋଉଠି ଏତେ ଥାଆନ୍ତି କେଜାଣି ! ଆଉ ଜଗନ୍ନାଥ ହଦଭଙ୍ଗା ଅଳସ ଗୃହାଣୀ ଢାଳିଦେବ ମୋ ଉପରେ । ଏବଂ ସଯତ୍ନ ନିର୍ମିତ ମୂରକିହସାଟିଏ ଛାଡ଼ିଦେଇ କହିବ—ଶୁଣୁଛ ତ ? ଯା'କୁ ପାଇବ କି ସେଠି ତୁମର ସେଇ ନୁଖୁରା ମହାନଗରୀରେ ?

ପିଟିଦେବ । ଭାଙ୍ଗିଦେବ । କିଛି ଗୋଟାଏ କାଣ୍ଡ କରିବ । ଯେମିତିକି.... ଯେମିତିକି··· । ଯେମିତିକି କଅଣ ହେବ ? ଘର ଲୋକେ, ସାଇ ଲୋକେ, ଦୁନିଆଁ ସାରା ଜାଣିବେ ଯେ, ଜଗନ୍ନାଥର ମାଇପ ସତରେ ବିଦେଶିଣୀ, ଆଉ ତା' ମୁଣ୍ଡ ଖରାପ ?

ନା ମୁଁ ବିଦେଶିଣୀ ନୁହେଁ କି ମୋ ମୁଣ୍ଡ ଖରାପ ନୁହେଁ । କି ମୁଁ ସହରିଆଣୀ ବୋଲି ନାକ ଟେକୁ ନାହିଁ ତୁମକୁ । କିନ୍ତୁ ମୁଁ ଟିକିଏ ଅଲଗା ହୋଇ ଶୃଙ୍ଖଳରେ ରହିବାକୁ ଚାହେଁ । ଏତକ ବୁଝିବା କ'ଣ ଏତେ କଷ୍ଟକର ? ମୋ ମାଆ ମୋତେ ଉଠେଇ ନେଇ ଆସିଛି ମୋ ପିଲାଦିନେ, ଦେଶରୁ ବିଦେଶକୁ, ମଫସଲରୁ ବଡ଼ ସହରକୁ । ମାମୁଙ୍କ ପାଖକୁ । ମୋର ମନେ ଅଛି ତା' କାନ୍ଦୁରା ଚେହେରା । ଆଉ ମନେ ଅଛି···ଏମିତିକା ଘର, ଏମିତି ସାଲୁବାଲୁ ଲୋକ, ଗାଈଗୋରୁ, ପଶୁପକ୍ଷୀ, ବଣଜଙ୍ଗଲ, ଗହଳି ଓ ଗନ୍ଧ । ପାଣି ବରଷୁଛି । ବୋଉ କାନ୍ଦୁଛି । ସେମାନେ ବେଢ଼ି ଯାଇଛନ୍ତି ତାକୁ । ସେତେବେଳେ ବାପା କୋଉଠି ଥିଲେ, କ'ଣ କରୁଥିଲେ, କିଛି ମନେ ପଡ଼ୁନାହିଁ । ପରେ ଜାଣିଲି ଯେ, କିଛି ଗୋଟାଏ ଘଟଣା ଘଟିଥିଲା, ଯେଉଁଥିପାଇଁ ବୋଉକୁ କନ୍ଦେଇଲେ ସେମାନେ । ଘରୁ ତଡ଼ିଦେଲେ କହିଲେ ଚଳେ । ବଡ଼ ହେଲାରୁ ଜାଣିବାକୁ ଚାହିଁଲି ନାହିଁ ଯେ, ପ୍ରକୃତରେ

ବୋଉ କୋଉ 'ପାପ' କରିଥିଲା ନା ସେମାନେ ରାକ୍ଷସ ଥିଲେ । ଯାହାହେଉ ବୋଉର କାନ୍ଦ ବି କେଇଟା ବର୍ଷ ଭିତରେ ବନ୍ଦ ହୋଇଗଲା, କାହିଁକିନା ସେ ମରିଗଲା । ମୋର ହେଉ ହେବା ପୂର୍ବରୁ । ତେଣୁ ମୁଁ ପୁରାପୁରି ଶୁଖିଲାରେ, ସୁଖରେ ବଢ଼ିଲି ମୋ ମାମୁଙ୍କ ପାଖରେ । ଏହିକ୍ଷଣି ପୁଣି କାହିଁକି ଫେରି ଆସିବି ଜାଦୁଅ ବଟବଟକୁ ? ଏଇ ଯାଲୁବାଲୁ ମଫସଲକୁ ? ଜଗନ୍ନାଥ ସ୍ୱା'କୁ ଶ୍ରେଷ୍ଠ ସହର ବୋଲି ଯେତେ କହିଲେ କ'ଣ ହେବ, ଇଏ ବି ମଫସଲ । ଗୋଟିପଣେ ମଫସଲ । ସେଇ ଛନ୍ଦାଛନ୍ଦି ଲୋକ, ସମ୍ପର୍କ, ସମସ୍ତେ ବେଢ଼ି ଯାଆନ୍ତି ତୁମକୁ, ତୁମ ଜୀବନକୁ । ସେଇଠୁଁ ମାଡ଼ି ବସନ୍ତି । ଆଉ ବେଳ ଉଣ୍ଡି କହନ୍ତି । ବୁଝିଲ, ହେଇ ଲୋ ଜଗା ମାଇପ ଏମିତି କଲା, ଖାଉଜି ସେମିତି କଲା, ହସିଲା, ଛିଙ୍କିଲା, ପାପକଲା··· ।

ନନ୍‌ସେନ୍‌ସ, ମୁଁ ରହିବ ନାହିଁ ଏଠି ! କଦାପି ରହିବ ନାହିଁ !!

କିନ୍ତୁ ମୁଁ ଜଗନ୍ନାଥକୁ ଛାଡ଼ି ରହି ପାରିବ ନାହିଁ···

ଭୁସ୍‌କିନ କାନ୍ଦି ଉଠିବା ଛଡ଼ା ଅନ୍ୟ ଉପାୟ ନଥିଲା । ସେଇ ହେଲା ତା' ଜ୍ୱାଳାମୁଖୀ ପ୍ରବୃତ୍ତିର ଶେଷ କଥା । କିନ୍ତୁ ଲୀନା କାନ୍ଦଣାର ଶବ୍ଦକୁ ବେଶ୍ ଚପେଇ ଦେଇ ପାରିଲା । କହିଲା ଲୀନା ଦୁର୍ବଳ ନୁହେଁ । ଘଡ଼ି ସରି ଆସୁଛି ସିନା, ସମସ୍ତ ସରି ନାହିଁ ।

ଲୁହ ଶୁଖିଗଲା ପରେ ଲୀନା ଆଲୁଅ ଜଳେଇ ଦେଲା । ପାହାନ୍ତି ଆଲୁଅର ତେଜକୁ ଅସ୍ୱୀକାର କଲା ପରି । ଏବଂ ପାଖରେ ଶୋଇଥିବା ଦୁଇଜଣଙ୍କୁ ଦେଖିଲା । ଦେଖିଲା ବଡ଼ ଜଣକ ଶୋଇ ଯାଇଛି । କିନ୍ତୁ....କିନ୍ତୁ ସନ୍ଦେହ ହେଉଛି ଯେ, ଦୁଇ ଆଖି ବୁଜି ହୋଇ ରହିଛି ସିନା, ତା' ଭିତରେ ବୋଧହୁଏ ନିଦ ନାହିଁ । ହେଲେ ସାନଟା ଦିବ୍ୟ ଆରାମରେ ଶୋଇଛି । ଖାଲି ସେତିକି ନୁହେଁ—ଲୀନା ସେଇ ପ୍ରଥମେ ଆବିଷ୍କାର କଲା—ଝିଅଟା କେଡ଼େ ମଜାରେ ହସୁଛି ! ସତେକି ଷଠୀଦୁଣୀ ବି ଫେରି ଆସିଛି ଏତେଦିନକେ, ଏଇ ମଫସଲକୁ ଆସିଲାରୁ ! କିନ୍ତୁ ଲୀନାର ଇଚ୍ଛା ହେଲା ରାଣୀକୁ ହଲେଇ ହଲେଇ ଉଠେଇ ଦେବ ନିଦରୁ । କହିବ—ଆଲୋ ବୋକୀ, ଇଏ ମିଛ । ପୁରାପୁରି ମିଛ, ବୁଝିଲୁ ?

ସତ ହେଉ ମିଛ ହେଉ ରାଣୀ ସୁଖନିଦରେ ଶୋଇଥିଲା ସେଦିନ, ଏଥିରେ କାହାରି ଦ୍ୱିମତ ରହିବ ନାହିଁ । ଏବଂ କେହି ନ ଦେଖିଲେ କି ନ ଦେଖିବାକୁ ଚାହିଁଲେ ମଧ୍ୟ ତା'ର ବଡ଼ଜେଜେ ବି ମୁରୁକି ମୁରୁକି ହସୁଥିଲେ ତାଙ୍କ ଗାଢ଼ନିଦରେ, ଯାହା ଏକ ମହାର୍ଘ ଦର୍ଶନୀୟ ବସ୍ତୁ, ସୁନ୍ଦର ନ ହେଲେ ନାହିଁ । ସତେକି ଦୁହିଁଙ୍କ ଅଚେତନ ହସ ଭିତରେ କିଛି ଗୋଟାଏ ଯୋଗସୂତ୍ର ଥିଲା । ତା'ହେଲେ କିଏ କାହାକୁ ଡରେଇଲା, କିଏ ଭୂତ ଦେଖିଲା ଏବଂ ଦୁଃସ୍ୱପ୍ନର ଅବକାଶ ଆସିଲା କେଉଁଠୁ ?

କଥାଟାକୁ ମୂଳରୁ କହିବାକୁ ହେବ । ଜଗନ୍ନାଥ ତା'ର ସ୍ତ୍ରୀ ଲୀନା ଓ ଛଅବର୍ଷିଆ ଝିଅ ରାଣୀକୁ ନେଇ ଘରକୁ ଆସିଛି, ଏଇ ଦି'ଦିନ ହେଲା । ଜଗନ୍ନାଥ ଆସିଛି ପ୍ରାୟ ବାର

ବର୍ଷ ପରେ । ମିନା ମୋଟେ ଆସି ନ ଥିଲା, ଶଣୀ ତ ସନ୍ଧ୍ୟକେ । ଶଣୀକୁ କୁହାହୋଇଥିଲା —ଜଗନ୍ନାଥ ତା'କୁ ଲଗିପଡ଼ି କହୁଥିଲା—ସେ ସେଠିକା ଘର ଭିନ୍ନେ, ମଣିଷ ଭିନ୍ନେ, ତାକୁ ଚୋଟେ କଷ୍ଟସ୍ତ ଭଲ ଲଗିବ । ଖୋଲା ଅଗଣାରେ ଖାଲି ଧାଉଁଥିବୁ ଏ ପାଖରୁ ସେ ପାଖ । ପୋଖରୀରୁ ମାଛ ଧରିବୁ । ଦୁଧ କୋଉଠୁ ଆସେ, କେମିତି ଗାଈର ପହ୍ନାରୁ ଦୁହାଁହୁଏ ଦେଖିବୁ । ବେଣୀ ପାଖକୁ ଯିବୁ ନାହିଁଟି, ଗାଈ ନାତ ମାରିବ । ବାପାଙ୍କ କଥା ମଝିରେ ଶଣୀ ପଗ୍ଚରିଥିଲା ସେଠି ପିଲା ଅଛନ୍ତି କି ନାହିଁ । ତା'ର ଉତ୍ତର ଦେବାକୁ ଯାଇ ଜଗନ୍ନାଥ ଟିକିଏ ଅତମତ ହୋଇଥିଲା । କାହିଁକିନା ଅନେକ ବର୍ଷ ହେଲଣି, ବଂଶର ବିଗଟ ପୁଗତନ ଘରେ କେହି ପିଲା ନାହାନ୍ତି । ମାନେ ଘର ପିଲା । କେତେବେଳେ କୋଉ ପୁଅଝିଅଙ୍କ ନାତନାତୁଣୀ ଆସନ୍ତି ଯାଆନ୍ତି, କିନ୍ତୁ କେହି ରୁହନ୍ତି ନାହିଁ ବେଣୀଦିନଯାଏଁ । ଶଣୀକୁ କୁହାଯାଇଛି ଯେ, ସଦାସର୍ବଦା ରହୁଥାଆନ୍ତି ଜଣେ, ବଡ଼ଜେଜେ, ମାନେ ତା' ବାପାର ଜେଜେ ଏବଂ ଜେଜେମା, ତା' ବାପାର ମାଆ । କିନ୍ତୁ ତା' ବୋଲି କ'ଣ କେହି ପିଲା ନ ଥିବେ ? ଯାହାହେଉ ଜଗନ୍ନାଥ ଦମ୍ଭରେ କହିଲା ଯେ, ପାଖଆଖର କେତେ ପିଲା ଆସନ୍ତି ସେଠି ଖେଳିବା ପାଇଁ, ମାଛ ଧରିବା ପାଇଁ, ଗୁଡ଼ି ଉଡ଼େଇବା ପାଇଁ । ତେବେ ଶଣୀ ବିଶେଷ ଆଶ୍ୱସ୍ତ ହେଲା ପରି ମନେ ହେଲା ନାହିଁ । ସେଇଠୁଁ ଜଗନ୍ନାଥ ଗୋଟାଏ ନିର୍ବୁଦ୍ଧିଆ କାମ କଲା । ନ ଭାବି ନ ଚିନ୍ତି କହି ପକାଇଲା—"ଆଲେ, ତୁ ବଡ଼ଜେଜେଙ୍କ ସାଙ୍ଗରେ ଖେଳିବୁ ନାହିଁ ? ସେ ବି ଗୋଟିଏ ପିଲା ପରି !" ଶଣୀ ତା'ର ଅର୍ଥ କ'ଣ ବୁଝିଲା ନ ବୁଝିଲା ସେଇ ଜାଣେ । କିନ୍ତୁ ଏଠିକି ଆସି ବଡ଼ଜେଜେଙ୍କ ସାଙ୍ଗରେ ଦେଖାହେଲା ମାତ୍ରେ ସେ ପାଟି କରି ଉଠିଲା—"ପିଲା ନା ଛତୁ ! ଏ ତ ଗୋଟାଏ ଭୂତ !"

ନନ୍ଦ ମହାନ୍ତି ଓରଫ୍ ବଡ଼ଜେଜେଙ୍କ କାନକୁ କିଛି ଶୁଭେ ନାହିଁ ସତ, କିନ୍ତୁ ଜଗନ୍ନାଥ ଓ ମିନା ଉଭୟ ହଡ଼ବଡ଼େଇ ଯାଇଥିଲେ, କାହିଁକିନା ପାଖରେ ଅନ୍ୟ ଲୋକ ଥିଲେ । ତେଣୁ ସେମାନେ ତତ୍‌କ୍ଷଣାତ୍ ଝିଅକୁ ସେଠାରୁ ଟାଣି ଟାଣି ନେଇ ଯାଇଥିଲେ । ବୁଢ଼ାଙ୍କ ଜଙ୍ଗଲି ପାଳୁଆ ପାଟିର ପାକୁପାକୁକୁ ଅଗ୍ରାହ୍ୟ କରି । ଅବସ୍ଥାଟାକୁ ଆପାତତଃ ସମ୍ଭାଳି ନେବା ପାଇଁ, କାଲେ ଶଣୀ ଆଉ କଅଣ କରି ବସିବ, ଆଉ ତାଙ୍କ ମୁଣ୍ଡ ତଳକୁ କରିବ ।

ସେଇ ପ୍ରଥମ ଦିନ ରାତିରେ ଶଣୀ ନିଦରେ ଚର୍‌ଚରେଇ ଉଠିଲା । ଯାହା ସେ ପୂର୍ବରୁ କେବେ କରିଥିଲା ବୋଲି ମନେ ପଡ଼ୁନାହିଁ । ମିନା କହିଲା ସେ ଖରାପ ସ୍ୱପ୍ନ ଦେଖିଛି, ଜେଜେଙ୍କୁ ଦେଖି ଡରିଯାଇଛି । କିନ୍ତୁ ଜଗନ୍ନାଥ ବିଶ୍ୱାସ କରି ପାରିଲା ନାହିଁ । ହେବା ଉଚିତ ନୁହେଁ ।

ଯାହାହେଉ ଗତକାଲି ଦ୍ୱିତୀୟ ଦିନର ରାତିରେ କିଛି ଘଟି ନାହିଁ । ଅପରନ୍ତୁ ଶଣୀ ନିଦରେ ମୁର୍‌କି ମୁର୍‌କି ହସିଛି । କହୁଥିବାର । ଏଣେ ତା'ର ବଡ଼ଜେଜେ ମଧ୍ୟ । ଯୋଗାଯୋଗ ନା ଯୋଗସୂତ୍ର ?

ପ୍ରଥମ କଥା ହେଲା, ବଡ଼ଜେଜେ କେମିତିକା ଭୂତ । ତାଙ୍କର ହାଡ଼ଚମ ଏକାଠି ହୋଇଗଲାଣି । ତେଣୁ ତାଙ୍କ ଗାଡ଼ୁଆ ଆଖି, ତୀକ୍ଷ୍ଣ ନାକ, ପାକୁଆ ପାଟି ବିଶିଷ୍ଟ ଲମ୍ବା ମୁହଁ ଅବଶ୍ୟ କଦାକାର ଦେଖାଯାଉଛି । ଖପୁରି ହାଡ଼ର ମୁଣ୍ଡ ପରି ଯାହା ବସିଥାଏ ନଡ଼ବଡ଼ିଆ କଙ୍କାଳ ଉପରେ, ଓ ପାତଳା ଧଳା ଗୁଦରଟାଏ ଘଟାଟୋପ ପରି ଦେହରେ ଗଳେଇ ଦେଇ ବାହାରି ଆସେ କେଉଁ ଆଲମାରି ଭିତରୁ, କି ଦେଖାଦିଏ ସିଡ଼ି ମୁଣ୍ଡରେ । କିନ୍ତୁ ରାଣୀ କ'ଣ ତା'ର କେବେ ଛବି ଦେଖି ନଥିବ ତା' ଗପ ବହିମାନଙ୍କରେ, ଯେ ଅଙ୍କ ସତସତିକା ସେମିତି ଗୋଟାଏ ଲୋକକୁ ଦେଖି ଡରିଯିବ ? ହଁ, ଡରିବା କଥା ଯଦି ସେ କେବଳ କଦାକାର ନୁହଁନ୍ତି, ବୀଭତ୍ସ ମଧ୍ୟ । ଧର ତାଙ୍କ ଓଠରୁ ଫାଲେ ଓଲଟି ଯାଇଛି, ଆଖିତଳ ଫୁଲିଛି ଟିଙ୍କ ପରି, ଡୋଳା ଦି'ଟା ଖାଲି ପାଣିଚିଆ ନୁହେଁ ନାଲିଚିଆ, ସେ ହସି ପାରୁ ନାହାନ୍ତି, ଯତ୍‌ସାମାନ୍ୟ ହସିବାକୁ ଚେଷ୍ଟା କଲେ କୁଟ୍ଳେଇଲା ପରି ଦିଶୁଛନ୍ତି, କଥା କହି ପାରୁ ନାହାନ୍ତି, କହିଲରୁ ହାଉ ହାଉ ହେଲା ପରି ଶୁଭୁଛି, ଇତ୍ୟାଦି । କିନ୍ତୁ ନନ୍ଦ ମାହାନ୍ତ ଏତେ ଦୂରକୁ ଗଲେଣି କି ? ନାହିଁ, ନାହିଁ ତ ! ହୁଏତ ଆଉ ପାଞ୍ଚସାତ ବର୍ଷ ବଞ୍ଚିଲେ ସେମିତି ଦେଖାଯିବେ, ସେକଥା ଭିନ୍ନ । ବର୍ତ୍ତମାନ ସେ ଅବଶ୍ୟ ହସନ୍ତି ଏବଂ ହସ ହସିଲା ପରି ଦେଖାଯାଏ । କଥା ମଧ୍ୟ କୁହନ୍ତି, ଯଦିଓ କାନକୁ କିଛି ଶୁଭୁ ନଥିବାରୁ (ହୁଏତ ଅତି ସାମାନ୍ୟରେ ଶୁଭେ ) ଅଯଥାରେ "ଏଁ ?" "ଏଁ ?" ବୋଲି ପାଟି କରନ୍ତି । ପୁଣି ଯାହା କହିବାକୁ ଚାହାନ୍ତି ତା'କୁ ଲଗିପାଗି ଦୋହରେଇ ହୁଅନ୍ତି ଏବଂ ସେଇ ଦରଖଣ୍ଡିଆ ବାକ୍ୟଗୁଡ଼ାକ ଚଟ୍ଟାଚଟ୍ଟି ହୋଇ ହଜି ଯାଆନ୍ତି କୁଆଡ଼େ । ଏଇ ଚେହେରାର ବଡ଼ଜେଜେ ସ୍ୱାଗତର ହସ ହସିଥିଲେ ରାଣୀ ପାଇଁ, ତାକୁ ଛଅଥର ଇଂରେଜି 'ହେଲୋ'ର ସମ୍ଭାଷଣ କରିଥିଲେ ଓ ରାଣୀର ମନ୍ତବ୍ୟକୁ ଶୁଣି ନ ପାରି ବୁଝି ନ ପାରି ଦେଖିଥିଲେ ତା' କୁନୁମୁନିଆ ଓଠ, ଜିଭ ଓ ଆଖିର ତରଙ୍ଗାୟିତ ଚଞ୍ଚଳ ପ୍ରତିକ୍ରିୟା । ଯାହାକୁ ଦେଖି ସେ ଅଳ୍ପବହୁତେ ଉତ୍ତେଜିତ ହୋଇ ଉଠିଥିଲେ ବୋଲି ମନେ ହେଉଛି । କାହିଁକିନା ତାଙ୍କ ଓଠ କମ୍ପି ଉଠିଲା, ସତେ ଅନେକଗୁଡ଼ାଏ କଥା କହି ପକେଇବେ ! ସେ ଆରାମ ଚଉକିରୁ ଉଠି ବସିବା ପାଇଁ ବ୍ୟସ୍ତ ହୋଇ ପଡ଼ିଲେ ଏବଂ ତାଙ୍କ ଶିରାଳ ହାତ ବଢ଼େଇଦେଲେ ରାଣୀକୁ ଧରିବା ପାଇଁ । ରାଣୀ ଅବଶ୍ୟ ଧରାଛୁଆଁ ଦେଲା ନାହିଁ । ତେବେ ସେ ଦୁହିଁଙ୍କର ଏଇ ପହିଲି ମିଳନର ଦୃଶ୍ୟରୁ କ'ଣ ମନେ ହେଉଛି ଯେ, ଜଣେ ଡରେଇଥିବ ଏବଂ ଆଉ ଜଣକ ଡରିଥିବ ?

ରାଣୀ କଥା ଛାଡ଼ି ଦିଅ । କାରଣ ତା'ର କଅଁଳ ଲୁଚୁପୁଡ଼ିଆ ମନର ଗହ୍ୱରକୁ ଚଷିବା ଅନ୍ୟାୟ, ସେଥିରୁ କିଛି ମିଳୁ ବା ନ ମିଳୁ । ବର୍ତ୍ତମାନ ପ୍ରଶ୍ନ ହେଉଛି ଯେ, ବୁଢ଼ାଙ୍କ ନିଦହସରୁ କ'ଣ କିଛି ଛିଅ ବାହାର କରିହେବ, ଯାହା ରାଣୀପାଇଁ ଲମ୍ଭିଛି ବୋଲି ଜଣା ପଡ଼ିବ ?

ହଁ, ରାଣୀ ଥିବ ତାଙ୍କ ନିଦରେ, ତାଙ୍କ ଖଣ୍ଡିଖଣ୍ଡିଆ ଛବିଳ ସ୍ୱପ୍ନରେ । କିନ୍ତୁ ତାଙ୍କ ସୁଖବୋଧ ଖାଲି ତାଙ୍କୁଇ ନେଇ ଏବଂ ତା'ର ପାଇଁ ଗଢ଼ି ଉଠିଥିଲା ବୋଲି କହିଲେ ନିଶ୍ଚିତ ଭୁଲ ହେବ । ଯେହେତୁ ତାଙ୍କ ସୁଖର ମୂଳପିଣ୍ଡ ଥିଲା ଗୋଟିଏ ନବଜାଗ୍ରତ ଓ ନିଟୋଳଗଢ଼ବନ୍ଧା ଧାରଣା,—ସେମାନେ ଆସିଛନ୍ତି । ମୋ ନାତି ଓ ତା' ପିଲାମାନେ । ଏବଂ ଏଥର ରହିବେ ଏଠି । ଆସିଛନ୍ତି ସତକଥା, କିନ୍ତୁ ଏଠି ରହିବେ ବୋଲି କିଏ କହିଲା ତାଙ୍କୁ ? କେହି କହି ନାହାନ୍ତି । ହେଲେ ସେ ଧରି ନେଇଛନ୍ତି । ମନେ ପଡ଼ୁଛି ଏଇ ନାତିଟା ମୋତେ କହିଥିଲା ଆଗଥର (ମୋର ଶ୍ରବଣଶକ୍ତି ଭଲ ଥିଲା ସେତେବେଳେ) ଯେ, ସେ ଦିନେ ପୁରାପୁରି ଫେରି ଆସିବ । ତା'ଛଡ଼ା ଜଗୁ ପିଲାଟା ପାଗଳା ସିନା, ନିର୍ବୁଧିଆ ନୁହେଁ । ଏଠି ରହିବ ନାହିଁ, ତା' ନିଜ ଘରେ ରହିବ ନାହିଁ, ଆଉ କ'ଣ ସବୁଦିନେ ପଡ଼ିଥିବ କୋଉ ଦୂର ଅପନ୍ତରାରେ ? ବିଶେଷତଃ ତା' ବାପ ନାହିଁ ଯେତେବେଳେ, ଏଇ ସମ୍ପତ୍ତିକୁ ସମ୍ଭାଳିବ କିଏ ? ଆଉ ଏଠି ତା' ରୋଗିଣା ମାଆର ଦେଖାଶୁଣା କରିବେ ଯେତେକ ବାହାର ଲୋକ, ବନ୍ଧୁବାନ୍ଧବ, ସାଙ୍ଗମାଇପେ—ନେତିବୋଉ, ଶୁକୁଟାମାଆ, ଗନ୍ଧିଆ ଗଉଡ଼ର ବୋହୂ, ସୁନ୍ଦରଆଟିଏ, କ'ଣ ତା' ନାଆଁ ତ···? ତା' ଦାଦାମାନଙ୍କ କଥା ଛାଡ଼, ଯେଉଁମାନେ ଖାଲି ଆସନ୍ତି, ଯାଆନ୍ତି, କହନ୍ତି ଯେ, ସେମାନେ ଆଉ ତାଙ୍କ ପିଲାମାନେ ଯେଉଁ ସ୍ୱୀକାର କରିଛନ୍ତି, ତା'କୁ ଛାଡ଼ିଛୁଡ଼ି ଦେଇ ଘରେ ବସିହେବ ନାହିଁ । କିନ୍ତୁ ଇଏ କୋଉ ସ୍ୱୀକାର କରିଛି ? ସେ ତା'ର ଯାହା ଇଚ୍ଛା କରିବ, ତା'କୁ କିଏ ମନା କରିବ ? ପାଗଳାଟାଏ ! କେତେବେଳେ ଥିଏଟର୍ କରିବ, କେତେବେଳେ ପଲିଟିକ୍ସ୍ କରିବ, କେତେବେଳେ କୁହେ ମୁଁ ଲୁହାଛଡ଼ ବିକୁଛି, ପୁଣି କେତେବେଳେ କୁହେ ମୁଁ କୁକୁଡ଼ାଛୁଆ ବିକୁଛି (ବୁଢ଼ାଙ୍କ ଓଠରେ ହସ ପ୍ରସାରିତ ହୁଏ )···ଏଇକ୍ଷଣି କ'ଣ ବିକୁଛି ? ବତକ ଛୁଆ ? ···ତା'ଛଡ଼ା ଦେଖୁନା, ସେମାନେ ଆସିଲାରୁ କେମିତି ମେଳା ଲାଗିଛି ଏଠି ? ମୁହୂର୍ତ୍ତେ ଛାଡ଼ ନାହିଁ । ହେବ ନାହିଁ କେମିତି ? ବୃନ୍ଦାଏ ମହୁକୁ ଭେଳା ଭେଳା ପିମ୍ପୁଡ଼ି । ମୋ ପୁଅଝିଅ, ନାତିନାତୁଣୀ, ଅଣନାତି, ଅଣନାତୁଣୀ (ସବୁ ମିଶି ବୟାଳିଶ ନା ପଞ୍ଚାଳିଶ ?) ସମସ୍ତେ ବୁନ୍ଦାଏ ବୁନ୍ଦାଏ ମହୁ, ମହୁ ନୁହେଁ ଅମୃତ···

ଏହି ସମୟରେ କେବଳ ତାଙ୍କର ହସ ସୁଦୃଶ୍ୟ ହୁଏ ନାହିଁ, ତାଙ୍କର ଖାଲୁଆ ମୁହଁ ଉଦ୍‌ଭାସିତ ହୋଇ ଉଠୁଛି ବୋଲି ମନେ ହୁଏ । କାରଣ ତାଙ୍କ ସୁଖକଳ୍ପନାର ସାମ୍ନାକୁ ଆସେ ବାନ୍ଦର ବିନ୍ଦୁଟିଏ....ଚେପ୍‌ଟା ନାକ, ଦି'ପାଟି ଟିକିଟିକି ଦାନ୍ତ, ଭଙ୍ଗା ଦାନ୍ତ ଜାଗାରେ ଗୋଟିଏ ଶୂନ୍ୟସ୍ଥାନ, ଝିଲି ଝିଲି ହସ, ଘଞ୍ଚ ଭ୍ରୂଲତଳେ କଳା ବଡ଼ ବଡ଼ ଆଖି, ଚୋଖା ଖାଲି ଉତୁରୁଛି, କୁନ୍ଦୁଛି ପଢ଼ି । ଖାଲି ସେଇ ଜଣକ ଥିଲେ ଆମ ଘରଦୁଆର, ବାରଅଗଣା ପୂରିଉଠିବ ! ଆମ ପହିଲି ଦେଖାରେ ସେ କଅଣ କହିଲା ତ ମୋତେ....

ତା'ହେଲେ କ'ଣ ତାଙ୍କ ରାତିନିଦରେ ସେଇ ଜଣକ, ତା' ନାଆଁ ରାଣୀ, ବୟସ ଛଅ ପାଖାପାଖି, ଉଭା ହେଉଥିଲା ତାଙ୍କ ସ୍ୱପ୍ନରେ, ଭାବୀ ସୁଖବିଳାସର ସନ୍ଦେଶ

ପର ? ବିଶ୍ୱବିଦ୍ୟାଳୟ ଦେଖାଚିଏ ପର ? ଏବଂ ସେଇଥିପାଇଁ ବୁଢ଼ା ଏମିତି ହସୁଥିଲେ ତାଙ୍କ ହୃଦରେ ?

ରାତିରେ ଶୋଇଥିଲା ବେଳେ ସିନା ନନ୍ଦବାବୁଙ୍କ ହସକୁ କେହି ଦେଖିପାରୁ ନ ଥିଲେ, ତା' ପରଦିନ ଆରାମ ଚଉକରେ ପଡ଼ି (ସ୍ୱଭାବତଃମେ) ଢୁଲାଇଲା ବେଳେ ତାଙ୍କ ଦିବାସ୍ୱପ୍ନର ହସ ସୁସ୍ପଷ୍ଟ ହୋଇ ଦିଶିଯାଉଥିଲା ଏବଂ ନେଡ଼ବୋଉ, ଶୁକୁଟାମାଆ ଓସେଭର ତା'ଉପରେ ଉଦାର ଓ ସସ୍ନେହ ପରିହାସରୁ ଛୁଟିକାଏ ଛାଡ଼ିଦେବାକୁ ଭୁଲୁ ନ ଥିଲେ । ଯଥା : ଦେଖ ଦେଖ ମ, ବୁଢ଼ା କେମିତି ଢୁଳେଇ ଢୁଳେଇ ହସୁଛନ୍ତି ? କ'ଣ ବୁଢ଼ୀ ମନେ ପଡ଼ୁଛି ? ନା ଟିକି ରାଣୀଟିଏ ଆସି ଗଲାଣି, ସେଇଥିଲାଗି ?

କ୍ରମଶଃ ଉତ୍ତମରୂପେ ଜଣା ପଡ଼ିଲା ଯେ, ରାଣୀ ତା'ର ବଡ଼ଜେଜେଙ୍କୁ ଭୂତ ବୋଲି କହିଲେ କହିଥିବ, କିନ୍ତୁ ତାଙ୍କୁ ଡରଯାଇଥିବାର ପ୍ରଶ୍ନ ଉଠୁ ନାହିଁ । କାହିଁକିନା ଦେଖାଗଲା ଯେ :

—ସେ ତାଙ୍କ ଆରାମ ଚଉକିର ପାଖରେ ପଡ଼ିଥିବା ବେତ ମୋଡ଼ା ଉପରେ ବସୁଛି, ଉଠୁଛି, ତା' ସାଙ୍ଗରେ ଖେଳୁଛି ଓ କୁରୁକୁରୁ ହୋଇ ହସୁଛି । ଏଣେ ବୁଢ଼ା ଗଡ଼ରଗଡ଼ର ହୋଇ କ'ଣ କହି ଯାଉଛନ୍ତି, ସତେ ତା'କୁ ଶୁଣେଇଲା ପରି ।

—ରାଣୀ କୋଉଠୁ ଗୋଟାଏ ପୋଇଗୁଲିଆ ରଙ୍ଗର ଅନାବନା ଫୁଲ, ହତା ବାଡ଼ର ଫୁଲ କି କଅଣ, ଧରେଇଦେଲା ବୁଢ଼ାଙ୍କ ହାତରେ । ଆଉ ସେ ତାକୁ ଥର ଥର ପାଞ୍ଚ ଆଙ୍ଗୁଳିରେ ମୁଠେଇ ଧରି ତାଙ୍କ ଧୋକଡ଼ା ଜାମାର ପକେଟ୍‌ରେ ପୂରେଇବାକୁ ଚେଷ୍ଟା କଲେ, ଯେମିତିକି ପାଖୁଡ଼ା କେଇଟା ବାହାରକୁ ଦିଶିବ ।

—ନନ୍ଦବାବୁ ରାଣୀକୁ ତାଙ୍କ ଥାଳିରୁ ଫାଳେ ମାଛ ଚପ୍ ଖୋଇବା ପାଇଁ ଅସଫଳ ହେଲେ ସତ, କିନ୍ତୁ ରାଣୀ ଓଲଟି ନିଜ ଥାଳିରୁ ଖାଦ୍ୟବିଶେଷ ଆଣି ଥୋଇ-ଦେଲା ତାଙ୍କ ପାଖରେ । ସତେକି ଇଏ କି ଗୋଟାଏ କଉତୁକିଆ ଖେଳ ।

—ବୁଢ଼ା ରାଧୁଆଘର କମ୍ବା ଶୋଇବା ଘରକୁ ଯିବା ପାଇଁ ଆରାମ ଚଉକରୁ ଉଠି ଠିଆ ହେଲା ବେଳକୁ ରାଣୀ ଆସି ପହଞ୍ଚିଯାଏ ସେଠି, ଯଦି ତା' ଆଖିରେ ପଡ଼େ । ଏବଂ ବୁଢ଼ା ହସି ହସି ତା'ର ଦୁଃସାହସୀ ସାହାଯ୍ୟ ସ୍ୱୀକାର କରନ୍ତି, ଅନ୍ତତଃ ସେହି ପ୍ରକାର ଭାବ ଦେଖାନ୍ତି, ଗ୍ୟକରଟୋକା ଦଳେଇ ହାଜର ହେବାଯାଏଁ ।

ଜଗନ୍ନାଥ ତଥା ଲୀନା କ'ଣ ଏହିସବୁ ଦୃଶ୍ୟ ଦେଖୁ ନ ଥିବେ ? ଅବଶ୍ୟ ଦେଖୁଥିଲେ । ଏବଂ ତଦ୍ଦ୍ୱାରା ଜଗନ୍ନାଥର ବିଶ୍ୱାସ ହେଲା ଯେ, ଲୀନା ବୁଝୁଥିବ ଯେ, ତା' ଦୁଃସ୍ୱପ୍ନରୂଥିଓର ଭିକ୍ଷୁଡ଼ି ଯାଇଛି ! ଏଠି ନ ରହିବାର ସର୍ବପ୍ରଧାନ ବାହାନା ମାଡ଼ି ଖାଇ ଯାଇଛି । ହେଲେ ଲୀନା ସାମ୍ନାରେ ସେ ତା'ର ବିଜୟୋଚ୍ଛାସକୁ ଚପେଇ ରଖୁଥିଲା । ନିଜକୁ କହୁଥିଲା ଯେ ମୁଁ ନର୍ଣ୍ଣିଆତ୍ମକ, ବିଧାତ୍ମକ ସ୍ୱାମୀ ହୋଇପାରେ, କିନ୍ତୁ ଏତେ ନିଷ୍ଠୁର ନୁହେଁ ।

ନିଷ୍ଠୁର ନୁହେଁ । ମୁଁ ତା' ଉପରେ ମୋର ନିର୍ଣ୍ଣୟକୁ ଲଦି ଦେବାକୁ ଚାହେଁ ନାହିଁ । କିନ୍ତୁ ସେ ଶିକ୍ଷିତା, ବୁଦ୍ଧିମତୀ । ସେ କାହିଁକି ବୁଝିବ ନାହିଁ ଯେ···ଏଠି ତା'ର ବ୍ୟକ୍ତିତ୍ବରେ ଆଞ୍ଚ ଲାଗିବ କି ସଦ୍ବରଣୀ ସୁଖ ରହିବ ନାହିଁ (ଅବଶ୍ୟ ଟିକିଏ କମିଯିବ, ଏବଂ କମିଗଲେ ଭଲ ), ଏଭଳି ଆଶଙ୍କାର କାରଣ ନାହିଁ ? ବରଂ ଏଠି ସେ ରାଣୀ ମହୁମାଛି ପରି ଅଏସ୍ କରିବ । ମୋ ବୋଉ ତ ରୋଗିଣା, ଦୁର୍ବଳିଆ, ମାଈ ନୁହେଁ କି ଗାଈ ନୁହେଁ । ବାକି ଯେତେକ କାରବାର ହେଉଥାଆନ୍ତି ଦିନସାରା, ଘାଲୁବାଲୁ ହୁଅନ୍ତି, ସମସ୍ତେ ତ ବାହାର ଲୋକ—ସାହାର କି କୁଟୁମ୍ବର । ତାଙ୍କୁ ନେଇ ତା'ର ମୁଣ୍ଡ ବିଥଉଛି କାହିଁକି ? ଉନି-ଯୋଡ଼ା ଦାଦାଖୁଡ଼ୀ ଓ ତାଙ୍କ ପରିବାରଙ୍କ କଥା ଛାଡ଼ିଦିଅ, ସେମାନେ ଦି'ଦିନିଆ । ଆଉ ରହିଲେ ଜେଜେ । ଅକର୍ମଣ୍ୟ । ହେଲେ ଏକ ବିସ୍ମୟକର ଅନୁଷ୍ଠାନ । ଖାନ୍‌ଦାନର ବିରାଟ ଖୁଣ୍ଟ । ଗୋଟାଏ ଖୁଣ୍ଟ ଦରକାର ନାହିଁ ଆମର ? ବିଶେଷତଃ ତା'ର ? ଓହୋ ରହିଗଲା ଯେ, ଲୀନା ପିଲାଦିନୁ ବାପ ମାଆଙ୍କୁ ହରେଇଛି, ପର ଘରେ ବଢ଼ିଛି ।

ହଁ, ଆମର ଏଇ ପ୍ରସିଦ୍ଧ ଗନ୍ଧ । ଲୀନୁ, ତୁମେ ତାକୁ ହସି ଉଡ଼େଇ ଦେଇ ପାରୁ ନାହଁ ? ଦେହଯୁଦ୍ଧା କରିପାରୁ ନାହଁ ? କିଓ ମନେ ନାହିଁ, ପହିଲେ ପହିଲେ ମୋ ଦେହ କେମିତି ଗନ୍ଧଉଥିଲା ତୁମକୁ, କାହିଁକିନା ତେଲ ମାଖି ଗାଧୋଇବା ମୋ ପିଲାଦିନର ହେଲେ ସେଇ ଦେହ ତୁମର ବିଶିଷ୍ଟ, ଅନ୍ତରଙ୍ଗ, ହୁଏତ ଉତ୍ତେଜକ ହେଲା କି ନାହିଁ ?

ମୋଟ ଉପରେ ତୁମେ ଏମିତି ଗୁମ୍‌ସୁମ୍ ହୋଇ ରହୁଛ କାହିଁକି କହିଲ ? କୁଆଡ଼େ ଗଲା ତୁମର ଘଡ଼ିକୁ ଘଡ଼ି ବଦଳୁଥିବା ରଙ୍ଗ, ଭାବତରଙ୍ଗ ? ଶୁଣ, ମୁଁ ଏବେଠୁଁ ଏଠି ରହିଯିବ, ତା' ନୁହେଁ । ତୁମେ ଜାଣିଛ ଯେ, ସେଠି କେଇଟା କାମ ଛୁଣ୍ଡେଇ ଆସିବାକୁ ପଡ଼ିବ । ତା'ଛଡ଼ା ଯେତେକ ଆସବାବପତ୍ର ଅଛି, ତାକୁ ବିକି ଭାଙ୍ଗି··· । ଉଃ ! ଲୀନୁ, ତୁମେ ଟିକିଏ ହସିବନି ମୋ ଆଡ଼କୁ ଚାହିଁ ? ତା'ହେଲେ ସିନା ମୁଁ ତୁମକୁ ପ୍ରାଞ୍ଜଳଭାବରେ ବୁଝେଇ ଦେଇ ପାରିବି ଯେ, ତୁମେ ଏଠି ସୁଖରେ ରହିବ, ଏଥିରେ ସନ୍ଦେହ ନାହିଁ !

ହେଲେ ଦିନ ପରେ ଦିନ ବିତିଗଲା । ଏବଂ ଲୀନାର ବିଷାଦ ଉତ୍ତରୋତ୍ତର ଘନ ଓ ପ୍ରତିଷ୍ଠିତ ହେଲା । କ୍ରମଶଃ ଜଗନ୍ନାଥର ଆଉ ଗୋଟାଏ ଭୟ ହେଲା ଯେ, ଲୀନା ଧୀରେ ଧୀରେ ଦୂରେଇ ଯାଉଛି, ଭର୍ ପାର୍କ୍‌ର ଏକୁଟିଆ କୋଣକୁ । ମନେହେଉଛି ଯେ, ଉପରକୁ ଯେତେ ହେଲମେଳ ହେଲେ ମଧ୍ୟ ସେ ତା'ର ବସି ରହିବ ସେଠି । ଶୁଖିଲା ହୋଇ, ସ୍ବାଧୀନ ହୋଇ । କେହି ତାକୁ ଉଠେଇ ପାରିବେ ନାହିଁ ସେଠୁଁ ।

ଏଇ ଭୟଟା ଘାରିଲା ତା'ର ଅଗ୍ରଜକୁ । ମହାନଗରୀର ଧାଁଧପଡ଼ରେ ହାଲିଆ ହୋଇଯିବାର, ସେମାନଙ୍କ ପଛରେ ପଡ଼ିଯିବାର ଭୟ ଆଡ଼କୁ । ଯାହାର ବଳ ପାଇ ଏଇ ଏଇ ସ୍ବଦେଶର ଘର- ସହର ଡାକୁଛି ଜଗନ୍ନାଥକୁ, କହୁଛି ଆ'ରେ ପୁଅ ଫେରିଆ । ଦେଖେ, ଏଠି କେମିତି ସଫଳତା ତାସ ପାଲି ପକେଇଛି ବିଫଳତା ସାଙ୍ଗରେ, ରାସ୍ତାକଡ଼ରେ । ଆଉ ବୁଲା କୁକୁରଟା ତାଙ୍କ ପାଖରେ ଥାଇ ଖୁସ୍ ଖୁସ୍ ହେଉଛି, ଧୂଳି

ଘୁଞ୍ଚୁଛି ସମସ୍ତଙ୍କ ଉପରେ, ଶାନ୍ତିବାରି ଛିଞ୍ଚିଲା ପରି । ଏଠିକା ଧୂଳିମାଟିର ଗୋଟିଏ ବୋଲି ରଙ୍ଗ, ଏଠିକା ହାଉଆରେ ଗୋଟିଏ ବୋଲି ଗନ୍ଧ – ଜୀବନକୁ ନେଇ ଜୀଇଁବାର । ଯେମିତି ପାଉଛ ସେମିତି । ଅତଏବ ମୁଁ ଯାହା, ତୁ ସେଇଆ, ସିଏ ସେଇଆ, କୁକୁର ବି ସେଇଆ···

ହେଲେ ମୀନାଜନିତ ଏଇ ନୂଆ ଉପୁଟା ତରିଟି ସ୍ୱୀହିଁଲା ପୁରୁଣାକୁ । ଜଗନ୍ନାଥ ଏମାନଙ୍କର ବାଦବୁଦିଆକୁ କେତେଦୂର ଠାଉରେଇ ପାରୁଥିଲା କହି ହେବ ନାହିଁ । ତେବେ ହସ୍ତାଏ ନ ଯାଉଣୁ ତା'ର ନିଶ୍ୱାସ ବୁଗୁ ବୁଗୁ ହୋଇ ବାନ୍ଧିବାକୁ ଆରମ୍ଭ କଲା....ମୀନାକୁ ନେଇ କ'ଣ କରିବ ? ଅନ୍ୟମାନଙ୍କ ସାଙ୍ଗରେ ଲେସି ହୋଇଯିବ ସିନା, ମୋର ଏଇ ଏକାନ୍ତ ଅନ୍ୟଟିକୁ ଛୁଇଁବ କେମିତି, ପାଇବ କେମିତି ?

···ସପ୍ତମ ଦିନର ରାତି । ଝରକାଗୁଡ଼ାକ ଅବଶ୍ୟ ଖୋଲା ଥିଲା । କିନ୍ତୁ ଜଗନ୍ନାଥ ଆଲୁଅ ଲିଭେଇବା ପାଇଁ ତରତର ହେଲା ନାହିଁ । ତା'ର ଇଚ୍ଛା ହେଲା ଯେ, ସେ ଆଜି ଯେମିତି ହେଲେ ମୀନାକୁ କହିବ, ସବୁ କଥା ବୁଝେଇ କରି କହିବ, ଏବଂ ସେଥିପାଇଁ ତା'ର ମୁହଁକୁ ଦେଖିବା ଦରକାର ଯେ, ବିଷାଦର ଅବଗୁଣ୍ଠନ କେମିତି ଖୋଲି ଖୋଲି ଯାଉଛି । ବୋଧହୁଏ ତାକୁ ଆହୁରି ଖୋଲି ଦେବାକୁ ପଡ଼ିବ ନିଜ ହାତରେ ।

ମୀନା ସାଙ୍ଗରେ ଶରିଦର କଥାଭାଷା କରି ହେଲା ନାହିଁ ବିଶେଷ । କିନ୍ତୁ ଦୁହେଁ ପରସ୍ପରର ମୁହଁକୁ ଚାହୁଁଥିଲେ, ବାରମ୍ବାର ଚାହୁଁଥିଲେ, ବୁଝାମଣାର ବାଟ ଖୋଜିଲା ପରି । ତେଣୁ ଜଗନ୍ନାଥ ଆଲୁଅ ଲିଭେଇଦେଲା, ଯେମିତିକି ତଥାକଥିତ ବ୍ୟକ୍ତିତ୍ୱର ଚେହେରା ଅନ୍ତରାୟ ହେବ ନାହିଁ, ସେଇ ପୁରୁଣା ଦେହର ବାଟ ଦେଇ ଯିବା ପାଇଁ । ଯୋଉଠିକି ହେଲେ ।

ମିଳନ ପୂରା ହୋଇ ନଥିଲା । ହେଲେ ଝରକା ଭିତର ଦେଇ ଯେଉଁ ପବନ ବହି ଆସୁଥିଲା, ସେଥିରେ ଦୁର୍ଗନ୍ଧ ଥାଉ ନଥାଉ, ଯଥେଷ୍ଟ ଉନ୍ମାଦନା ଥିଲା । ସତେକି ଏଇ ହେଲା ଶେଷ ଲଢ଼େଇ, ଅନ୍ତିମ ଆଲାପ, ଉପାସନା, ଏହା ପରେ ଏପାଖ, ନ ହେଲେ ସେପାଖ....

ଏଇ ସମୟରେ ଅନୁଭବର ସ୍ଥିତି ଓ ସ୍ଥାପନା ହଠାତ୍ ଦି'ଖଣ୍ଡ ହୋଇଗଲା । ରାଣୀ ଚିଲ୍‌ଚିଲେଇ ଉଠିଲା । ସେଇଠୁ ପାଟି କରୁଥାଏ--"ନାଇଁ—ନାଇଁ—ନାଇଁ—"

ରାଣୀକୁ ସାନ୍ତ୍ୱନା କରି ଆଲୁଅ ଜଳେଇ ପୁଣି ଯେତେବେଳେ ସେମାନେ ଚାହିଁଲେ ପରସ୍ପରକୁ, ତାଙ୍କ ଚାହାଣୀରେ ଗୋଟାଏ ପ୍ରଶ୍ନ ଥିଲା । ହୁଏତ ହାସ୍ୟାସ୍ପଦ, ସେଇଥି ପାଇଁ ପସ୍ତୁଲ ହେଉ ନାହିଁ, ହେଲେ ତାକୁ ଆଗ୍ରାହ୍ୟ କରି ହେଉ ନାହିଁ । ଏତେଦିନ ପରେ ରାଣୀ ଆଜି କାହିଁକି, ପୁଣି ଠିକ୍ ଏଇ ସମୟରେ, ଆମେ ଏକାଠି ହେବାବେଳେ··· ।

ମୀନା ହିଁ ପ୍ରଥମେ ଉତ୍ତର ଯୋଗାଇଲା ସ୍ୱାମୀକୁ ଆଶ୍ୱାସନା ଦେଲା ପରି । ଅଳ୍ପ ବହୁତେ ବିଜୟୀର ହସ ମଧ୍ୟ ଖେଳୁଥିଲା ତା' ଓଠରେ । କହିଲା—"ବ୍ୟସ୍ତ ହୁଅ ନାହିଁ । ସେ ଆମକୁ ସହି ପାରିଲା ନାହିଁ ତା' ନୁହେଁ । ଆମର କିଛି ଦୋଷ ନାହିଁ । ଦୋଷ

ହେଉଛି ତୁମ ଏଠିକା ଜଳବାୟୁର, ଯେଉଁଥିରେ ମିଠା ଫଳ ପାଚିଯାଏ ପାଚିବା ଆଗରୁ । ଜେମାଦେଇ କାନ୍ଦଣାରେ ଶୋକ ବୁହେ ନାହିଁ, ଖାଲି କାନ୍ଦଣା । ଆଉ ପ୍ରେମମିଳନରୁ ପ୍ରେମ ଝଡ଼ିଯାଏ, ରହିଯାଏ କେବଳ ସେକ୍ସ, ଦାନ୍ତିଗିଜଡ଼ା ସେକ୍ସ । ସେଇ ରାଣୀକୁ ଡରେଇଥିବ, ହୁଏତ ଅଚେତାରେ....”

ତା’ ପରଦିନ ଜଗନ୍ନାଥ ଘୋଷଣା କଲା ଯେ, ସେ ଟିକେଟ କରି ଆଣିଛି । ଆସନ୍ତା ସୋମବାର ରାତିରେ ଟ୍ରେନ୍ ଧରିବ, ଲୀନା ଓ ରାଣୀଙ୍କୁ ସାଙ୍ଗରେ ନେଇ ।

ତା’ର ମନେ ନଥିଲା ଯେ ଆଗରୁ କେବେ ଜେଜେଙ୍କୁ କହିଥିଲା ଯେ, ସେ ଫେରି ଆସିବ । ହେଲେ ସେ ପୁଣି ଥରେ ସେଇ କଥାଟାକୁ ପାଟିକରି କହିଲା—“ମୁଁ ଫେରି ଆସିବି ଜେଜେ, ନିଶ୍ଚୟ ଫେରି ଆସିବି, ବୁଝିଲ ?”

କହିବା ବାହୁଲ୍ୟ ଯେ, ଜେଜେ ତା’ର ପ୍ରତିଶ୍ରୁତିକୁ ଶୁଣିପାରି ନଥିଲେ । ଶୁଣିଥିଲେ ବି କେତେଦୂର ଆଶ୍ୱସ୍ତ ହୋଇଥାଆନ୍ତେ ଭଗବାନଙ୍କୁ ଜଣା । ହେଲେ ସେ ବୁଝିଲେ ଯେ, ଏମାନେ ଯାଉଛନ୍ତି । ଏବଂ ବିଦା ହେଲା ବେଳେ ରାଣୀର ଦେହକୁ ଆଉଁସି-ବାକୁ ଯାଇ ସେ କେବଳ ଗୋଟାଏ ପଦକୁ କହି ଚାଲିଲେ, ସତେକି ସେ ତାଙ୍କ ଜୀବନ ନିଃଶ୍ୱାସର ଶବ୍ଦ—ହଉ....ହଉ....ହଉ....ହଉ....ହଉ....ହଉ....

ଫାଟକ ପାର ନ ହେଉଣୁ ରାଣୀ ହସିଲା ଖିଲି ଖିଲି ହୋଇ ଓ କହିଲା ତା’ ଡାଡ଼ି-ମମ୍ମିଙ୍କୁ—“ଏ ରିଏଲ ଫନ୍ନି ଘୋଷ୍ଟ !” ଅର୍ଥାତ୍ ବେଶ୍ ମଜାର ଭୂତଟିଏ ।



# ମଣିଙ୍କ ମହିମା

ଆଜିର ସକାଳଟାକୁ ଭଲ ପାଇବାର ଅନେକ କାରଣ ଥିଲା । ପ୍ରଥମ କଥା, ଗତ କେଇଦିନର ଅବିଜିଆ ମେଘବର୍ଷା ପରେ ଆଜି ସୂର୍ଯ୍ୟଙ୍କ ଆଲୁଅ ସତରେ ଝଲମଲ ଦିଶୁଛି । ଆଲୁଅଖଣ୍ଡିକ ସାମନା ଗୁଲିଆ ଉପରେ ମାଡ଼ିଥିବା ପାଣିକଖାରୁର ଭେସେଡ଼ା ରଙ୍ଗକୁ ଉତ୍ତମରୂପେ ଚହ୍ଲେଇ ଦେଉ, କି ପାଖରେ ଶୋଇଥିବା ପତ୍ନୀ ସୌଦାମିନୀଙ୍କ କଳାବାଳରେ ଥିବା ଚକଡ଼ାଏ ରଙ୍ଗଛଡ଼ା ଧଳାକୁ ଚହ୍ଲା ପକେଇ ଦେଉ, ତା'ର ସେହିପ୍ରକାର ଦୁଷ୍ଟାମିକୁ ଧରିବାର ନୁହେଁ । ତା'ଛଡ଼ା ମେଘୁଆ ପାଗର ଗୋଟାଏ ବିଶେଷ ଅସୁବିଧା ଅଛି ଚନ୍ଦ୍ରମଣିବାବୁଙ୍କ ପାଇଁ । କାହିଁକିନା ତାଙ୍କ ଦେହଟା ଲେସେମା ଲେସେମା ବୋଲି ସର୍ବେ ଜାଣନ୍ତି । ବଞ୍ଚିଥିଲା ବେଳେ ତାଙ୍କ ବୃଦ୍ଧ ଅକର୍ତ୍ତିବ୍ୟ ବାପା କହି ଉଠୁଥିଲେ ବେଳେ ବେଳେ, ଯେତେବେଳେ ଚନ୍ଦ୍ରମଣି ବାବୁ ମୁଣ୍ଡରେ ମାଙ୍କଡ଼ ଟୋପି, ଗଳାରେ ମଫଲର୍ ଅବା ଦେହରେ ଶାଲର ପସ୍ତକାସ୍ଥା ଦେଖାଇ ଯାଆନ୍ତି ସେଇ ବାଟେ—"ଆମ ଚନ୍ଦରିର ଲେସେମା ଧାତୁ । ଆଉ କାହାର ସେମିତି ନୁହେଁ, ପରିଆର ନୁହେଁ କି ଧନିଆର ନୁହେଁ । ନନ୍ଦର ବି ନୁହେଁ । ଲେସେମା ଧାତୁ···।" କଥାଟାକୁ ଦୋହରେଇ ହେଉଥିଲେ, ସତେକି ଇଏ ତାଙ୍କ ମହିଆଁ ପୁଅର ଏକ ବିରାଟ ବୈଶିଷ୍ଟ୍ୟ । ସେତେବେଳେ ଚନ୍ଦ୍ରମଣି ବାବୁ ମନେ ମନେ ଅନ୍ତର ଚଡ଼ି ଉଠନ୍ତି ବାପାଙ୍କ ଉପରେ ଓ ତାଙ୍କ ମୁହଁର ଚେହେରା ଆନ୍ତର କ୍ଲିଷ୍ଟ ଓ କୁଞ୍ଚିତ ଦେଖାଯାଏ । ଏହେତୁ ମେଘୁଆ ପାଗ କଟିଗଲା ପରେ, ସୂର୍ଯ୍ୟ ଚେଇଁ ଉଠିଲା ପରେ, ଚନ୍ଦ୍ରମଣିବାବୁଙ୍କୁ ସେହିପ୍ରକାର କୌଣସି ଆଚ୍ଛାଦନର ଆଶ୍ରୟ ନେବାକୁ ପଡ଼ିବ ନାହିଁ, ଏବଂ ତଦ୍ଦ୍ୱାରା ସାଧାରଣ ବସ୍ତ୍ର ପିନ୍ଧିଥିବା ଅନ୍ୟମାନଙ୍କର ଦୃଷ୍ଟିକଟୁ ହେବାକୁ ପଡ଼ିବ ନାହିଁ କି ସ୍ୱର୍ଗୀୟ ବାପାଙ୍କର ସେଇ ଘୋଷଣାବିଶେଷର ସ୍ମୃତିରେ ସୂଚୀବିଦ୍ଧ ହେବାକୁ ପଡ଼ିବ ନାହିଁ । ଏହି ଅନୁକୂଳ ପରିସ୍ଥିତିଟିକୁ ଊଣା କରି ହେବ କି ? ଦ୍ୱିତୀୟରେ ଗତକାଲି ରାତିରେ ସେ କ'ଣ ଗୋଟାଏ ସ୍ୱପ୍ନ ଦେଖିଥିଲେ, ସ୍ୱପ୍ନଟା ଠିକ୍ ଠିକ୍ ମନେ ପଡ଼ୁନାହିଁ, ହେଲେ ନିଦ ଭାଙ୍ଗିଲା ପରେ ତାଙ୍କୁ ଭଲ ଲାଗୁଥିଲା ବୋଲି କହିଲେ ଭୁଲ୍ ହେବ ନାହିଁ ।

ସର୍ବୋପରି, ସ୍ୱପ୍ନ ହେଉ କି ଜାଗ୍ରତ, ତାଙ୍କ ଭଲ ଲାଗିବାରେ ବୋଧହୁଏ ଗୋଟାଏ ଅନ୍ତର୍ନିହିତ କାରଣ ଥିଲା । ବର୍ତ୍ତମାନ ସେ ତାଙ୍କ ଘରବାହାରେ ଅଛନ୍ତି କିଛିଦିନ ହେଲା । ଝିଆରି ନନ୍ଦିତା ଓରଫ୍ ଟୁକୁନିର ଘରେ ଏବଂ ଏହି ବିଦେଶ ସର୍ବସାଧାରଣ ନୁହେଁ । ଏ ହେଉଛି ତାଙ୍କର ଜନ୍ମସ୍ଥାନ ବାଲେଶ୍ୱର । ଯେଉଁଠାକୁ ସେ ଆସିଛନ୍ତି କାହିଁ କେତେ ବର୍ଷ ପରେ ! ତେଣୁ ସେଥିରେ କଣ ମମତ୍ୱର ଓଜନିଆ ଭାବ, ବାଲ୍ୟସ୍ମୃତିର ଜିକିଜିକି

ଅବା ସେହିପ୍ରକାର କିଛି ପ୍ରୀତିକର ଅନୁଭବ ନ ଥିବ, ଯାହା ତାଙ୍କ ସୁଖସ୍ୱପ୍ନକୁ ପ୍ରରୋଚିତ କରୁଥିବ ବୋଲି ଆଶା କରାଯାଏ ?

ହଁ, ଚନ୍ଦ୍ରମଣିବାବୁ ଏଇ ସକାଳଟାକୁ ନିଶ୍ଚୟ ଭଲ ପାଉଥିଲେ ।

କିନ୍ତୁ ପ୍ରଶ୍ନ ହେଉଛି ଯେ ସକାଳକୁ ଭଲପାଉଥିବାର ତଥା ନିଜକୁ ଭଲ ଲାଗିଥିବାର ଲକ୍ଷଣକୁ କେହି ହେଲେ ଦେଖି ପାରନ୍ତି କି ? ହୁଏତ ଦେଖିପାରି ଥାଆନ୍ତେ ତାଙ୍କ ଶଯ୍ୟାସଙ୍ଗିନୀ, କିନ୍ତୁ ସେ ତ ନିଦରୁ ଉଠି ନଥିଲେ ସେତେବେଳକୁ । ଅବା ଦେଖି ପାରିଥିବ ସୂର୍ଯ୍ୟଙ୍କର ସେଇ ଅଲୁଅ କଣ୍ଢକ । କାହିଁକିନା ନିତ୍ୟକର୍ମସାରି ଦାଣ୍ଡଘର ଚଉକିରେ ବସି ସକାଳ ଚା'କୁ ଅପେକ୍ଷା କରିଥିଲାବେଳେ ଯାହାର ଦୃଷ୍ଟି ପଡ଼ିଥିବ ତାଙ୍କ ମୁହଁ ଉପରେ, ତା'କୁ ସେଥିରେ କିଞ୍ଚିତ୍‌ମାତ୍ର ଭୂମି କମ୍ପ ଭାବ ଅସ୍ୱାଭାବିକ ଲାଗି ନ ଥିବ । ସେଇ ସବୁଦିନିଆ ଚନ୍ଦ୍ରମଣି ମାହାନ୍ତି । ପଚାଶ ବର୍ଷିଆ ବୟସର ଅନୁପାତରେ ଶାଢମତ ବୁଢ଼ା ଦେଖାଯାଆନ୍ତି । ବାଳତକ ପୁରାପୂରି ପାଚି ଯାଇ ନ ଥିଲେ ମଧ୍ୟ ମୁହଁରେ ଅତ୍ୟଧିକ ଗାର । ସେଇ ଚପା ଓଠ, ତଳ ଓଠ ଟିକିଏ ନେସେଇ ଯାଇଛି । କପାଳରେ ସେଇ କୁଞ୍ଚନ । ଏବଂ ଗ୍ଲେଟ ଆଖିର ସ୍ୱଚ୍ଛାଣୀରେ ସେଇ ପ୍ରଳମ୍ବିତ କ୍ଲେଶ, ଅବିଶ୍ୱାସୀ ସଂସାରଟାକୁ ବାଧ୍ୟ ହୋଇ ଦେଖିଲାପରି । ହେଲେ ଏହି ସମସ୍ତ ଏବଂ ନିତ୍ୟନିଯୁକ୍ତ ପରିପ୍ରକାଶକୁ ପିତାଖିଆପଣ ବୋଲି କହି ହେବ ନାହିଁ । କାରଣ ପିତା ଖାଇଲେ ମୁହଁଟା ହଠାତ୍ ବିଚକଟିଆ ହୋଇଯାଏ ସିନା, ସେଇ ବିସ୍ୱାଦୁର ଧାରଣା କଣ ସେଠି ବସା'ବାନ୍ଧି ରହିଥାଏ ସବୁଦିନକୁ ? ତା'ଛଡ଼ା ସେଥିରେ କାହିଁ ଉକ୍ତତାର ସ୍ପଷ୍ଟତା ? କିମ୍ବା କେଉଁ ଏକ ଅତ୍ୟନ୍ତ, ହୁଏତ ବିକୃତ, ଉଚ୍ଚମନ୍ୟତା ? ନା, ତା'କୁ ଠିକ୍ ଏଇଆ ବୋଲି କହିହେବ ନାହିଁ ଅନ୍ତତଃରେ । ଆଜ୍ଞା, ବିସ୍ୱାଦୁର ପର୍ବତରେ ସିନା ପତାକାଟିଏ ପୋତି ଦେଇ ହେବ ଚଟ୍‌କିନି, ବିରାଗୀ-ବିଦ୍ୱେଷୀ ଉପତ୍ୟକାକୁ କ'ଣ ସହଜେ ଆବୃତ ହେବ ?

ଯାହାହେଉ ଆଜିର ପ୍ରଭାତରେ ମଧ୍ୟ ଚନ୍ଦ୍ରମଣି ବାବୁ ତାଙ୍କ ସ୍ୱାଭାବିକ ଗାମ୍ଭୀର୍ଯ୍ୟକୁ ( ଅର୍ଥାତ୍ ଯାହାକୁ ସେ ଗାମ୍ଭୀର୍ଯ୍ୟ ବୋଲି ମନେ କରନ୍ତି, ସେଇ ମୁଦ୍ରାଟିକୁ ) ପିନ୍ଧି କରି ବସିରହିଛନ୍ତି । ଅନେଇଛନ୍ତି ବାଲେଶ୍ୱର ଉତ୍ତରଣିର, ତେଣୁ ଭିନ୍ନ ଦେଶୀୟ ଦାଣ୍ଡଅଗଣା ଏବଂ ରାସ୍ତାର ପରିପାର୍ଶ୍ୱକୁ । ସକାଳ ଚା' ଖାଇବାର ଟାଇମ୍ ଗଡ଼ି ଗଲାଣି । କିନ୍ତୁ ସେଥି ଯୋଗୁଁ ସେ କାଳେ ରାଗି ଉଠିବେ, ସେ ଆଶଙ୍କା ନାହିଁ । ଆଦୌ ନାହିଁ । କିଏ ତାଙ୍କ ନିଜ ଘର ଲୁହେଁ, ଝିଅଘର, ସେଇଥିପାଇଁ ଏଇ ସଂଯମ, ସେକଥା ଲୁହେଁ । ନିଜ ଘରେ ମଧ୍ୟ ସେ କେବେହେଲେ କ୍ରୋଧରେ ଫାଟି କରି ଉଠିଛନ୍ତି, ହାତଗୋଡ଼ ଛନ୍ଦାଛନ୍ଦି ହୋଇଛନ୍ତି, ଅଶ୍ଳୀଳ ଉଚ୍ଚାରଣ କରିଛନ୍ତି, କିମ୍ବା ଅନ୍ୟ କୌଣସି ଭାବର ତେଜ ଦେଖାଇଛନ୍ତି ବୋଲି କେହି କହି ପାରିବ ନାହିଁ । ଅପରପକ୍ଷେ ତାଙ୍କ ଆଡ଼ୁ କେବେ ଉଚ୍ଛ୍ୱସିତ ଠୋ' ଠୋ' ହସ ବି' କେହି ଶୁଣି ନ ଥିବ । କଦବା କ୍ୱଚିତ୍ ସୌଦାମିନୀଙ୍କ ସାଙ୍ଗରେ କଳିକଜିଆ ? ଛିଃ, ଛିଃ, ସେ ପ୍ରଶ୍ନ ଉଠୁ ନାହିଁ । ଘରେ ପରିବାରବର୍ଗ ଛଡ଼ା ଯେତେକ ଚାକରବାକର । ପୁଣି କାହାର ବି'

କାନ ଅଛି । ତେଣୁ ଚନ୍ଦ୍ରମଣିବାବୁଙ୍କପରି ଲୋକ ସେଭଳି ଏକ ମୂର୍ଖଆଚରଣ କରିବେ ନାହିଁ, ଏହା ନିଃସନ୍ଦେହ । ଏପରିକି—ଧରନ୍ତୁ ସତକୁ ସତ କେହି ଜଣେ କାନ୍ଥରେ କାନ ଦେବ, ବନ୍ଦ କବାଟର ଫାଙ୍କ ବାଟେ ଅନେଇବ, ତାଙ୍କ ଅନ୍ତରଙ୍ଗ ଦାମ୍ପତ୍ୟର ଆଭାସ ପାଇବା ପାଇଁ । ଏବଂ ସ୍ୱତଃସିଦ୍ଧରେ । ତଥାପି ସେ ଯେ କିଛି ଅସମ୍ଭାଳ ଧ୍ୱନି ଶୁଣିବାକୁ ପାଇବ, ପ୍ରେମର ଅଥବା ଘୃଣାର, ଏବଂ ଅନୁରୂପ ଅସମ୍ଭାବିତ ଦୃଶ୍ୟଟିଏ, ଦେଖିବ, ସେଭଳି ଆଶା ସୁଦୂରପରାହତ । ହୁଏତ କେବେ କେମିତି ଦେଖିବ-ଶୁଣିବ ଗୋଟାଏ ଅଶ୍ଳୀଳ ଛନ୍ଦାଛନ୍ଦିର ନୀରବତା । ବାସ୍, ସେତିକି ମାତ୍ର । ମୋଟ ଉପରେ, ଚେଷ୍ଟା ଥିଲେ ବେଳେ ସେ କଦାପି ତାଙ୍କର ଗାମ୍ଭୀର୍ଯ୍ୟରେ ଆଞ୍ଚ ଲଗେଇବାକୁ ଦିଅନ୍ତି ନାହିଁ, ତାଙ୍କର ଏଇ ସ୍ୱଗୁଣର ଗାରିମା ଅନସ୍ୱୀକାର୍ଯ୍ୟ । ଆସିଲେ ଆପୁ ଗୋଟାଏ ନୂଆ ଅସନ୍ତୋଷ ସ୍ୱୀପିଲଙ୍କ ବ୍ୟବହାରକୁ ନେଇ, ଅବା ଗୋଟାଏ ନୂଆ ବିରକ୍ତି ବାପାମାଆ ଭାଇ ଭଉଣୀ ଓଗେର, ତାହାଁ ସମାଜକୁ ନେଇ, ସେହେତୁ ହୁଏତ ଗୋଟାଏ ନୂଆ ଫାଟ ଦେଖା ଦେବ ସେଇ ବାଗ୍ମୀ ଉପତ୍ୟକାରେ— ଆଉ କ'ଣଟା ହେବ ? ତା' ବୋଲି କ'ଣ ସେ ଏଡ଼େ ପାଟି କରି ଯୁକ୍ତି ଆରମ୍ଭ କରି ଦେବେ ବଡ଼ଭାଇ ପରିବାବୁଙ୍କ ପରି, ନା ପେଟରୁ ଲୁଙ୍ଗି ଖସେଇ ଯାହାକୁ ପାରେ ତା'ଙ୍କୁ ଶଳା ବୋଲି କହିବେ ସାନ ଭାଇ ଧନିଆଁ ପରି ?

ଦୁନିଆଟା ତାଙ୍କୁ କଷ୍ଟ ଦେଇ ଆସିଛି ଜନ୍ମରୁ ଆଜଯାଏ, ବାପମାଆଙ୍କଠାରୁ ଆରମ୍ଭ କରି ମ୍ୟୁନିସିପାଲିଟି ( ଯେଉଁଠି ସେ ଚାକିରି କରନ୍ତି ) ର ଲାଞ୍ଚଖୋର ହାକିମଙ୍କ ଯାଏଁ । ଦୁନିଆଁଟା ପ୍ରତି ତାଙ୍କର ଯଥେଷ୍ଟ ହିଂସା କରିବା କଥା, ଏଥିରେ ସନ୍ଦେହ ନାହିଁ । ତା' ବୋଲି କ'ଣ ସେ ହାରିଯିବେ ? ଏଇ ହେଲା ତାଙ୍କ ଗାମ୍ଭୀର୍ଯ୍ୟର ମନ୍ତ୍ର ଓ ମୌଳିକତା ।

ବସି ରହିଛନ୍ତି । ସୂର୍ଯ୍ୟ ବେଶ୍ ଉପରକୁ ଉଠି ଆସିଲେଣି । ଚା' ଖାଇବାକୁ ବିଳମ୍ବିତ ଢେର ହୋଇଗଲାଣି । ତଥାପି ଚନ୍ଦ୍ରମଣି ବାବୁଙ୍କର ସ୍ୱାଭାବିକ ମୁହଁର ଚେହେରାରେ କୌଣସି ଭାବାନ୍ତର ପରିଲକ୍ଷିତ ହେଉ ନ ଥିଲା ।

ତେବେ ଯାହା ତାଙ୍କ ଆଖିରେ ପଡ଼ୁଥିଲା, ଏବଂ ଯେଉଁ ପ୍ରକାର ସ୍ମୃତିଚାରଣ ତାଙ୍କ ମନୋଭାବକୁ ଅଳ୍ପ ବହୁତ ଖେଳେଇ ଦେଉଥିଲା, ପଟ୍ଟଭୂମିର ପଛ ଆଡ଼େ, ତା'ର ଆକାର ପ୍ରକାର ଏହି ଧରଣର :

—ଜଙ୍କିଟାଏ ବସିଛି ଥୁଣ୍ଟା ଡାଳର ଅଗରେ । ବସୁଛି ଟିକିଏ, ଉଡ଼ି ଆସୁଛି, ପୁଣି ବସୁଛି ତା' ଉପରେ । ସତେକି ସେ ହେଉଛି ଗୋଟାଏ ପ୍ରଜାପତି, ଓ ଯାହା ଉପରେ ବସୁଛି ଥରକୁ ଥର, ସିଏ ଗୋଟାଏ ଫୁଲ ! ଦେହିଆ ଚ'ଣ କୋଉଠି ଗଛରେ ଫଳନ୍ତି ?

( ବାପା କହୁଥିଲେ, ମନେ ପଡ଼ୁଛି ଯେ ବାଲେଶ୍ୱରରେ ଥିଲା ବେଳେ ସେ ବହୁତ ବାରବେଗିରି କରିଥିଲେ । ଭୁଆଡ଼େ ଏତେ ବଡ଼ ବଡ଼ ଗେଣ୍ଡୁ, ଜହ୍ନିଆ, ଆଉ କେତେ କ'ଣ । ଆଉ ମୁଁ ଭୁଆଡ଼େ ସକାଳୁ ସକାଳୁ ବୁଲୁଥିଲି ତାଙ୍କ ପଛରେ । ଠୁକୁ ଠୁକୁ ହୋଇ । କ'ଣ ନା ମୁଁ ବି' ଫୁଲ ତୋଳିବି । ଥରେ ଭୁଆଡ଼େ ଗୋଟାଏ ଧଣ୍ଡସାପ ଗୁଡ଼େଇ ହୋଇ- ଗଲା ମୋ ଗୋଡ଼ରେ, କିନ୍ତୁ କିଛି ହେଲା ନାହିଁ ମୋର । ମାନେ ମାନେ ବୁଲିଗଲା

ବାପାଙ୍କୁ ଦେଖିଲାକ୍ଷଣି । ସେତେବେଳେ ଗାଲୁ ଗପ ! ବାପା ଥିଲେ ଏଠିକା ବଡ଼ ଜମିଦାର ସେନ୍ ମହାଶୟଙ୍କ ଗୁମାସ୍ତା । କିନ୍ତୁ ଆମେ ଜାଣିବାକୁ ସେ ଥିଲେ ସେକ୍ରେଟେରୀ । କହିବାକୁ ଗଲେ ମାଳୀ ହୋଇ ଫୁଲ ତୋଳୁଥିଲେ ମାଲିକର ବଗିଚାରେ । କୋଠିର ଆଉଟ୍ ହାଉସ୍‌ରେ ଥିଲେ, ଯେଉଁଠି ମୁଁ ଜନ୍ମ ହେଲି···

କିନ୍ତୁ ଭାଇ ଜନ୍ମ ହୋଇଥିଲେ କେନ୍ଦ୍ରାପଡ଼ାରେ । ଆମ ପୈତୃକ ଘରେ । ଜେଜେ ବଞ୍ଚିଥିଲେ ସେତେବେଳକୁ । କୁଆଡ଼େ ପାଞ୍ଚଶହ ଲୋକ ଭୋଜି ଖାଇଥିଲେ ତାଙ୍କ ଏକୋଇଶାରେ । ଜେଜେ ମଲା ପରେ ଯାଇଁ ବାପା ଘର ଛାଡ଼ି ବାହାରକୁ ଆସିଲେ, ସ୍ତ୍ରୀ' ତା' ସିରସ୍ତାରେ ଚାକିରି କରିବା ପାଇଁ···

ଭାଇ ମୂଳରୁ ଭାଗ୍ୟବାନ୍ । ସମସ୍ତଙ୍କ ପ୍ରିୟପାତ୍ର । ଫେଭରିଟ୍ । ଖାଲି ବାପାଙ୍କର ନୁହେଁ, ଜେଜେଙ୍କର, ଭଗବାନ୍‌ଙ୍କର··· )

ଚା'ପିଆର ଧୂମ୍ ଉଡ଼ୁଛି ସେଠି, ସତ୍ରାକଢ଼ର ଚା' ଦୋକାନରେ । ଜଣେ କିଏ ତା' ଗିଲାସ ଉପରକୁ ମୂଠାଏ ମୁଢ଼ି କି ହୁଡ଼ୁମ ଛାଡ଼ି ଦେଲା । ନପଟ ବାଲେଶ୍ୱରିଆ !

( ଝିଆଣ୍ଟ ଘର । ପୁଣି ସ୍ତ୍ରୀଙ୍କର ଯେମିତି ଫେସନିଆ କାରବାର । ନହେଲେ ମୁଁ ନିଜେ ଯାଇ ଚା' ତିଆରି କରି ସାରନ୍ତିଣି ମୋ ପାଇଁ । ସାହେବୀ ଢଙ୍ଗ ସିନା, ସ୍ତ୍ରୀଙ୍କ ଚା' ଗୁଡ଼ାକ ତୁଚ୍ଛା ପାଣିଚିଆ । ହବ ନାହିଁ ? ଚା' ଟିକେ ବି' ନିଜ ହାତରେ କରିବେ ନାହିଁ, ଅପେକ୍ଷା କରିଥିବେ ତାଙ୍କ ଚାକର ଆସିବ, ଗାଧୋଇ ପାଧୋଇ, ଟେରି ବାଟେଇ···

ଟୁକୁନ ସେମିତିକା ଟ୍ରେନିଂ ପାଇଛି ତା' ମାଆଠାରୁ । ଧନିଆଁ ର ଫୁଲଫାଙ୍କିଆ ସ୍ତ୍ରୀଠାରୁ । ନହେଲେ ତା' ସ୍ୱାମୀ ଯେତେ ବଡ଼ଲୋକ ହେଉ ପଛେ, ଘରଣୀ ହୋଇ ସେ ଏତକ କାମ କରନ୍ତା ନାହିଁ ତା' ନିଜ ହାତରେ ? ପୁଣି ଯେତେବେଳେ ଘରେ ଗେଷ୍ଟ୍ ଅଛନ୍ତି, ଗୁରୁଜନ, ପୁଣି ତା' ନିଜ ବଡ଼ବାପା ବଡ଼ମା···

ଜାତୁ ଏମିତି କି ବଡ଼ଲୋକ ମ ? ଯେତେବେଳେ କଣ ଗ୍ରୋଟମୋଟ ବିଜିନେସ୍ କରୁଛି । କେମିକାଲ୍ କାରଖାନା । ଆଜି ଅଛି କାଲି ନାହିଁ । ପୁଣି ମୁଖ୍ୟମନ୍ତ୍ରୀଙ୍କ ଅନୁଗ୍ରହରେ । ହଜାର ଦିନକୁ ହଜାର ଇଣ୍ଡଷ୍ଟ୍ରି ର ହାଙ୍ଗାମରେ । କାହିଁକନା ସ୍ତ୍ରୀ' ମାମୁଁ ହେଉଛନ୍ତି ତାଙ୍କ ପାଖଲୋକ । କିନ୍ତୁ ମୁଖ୍ୟମନ୍ତ୍ରୀଙ୍କ ଆସନ ତ ଟଳମଳ ହେଲାଣି, ଏଥର··· ?

ଆମ ରାଜେନ୍ଦ୍ର କଥା ଭିନ୍ନ । କଂଗ୍ରେସ ଆସୁ କି ଜନତା ଆସୁ କି ଯେ ଆସୁ, ଓକିଲାତି କାହା ଅନୁଗ୍ରହ ଉପରେ ନାହିଁ । ମାଲିମକଦ୍ଦମା ଚାଲିଥିବ ଚିରଦିନ । ମୁଁ ଠିକ୍ କରିଛି,—ତା'କୁ ଓକିଲାତିରେ ପୂରେଇ ଦେଇଛି । ପାଠରେ ଫାଷ୍ଟକ୍ଲାସ୍ ନ ହେଲେ ନାହିଁ, ସେ ମୋର ବିଚକ୍ଷଣ ପୁଅ । ଦେଖିବ ସେ କୋଉଠି ଯାଇଁ ପହଞ୍ଚିବ । ମୋ ବଡ଼ଲୋକ ହାକିମ ଇଞ୍ଜିନିୟର୍ ଭାଇଭଉଣୀଙ୍କ କୋଉ ପିଲା ତା' ପାଦଙ୍ଗରେ ପଡ଼ିବ ନାହିଁ । କିନ୍ତୁ···

'କିନ୍ତୁ'ର ସ୍ୱରୂପକୁ ଠିକ୍ ଧରି ହେଲା ନାହିଁ, ତେବେ ସେଥିରେ ଭାଗ୍ୟ ଓରଫ୍ ସମାଜର ସମ୍ଭାବ୍ୟ ଅବସ୍ଥାର ମହଜୁଦ୍ ଥିଲା । )

କିଏ ଗୋଟାଏ ଫାଟକ ଖୋଲି ପଶି ଆସୁଛି ହତା ଭିତରକୁ । ଅଳ୍ପ ବୟସୀ ମାଇକିନିଆ, ସ୍ୱାଙ୍କ ଘରେ କାମ କରେ କି କଅଣ । ସାନ୍ୟାଲ ଝିଅ । ଏମାନଙ୍କ ମୁହଁ ମାଉନା ହେଉ ପଛେ, ଦେହଟା ବେଶ୍ ଚୁସ୍ତ ଥାଏ । ଆଉ କେଡ଼େ ଚିକ୍କଣ କରି ତାଙ୍କ ବାଳକୁ କୁଣ୍ଡେଇ ଥାଆନ୍ତି, ଜୁଡ଼ା ବାନ୍ଧିଥାଆନ୍ତି, ପୁଣି ସେଥିରେ ଯାଉଣୁ ଆସୁଣୁ ଫୁଲଟାଏ ଖୋସି ଦେଇ ଥାଆନ୍ତି । ସ୍ୱା'ର ମୁହଁଟା ବି ମାଉନା ନୁହେଁ ମ, ଗ୍ଲେଟିଆ, ହେଲେ ଧାରୁଆ ନାକ, ଓଠ ଦି'ଟା ବି···ଫୁଲେଇ ହସୁଛି ମନକୁ ମନ···

( ବାପା ବଡ଼େଇକରି କହୁଥିଲେ ଯେ ସେ ନିଜେ ବାଛିଛନ୍ତି ତାଙ୍କର ଏଇ ବୋହୂଟିକୁ । ଯେମିତି ରୂପର, ସେମିତି ଗୁଣର । ମୁଁ ମନା କରୁନାହିଁ ଯେ ଜାମିନୀ ପ୍ରକୃତରେ ସୁନ୍ଦରୀ, ବି.ଏ. ପାସ୍, ଗୃହିଁଚତୁର । କିନ୍ତୁ କୋଉ ଚଏସ୍ ଥିଲା କି ମୋ ପାଇଁ ? କୋଉ ଦଶଆଡୁ ପ୍ରସ୍ତାବ ଆସିଥିଲା ସାଇଙ୍କ ପରି ? ନା ଧନିଆଁ ପରି ? ବାପା ଦିନେ କୁଆଡୁ ଗୋଟାଏ ଫଟୋ ଆଣି ପହଞ୍ଚେଇଲେ । ବୋଉକୁ କହିଲେ,—ଜାଣିଛ ଇଏ କିଏ ? ଇଏ ହେଉଛି ଗତିବାବୁ ଡାକ୍ତରଙ୍କ ଝିଅ । ଗତିବାବୁଙ୍କ ବାପା ହେଉଛନ୍ତି ଦାମ ମାଷ୍ଟ୍ରେ, ଦାମ ପଟ୍ଟନାଏକ । ସେ ମୋତେ ଟିଉସନ୍ କରୁଥିଲେ, ବଢ଼ିଆ ମାଷ୍ଟର୍ । ସାହିତ୍ୟ, ରଚନା, ମହାନଦୀ କୂଳରେ ସୂର୍ଯ୍ୟାସ୍ତ—ସେଇଠୁ ହୋ' ହୋ' ହସ—ଭଲ ହେବ ନାହିଁ ଆମ ଚନ୍ଦରା ପାଇଁ ? ବୋଉ ମୁଣ୍ଡ ଟୁଙ୍ଗାରିଲା, ଯାହା ସେ ସବୁବେଳେ କରିଆସିଛି ବାପାଙ୍କ କଥାରେ । ମୁଁ ବି ଥିଲି ସେଠି ପାଖରେ । କିନ୍ତୁ ମୁଁ ଯାଉଥିଲି ବସି··· !

ମାନୁଛି ଦାମିନୀ ଦେଖିବାକୁ ଭଲ । ଏତେ ବୟସରେ ବି ବୁଢ଼ୀଙ୍କ ପରି ଦିଶୁ ନାହିଁ । ଅବଶ୍ୟ ତା' ବାଳକୁ ରଙ୍ଗେଇଛି; ଅନେକଟା ସେଇଥିପାଇଁ । ମୁଁ ତା'କୁ ମନା କରି ନାହିଁ । କିନ୍ତୁ ମୁଁ କସ୍ମିନ୍‌କାଳେ ମୋ ବାଳକୁ ରଙ୍ଗେଇବି ନାହିଁ । ଯେଉଁ ବୟସରେ ଯେମିତି ଚେହେରା ହେବାର କଥା···

ଚଏସ୍ । ଭିନ୍ନ ସ୍ୱାଦୁ । ବାହାଘର ପରେ ମଧ୍ୟ ଲୋକେ ଆଉ କୋଉ ସ୍ତ୍ରୀ ପାଖକୁ ଯାଆନ୍ତି । ସାଇଙ୍କ ନାଆଁରେ ବି କେତେ କଥା ଶୁଣାଯାଏ । କିନ୍ତୁ ମୁଁ ସେମିତିକା ଲୋକ ନୁହେଁ । ମଣିଷର ଗୋଟାଏ ପ୍ରିନ୍‌ସିପ୍‌ଲ୍ ଥିବା ଦରକାର···

ଦାମିନୀର କଣ ହୋଇଛି ? କ'ଣ ଶୋଇଥିବ ଖରାବେଳ ଯାଏଁ ? )

ନନ୍ଦିତା, ତା' ସ୍ୱାମୀ ଜିତୁ ନାଏକ, ଏବଂ ଅତିଥି ତଥା ବଡ଼ମାଆ ସୌଦାମିନୀ ମହାନ୍ତି ଏତେ ଡେରି ଯାଏଁ ଶୋଇ ନ ଥାଆନ୍ତି ସବୁଦିନେ ! ଆଜିକା ବ୍ୟତିକ୍ରମର କାରଣ ହେଉଛି ଯେ ଗତକାଲି ରାତିରେ ବଡ଼ବାପା ସ୍ୱଭାବକ୍ରମେ ଦଶଟା ବେଳକୁ, ମାନେ ଟି.ଭି.ରେ ଇଂରେଜି ନିଉଜ୍ ଦେଖିଲା ପରେ ପରେ, ଶୋଇଗଲା ଉତ୍ତାରୁ ସେମାନେ ଗପ କଲେ ଅନେକ ସମୟ ଯାଏଁ । ଯେଉଁ ଗପର ଅଂଶ ବିଶେଷକୁ ହୁଏତ ପରଚର୍ଚ୍ଚା କୁହା-ଯାଇ ପାରେ, କିନ୍ତୁ ପରନିନ୍ଦା କହିବା ଏକାନ୍ତ ଅନ୍ୟାୟ, କାରଣ ସେଥିର ମୁଖ୍ୟସ୍ୱର ଥିଲା

ଆମୋଦ । କିଛି ଗୋଟାଏ ମଜାକଥା ଘଟିଥିବାର ଆମୋଦ, ଘଟଣା ନିଜ ଘରେ ଘଟି ଥାଉ କି ଆଉ କାହା ଘରେ, ପ୍ରତ୍ୟକ୍ଷ ଅନୁଭୂତ ହୋଇଥାଉ କି ଶୁଣାକଥା । ଖାଲି ଆମୋଦ ନୁହେଁ, ହାଲୁକା ଆମୋଦ । କିଓ, ଯେଉଁଠି ଆସରର ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ଚପଳା ଏବଂ ସଦାହାସ୍ୟମୟୀ ନନ୍ଦିତା ଓରଫ୍ ଟୁକୁନି, ସେଠି ଆଉ କଣ ଆଶା କରିଯାଏ ? ତା'ଛଡ଼ା ମୁରବି ସ୍ଥାନୀୟା ହେଲେ ମଧ୍ୟ ବଡ଼ମାଆ ସୌଦାମିନୀ ସ୍ୱଚ୍ଛନ୍ଦରେ ନିଜକୁ ମିଶାଇ ପାରନ୍ତି ଏଭଳି ଆସରରେ, ଇଏ କି' କିଛି କମ୍ କଥା ନୁହେଁ । ବାକି ରହିଲେ ଜିତୁବାବୁ । ତେବେ ସେ ଏଇ ଆସରରେ ଯୋଗ ଦେଇଥିଲେ ବୋଲି କହିଲେ ଭୁଲ୍ ହେବ । ସେ କେବଳ ଥିଲେ ସେଠି, ଏପାଖ ସେପାଖ ହେଉଥିଲେ, କଫି ତିଆରି କରି ଆଣୁଥିଲେ, ଏବଂ ରସଟି କେଉଁଠି ରହିଲା ବୁଝନ୍ତୁ କି ନ ବୁଝନ୍ତୁ, ମୁରୁକିହସାଟିଏ ଛାଡ଼ି ଦେଉଥିଲେ ଠିକଣା ସମୟରେ । ଜିତୁବାବୁଙ୍କ ଆନନ୍ଦର ମୂଳକଥା ହେଲା ଏଇ ଯେ ଆସରଟା ଜମିଛି, ଏବଂ ତାଙ୍କରି ଘରେ । ସତେକି ଇଏ ତାଙ୍କ ସଯତ୍ନରଚିତ ଆଉ ଗୋଟିଏ ପାର୍ଟି । ଅନ୍ୟତମ ଉପାଦାନ ତଥା ପରିଚୟ ତାଙ୍କ ମାଡ଼ି ଚାଲିଥିବା ସଫଳତାର ।

କିନ୍ତୁ ଆସରରେ ଟୁକୁନିର ବଡ଼ବାପା ଚନ୍ଦ୍ରମଣି ବାବୁ ଯୋଗ ଦେଇ ନାହାନ୍ତି, ଯେହେତୁ କ'ଣ ଜିତୁବାବୁଙ୍କର ସଫଳତାବୋଧ ଅଳ୍ପବହୁତ କମି ଯାଇ ନ ଥିବ ? ନା । କାରଣ ତାଙ୍କ ବିଷୟରେ ସେ ଯାହା ଶୁଣିଛନ୍ତି ( ଯେ ସେ କେତେ ରକ୍ଷଣଶୀଳ ଅର୍ଥାତ୍ ପୁରୁଣାକାଳିଆ ) ଓ ତାଙ୍କୁ ପ୍ରତ୍ୟକ୍ଷରେ ଯେମିତି ଭାବରେ ଦେଖିଛନ୍ତି ( କୁଞ୍ଚେଇଲା ମୁହଁ, କୁଣ୍ଠେଇଲା ପରି ଖଣ୍ଡି ଖଣ୍ଡି କଥା, ଇତ୍ୟାଦି ) ତା'ର ପରିପ୍ରେକ୍ଷୀରେ ସେ ଯଥାର୍ଥରେ ନିଜକୁ ବାହାଦୁରି ଦେଇପାରନ୍ତି ଯେ ଏଭଳି ଏକ ଗୁରୁଜନଙ୍କୁ ସେ ତାଙ୍କ ଗୁହାରୁ ଓଟାରି ଆଣି ନିଜର ଅତିଥି କରିପାରିଲେ ଏହାହିଁ ଯଥେଷ୍ଟ । ଅବଶ୍ୟ ସେଥିପାଇଁ ସେ ପତ୍ନୀର ପ୍ରବଳଚପଳ ଅଳିକୁ ମଧ୍ୟ ଧନ୍ୟବାଦ ଦିଅନ୍ତି, ଯାହାର ପ୍ରତିରୋଧ ବୋଧହୁଏ କରି-ପାରିଲେ ନାହିଁ ବଡ଼ବାପା । ତା'ଛଡ଼ା ତାଙ୍କର ପୂର୍ଣ୍ଣବିଶ୍ୱାସ ଯେ ଏଇ ବଡ଼ବାପା ଓରଫ୍ ଖୁଡ଼ୁତାଶୁର ଭଦ୍ରଲୋକଙ୍କୁ ସେ ଯେକୌଣସିମତେ ଆପ୍ୟାୟିତ କରିପାରିବେ, ଅନ୍ତତଃ ଟୁରିଷ୍ଟ ହିସାବରେ । ଯଥା, ଚାନ୍ଦିପୁରରେ ସମୁଦ୍ରର କୁନି କୁନି ଢେଉ—ଆସୁଛି, ଆହୁରି ଆସୁଛି, ଜହ୍ନଆଲୁଅ ପଡ଼ୁଛି, ଏଣେ ବିଅର୍ପିଆ ଚାଲିଛି··· । ଏଇ ଉପଭୋଗରୁ ବିଅର୍ପିଆ କାଟି ଦେଲେ ମଧ୍ୟ ଯେତିକି ବଳିଲା, ସେତିକରେ ସେ କଣ ହୁଗୁଳି ଯାଇ ପାରିବେ ନାହିଁ ? ନହେଲେ ପଞ୍ଚଲିଙ୍ଗେଶ୍ୱରରେ ପିକ୍ନିକ୍ । ନ ହେଲେ···ନହେଲେ ହୁଏତ ଭଦ୍ରକରୁ ଚଉବିଶ କିଲୋମିଟରରେ ଥିବା ସୁପ୍ରସିଦ୍ଧ ଆଖଣ୍ଡଳମଣି, ଯେତେ ଦୂରବାଟ କି ଖରାପ ରାସ୍ତା ହେଉ ପଛକେ···

ଅଗ୍ରାଧିକାର ନ ଥିଲା ମଣିଙ୍କର । ମଣିଙ୍କ କଥା ମଧ୍ୟ ଜିତୁବାବୁଙ୍କ ମନକୁ ଆସିଗଲା କାହିଁକନା ଗତକାଲି ଡ୍ରାଇଭର୍ ବାଞ୍ଛାନିଧି ଶୁଣେଇ ଶୁଣେଇ କହୁଥିଲା ଯେ ସେ ହେଉଛନ୍ତି ପୃଥିବୀର ସବୁଠାରୁ ପ୍ରତ୍ୟକ୍ଷ ଦେବତା, ଯେ ଏଇ ହେଉଛି, ସବୁଠାରୁ ଉପଯୁକ୍ତ ସମୟ ସେଠିକି ଯିବା ପାଇଁ କାରଣ ଏଇକ୍ଷଣି ମେଳା ମହୋତ୍ସବ କିଛି ନାହିଁ, ଏବଂ ବର୍ଷାଦିନ

ଆସିଲେ ସ୍ୱାସ୍ଥ୍ୟ ଆହୁରି ଖରାପ ହୋଇଯିବ, ଇତ୍ୟାଦି । ଯାହାହେଉ ଆଜି ସକାଳ ବଢ଼ିବା ପୂର୍ବରୁ ଜରୁବାବୁ ଗୋଟାଏ ନିଦଭଙ୍ଗା ଘୋଷଣା କଲେ ଯେ ସେ ଆଜି ଅଫିସ୍‌କୁ ନ ଯାଇ ବଡ଼ବାପା ବଡ଼ମାଆଙ୍କୁ କେଉଁଠିକି ହେଲେ ବୁଲେଇ ନେବା ପାଇଁ ଉତ୍ସାହୀ । ଚ୍ୟାଲେଞ୍ଜ କଲା ପରି ପଚାରିଲେ—କୁହ, କେଉଠିକି ଯିବ । ଚନ୍ଦପୁର୍, ନା ପଞ୍ଚଲିଙ୍ଗେଶ୍ୱର, ନା ଖୀର ଚୋରା ଗୋପୀନାଥ···ନା···ଆଖଣ୍ଡଳମଣି···ନା ଆଉ କୁଆଡ଼େ ?

ସେଇଠୁଁ ଟୁକୁନି କହିଲା, "ତୁମେ ସାଙ୍ଗରେ ଥିବ ତ ?"

"ନିଶ୍ଚୟ ।"

"ତା'ହେଲେ ଚାଲ, ଆଖଣ୍ଡଳ ମଣି···"

ଏଁ ! ଟୁକୁନିର ଧର୍ମଭାବ ଏତେ ଆଗୁଆ ବୋଲି ଜଣା ନ ଥିଲା କାହାକୁ । ମୁହୂର୍ତ୍ତିକ ପାଇଁ ଜରୁବାବୁଙ୍କର ମନେ ହେଲା ଯେ ବାଞ୍ଛାନିଧି ବୋଧହୁଏ କିଛି ଗୋଟାଏ ଷଡ଼ଯନ୍ତ୍ର କରିଛି ତା' ମ୍ୟାଡ଼ାମ୍‌ଙ୍କ ସାଙ୍ଗରେ । ହେଲେ ପରେ ପରେ ଗୋଟାଏ ଅଦ୍ଭୁତ ସମ୍ଭାବନା ତାଙ୍କ ମନକୁ ଆସିଲା, ଓ ସେ ଠୋ ଠୋ ହୋଇ ହସି ଉଠିଲେ । କହିଲେ, "କ'ଣ କିଛି ଗୋଟାଏ ମାନସିକ କରିଛ ମୋ ପାଇଁ ? ମୋ ମୁଣ୍ଡ ନଣ୍ଡା କରେଇବ ସେଠି ?" କେଜାଣି କାହିଁକି ବୁଦ୍ଧିମତୀ ତାର ଜବାବ୍ ଦେଇ ପାରିଲା ନାହିଁ ଚଟ୍‌କିନି । ଅପରନ୍ତୁ ସେ ଲାଜେଇଗଲା । ସତେକି ସେ ପ୍ରକୃତରେ ଗୋଟିଏ ଗୋପନୀୟ ମାନସିକ କରିଛି ତା' ସ୍ୱାମୀକୁ ନେଇ, ଓ କଥାଟି ଧରା ପଡ଼ିଗଲା ! ସୌଦାମିନୀ ଲକ୍ଷ୍ୟ କଲେ ତା'ର ପୁଚୁକା ଗାଲ କେମିତି ରଙ୍ଗା ପଡ଼ି ଯାଉଛି, ଏବଂ ହସିଲେ । ସେଥିରେ କେବଳ ଆମୋଦ ନ ଥିଲା, ମଧ୍ୟ ଥିଲା ଟିକିଏ ବିଦ୍ରୂପ, ନିଜକୁ ନେଇ । ମାନସିକ କଲେ ଯଦି ସତରେ କିଛି ହୋଇଯାଉଥାଆନ୍ତା ! ମୁଁ କେତେ ମିଛିମିଛିକା ମାନସିକ କରି ନ ଥିଲି କାର୍ତ୍ତିକ ନହେଲେ ଅର୍ଜ୍ଜୁନଙ୍କ ପରି ବରଟିଏ ପାଇବା ପାଇଁ !···

କିନ୍ତୁ ପ୍ରସ୍ତାବଟା ଯେତେବେଳେ ପହୁଞ୍ଚିଲା ଚନ୍ଦ୍ରମଣିବାବୁଙ୍କ ପାଖରେ ତାଙ୍କ ସକାଳ ଚା' ସାଙ୍ଗରେ, ତାଙ୍କ ମନରେ ଗୋଟାଏ ବିଚିତ୍ର ଭାବର ଉଦ୍ରେକ ହେଲା, ବିସ୍ମୟ ସାଙ୍ଗକୁ । ସତେକି ସେମାନେ ତାଙ୍କୁ ଚିଡ଼ୁଗୁଲେଇଉଛନ୍ତି । ପ୍ରଥମ କାରଣ ହେଲା ଯେ ଚା' କପ୍‌କୁ ଧରି କରି ଆସିଲା ସେଇ ସାନ୍ୟାଲୀ ଝିଅ । ଆଉ ଟୋକୀଟା ଏବେ ବି ହସୁଛି ! ମନେ ହେବ ଯେ ମୋ ଉପରେ ଦୃଷ୍ଟି ପଡ଼ିଲା କ୍ଷଣି··· । ତା'ପଛେ ପଛେ ଟୁକୁନି ତା'ର ସ୍ୱାଭାବିକ ହସ ଉଛୁଳେଇ ପ୍ରସ୍ତାବ କଲା—ବଡ଼ା'ପା ମ ! ଶୁଣ । ଚାଲ ଆମ ସାଙ୍ଗରେ ଯିବ ଗୋଟାଏ ଜାଗାକୁ । ପ୍ରସିଦ୍ଧ ଜାଗା । ପ୍ରତ୍ୟକ୍ଷ ଦେବତା । ଆଖଣ୍ଡଳମଣି—କଣ କହୁଛ ?

କଥା ସାଙ୍ଗକୁ ଏତେଗୁଡ଼ାଏ ହସ ନ ଯୋଡ଼ିଲେ ଚଳନ୍ତା ନାହିଁ ? ତା' ଛଡ଼ା ସେ କ'ଣ ଜାଣେ ନାହିଁ ଯେ ମୋର ଏଇ ଧର୍ମଫର୍ମରେ ବିଶ୍ୱାସ ନାହିଁ ? ଅବଶ୍ୟ ମୁଁ ମନ୍ଦିରକୁ ଯାଏ ଅନ୍ୟମାନଙ୍କ ଗହଣରେ କିନ୍ତୁ ଭାଇଙ୍କ ପରି ଗଳବସ୍ତ୍ର ହୋଇ ଲମ୍ବି ଯାଏ ନାହିଁ ଠାକୁରଙ୍କ ଆଗରେ···। ଚନ୍ଦ୍ରମଣି ବାବୁ ପ୍ରସ୍ତାବର ପ୍ରତ୍ୟାଖ୍ୟାନ କରିବାକୁ

ଯାଉଥିଲେ, ଅବଜ୍ଞାର ସହ । କିନ୍ତୁ ହଠାତ୍ ତାଙ୍କର ମନେ ପଡ଼ିଗଲା ଗୋଟିଏ ହାସ୍ୟାସ୍ପଦ କଥା । ପିଲାଦିନର ସ୍ମୃତି, ବୋଉକୁ ନେଇ । ତା' ମାଆପଣିଆ ତଥା ଠାକୁରଭକ୍ତିର କଡ଼େଇ ।

ଠାକୁର ଦେବତା ଓ ରୋଗବଇରାଗ କଥା ପଡ଼ିଲା ବେଳେ ସେ କହନ୍ତି କେତେଥର । ବୋଧହୁଏ ବେଶିଭାଗ କହନ୍ତି ମୁଁ ଯେତେବେଳେ ପାଖରେ ଥାଏ । କୁହନ୍ତି— "ପୁଅକୁ ଫେରେଇ ଦେଲେ । ଆଖଣ୍ଡଳ ମଣି । ସପନେଇଲେ ମୋତେ, ବୁଢ଼ା ବ୍ରାହ୍ମଣଟିଏ ହୋଇ । ଫୁଲ ବେଲପତ୍ର ବଢ଼େଇ ଦେଲେ ମୋ ହାତକୁ । ଆଉ କହିଲେ…"

ସୁସ୍ପଷ୍ଟ ହସଟିଏ ହସିଲେ ଚନ୍ଦ୍ରମଣି ବାବୁ । ଏବଂ ବେଶ୍ ଦୃଢ଼ ସ୍ୱରରେ କହିଲେ— 'ଓ.କେ. !' ଏଥର ଥିଲା ଟୁକୁନର ପାଳି, କାବା ହେବା ପାଇଁ ।

( ୬ )

ବାଟଯାକ ଚନ୍ଦ୍ରମଣି ବାବୁ ଉପଭୋଗ କରୁଥିଲେ ।

ଯାତ୍ରାର ତଥାକଥିତ ଦୃଶ୍ୟକୁ ପଛରେ ପକାଇ ଏକ ଅପୂର୍ବ ଅନୁଭବର ଉପଭୋଗ । ଗୋଟାଏ ହାସ୍ୟାସ୍ପଦ ଜିନିଷଠାରୁ ଦୂରେଇ ନ ଯାଇ ତାକୁ ମିଛିମିଛିକା ଆଦରିବାର, ସ୍ୱାଗତ ଜଣାଇବାର ମଜା ।…ସତେକି ମୋ ମନ ଉତଳା ହୋଇ ଉଠୁଛି ଆଖଣ୍ଡଳ ମଣିଙ୍କୁ ଦେଖିବା ପାଇଁ, ଯେ ମୋତେ ମୋ ଜୀବନ ଫେରେଇ ଦେଇଥିଲେ ! କୁଆଡ଼େ ଯେତେବେଳେ ମୋ ଟାଇଫଏଡ୍ ରୋଗ ଶେଷସୀମାରେ ପହୁଞ୍ଚିଥିଲା, ଡାକ୍ତର-ମାନେ ବି' ଆଶା ଛାଡ଼ି ଦେଇଥିଲେ, ସେତିକିବେଳେ ବୋଉ ମହାଦେବଙ୍କ ଶରଣ ପଶିଲା, ଆଉ ସେଇଠୁଁ ସେ ଆସି ହାଜର୍ ହୋଇଗଲେ ତା ସ୍ୱପ୍ନରେ । ପୁଣି ବୁଢ଼ା ବ୍ରାହ୍ମଣଟିଏ ହୋଇ । ହେ ଭଗବାନ୍ !

ସେ ତା' ରୋଗିଣା ଛୁଆଟାକୁ ଭଲ ପାଉଥିଲା । ଯେତେକ ଜୀବଜନ୍ତୁ ଯେମିତି ତାଙ୍କ ଛୁଆଙ୍କୁ ଭଲ ପାଆନ୍ତି । କିନ୍ତୁ ମୋତେ ନୁହେଁ । ଜୀବନଯାକ ସେ ପାତର ଅନ୍ତର କରି ଆସିଛି । ବାପା ଯେତେକ ଅନ୍ୟାୟ ବଣ୍ଟୁଆରା କଲା ବେଳେ ସେ ବାପାଙ୍କ କଥାରେ ହଁ ଭରିଛି । କିନ୍ତୁ ଭାଇଙ୍କ ଛଡ଼ା ହେବାର ବାହାନା ଟିକେ ପାଇଲାକ୍ଷଣି ସେ କେଁ କେଁ ହୋଇ ଲଢ଼େଇ କରି ବସେ । ବାପା ତାଙ୍କୁ ମିଛଟିକରେ ଦବେଇ ଦିଅନ୍ତି ସେ କଥା ଭିନ୍ନ । ଖାଲି ମୋତେ ନୁହେଁ, ମୋ ପିଲାଙ୍କୁ ବି…ଚନ୍ଦ୍ରମଣିବାବୁଙ୍କ ଆଖି ଆଗରେ ନାଚିଗଲା କେମିତି ଏଇ ଟୁକୁନ ତା' ଜେଜେମାକୁ ହଲପଟା କରୁଥିଲା ପିଲାଦିନେ, ହେଲେ ସେ ତା'ର ସବୁ ଅତ୍ୟାଚାର ସହୁଥିଲା, ଆଉ ମିଠାଟିଏ ଧରି ଖା' ଖା' ବୋଲି ଗୋଡ଼ାଉଥିଲା ତା' ପଛରେ । କିନ୍ତୁ ସେଭଳି କୌଣସି ଦୃଶ୍ୟ ମନେ ପଡ଼ିଲା ନାହିଁ ତାଙ୍କ ପୁଅ ରାଜେନ୍ଦ୍ର କି ଝିଅ ସୀମାକୁ ନେଇ, ଯେତେବେଳେ ସେମାନେ ପିଲା ହୋଇଥିଲେ ।

ସେ ବ' ମୋ ପ୍ରତି ଅନ୍ୟାୟ କରିଛୁ, ଆଉ ସମସ୍ତଙ୍କ ପରି । ପୂର୍ଣ୍ଣଚ୍ଛେଦ ।

ହେଲେ ଏଇ କାର୍ତ୍ତା ଦୌଡ଼ୁଛି ମଣିଙ୍କ ପାଖରେ ପହଞ୍ଚିବ ବୋଲି, ସତେକି ମୋର ତର ସହୁନାହିଁ ତାଙ୍କୁ ଦେଖିବା ପାଇଁ ।

ତାଙ୍କ ସାଙ୍ଗରେ ଦେଖା ହେଲେ ମୁଁ ପ୍ରଥମେ କ'ଣ ପଚାରିବ ଜାଣିଛ ? ପଚାରିବ ଯେ ଭୋଳାନାଥ, କେଉଁଥିପାଇଁ ମୋତେ ବଞ୍ଚେଇ ଦେଲ କହିଲ ଦେଖି ? ତୁମର ଉଦ୍ଦେଶ୍ୟ ମିଳୁଛି ତ ମୋର ଏଇ ପଚାଶ ବର୍ଷିଆ ଚେହେରା ଅର୍ଥାତ୍ ବ୍ୟକ୍ତିତ୍ୱ ସାଙ୍ଗରେ ? ତା'ର ସ୍ଥିତି, ବୃତ୍ତି ଓ ମାନମର୍ଯ୍ୟାଦା ସାଙ୍ଗରେ ?

ଜଉବାବୁ ଓ ଟୁକୁନ କ'ଣ ଚଡ଼ାଚଡ଼ି ହେଉଥିଲେ ପରସ୍ପରକୁ । ତେଣୁ ଚନ୍ଦ୍ରମଣି-ବାବୁ ଯେତେବେଳେ ମଣିଙ୍କୁ ଚଢ଼େଇଲା ପରି ଏଇ ପ୍ରଶ୍ନଟିକୁ ପଚାରିଲେ, ଏବଂ ମୁରୁକି ହସାଟିଏ ଦେଲେ, ତାଙ୍କ ସୁଖବୋଧ ବେଶ୍ ପ୍ରାସଂଗିକ ମନେ ହେଲା ସହଯାତ୍ରୀମାନଙ୍କୁ । ଅଧିକନ୍ତୁ ଜଉବାବୁ ନିଜକୁ ପୁଣି ଏବଂ ପ୍ରମାଣବନ୍ତ ଧନ୍ୟବାଦ ଦେଲେ ଯେ ତାଙ୍କର ଯୋଗୁଁ ବଡ଼ବାପାଙ୍କ ମୁଖମଣ୍ଡଳରେ ଆଜି ଏଇ ସୂର୍ଯ୍ୟାଲୋକ ।

ଉଦ୍ଦେଶ୍ୟ ମିଳିବ ନାହିଁ ? କାହିଁକି ମିଳିବ ନାହିଁ ? କେଉଁଥିରେ ମିଳିବ ନାହିଁ ? ମୁଁ ବ' ଜଣେ ଗ୍ରାଜୁଏଟ୍ । ମୁଁ ବ' ଟଙ୍କା ରୋଜଗାର କରିଛି । ଭଉଣୀଭଉଣୀଙ୍କ ପରି ଅଏସ୍ କରି ନାହିଁ, ଘୂରି ଚଉକିରେ ବସି ହୁକୁମ୍ ଦେଇ ନାହିଁ. କି ବିଦେଶର କୋଉ ନାଇଟ୍-କ୍ଲବ୍‌ରେ ବସି··· ଗୁଡ଼ । କିନ୍ତୁ ମୁଁ ଯାହା ହୋଇଛି ନିଜ ଚେଷ୍ଟାରେ ହୋଇଛି । କଳା ଧନ କରି ନାହିଁ କି କାହାରି ଅନୁଗ୍ରହକୁ ଅପେକ୍ଷା କରି ନାହିଁ । ସେଇ କେନ୍ଦ୍ରାପଡ଼ାରେ ପଡ଼ି ରହିଛି ହେଲେ ମୁଁ ବ' କୋଠାଖଣ୍ଡେ କରିଛି, ପିଲାଙ୍କୁ ମଣିଷ କରିଛି । ଆଉ କେହି କହିବ ନାହିଁ ଯେ ମୁଁ ବାପାଙ୍କ ଅଯୋଗ୍ୟ ପୁଅ । ଅନ୍ତତଃ ତାଙ୍କ ଠାରୁ ଭଲ ପୋଜିସନ୍ ପାଇଛି ମୋ ଜୀବନରେ । ମ୍ୟୁନିସିପାଲିଟିର ଜଣେ ବଡ଼ବାବୁ କୋଉ ଗୁମାସ୍ତାଠାରୁ ଶତଗୁଣରେ ଭଲ···

ଧ୍ୟାତ୍, ମୁଁ ମିଛୁଟାରେ କାହିଁକି କହୁଛି ଏତେ କଥା, ସଫେଇ ଦେଲା ପରି ? ସୂର୍ଯ୍ୟାଲୋକ ସ୍ତିମିତ ହୋଇଗଲା କ୍ଷଣକ ପାଇଁ, ହେଲେ ତା'କୁ କେହି ଲକ୍ଷ୍ୟ କରି ପାରିଲେ ନାହିଁ, କାହିଁକନା ତାହା ଚଟ୍‌କିନ ଫେରି ଆସିଲା । ଦ୍ୱିଗୁଣ ଜ୍ୟୋତି ନେଇ ।

ଦ୍ୱିଗୁଣ ଜ୍ୟୋତି ଆସିଲା ଦର୍ପଣରୁ । ଅର୍ଥାତ୍ ତାଙ୍କର ମନେ ପଡ଼ିଲା ଆଜି ସକାଳେ ସେ ଯେଉଁ ପ୍ରତିଛବି ଦେଖିଥିଲେ, ଟୁକୁନ ଘରେ ଥିବା ପୁରା-ଚେହେରା ଦର୍ପଣରେ । ଯାତ୍ରାର ଆରମ୍ଭରେ । ମନେ ହେଲା ଯେ ଏଇ ପୁରା ଚେହେରା (ମୁହଁଖଣ୍ଡିକ ସବୁକିଛି ଲୁହେଁ) ବେଶ୍ ଆଖିଦୃଷ୍ଟିଆ । ଆଉ ସେମିତି କିଛି ବୁଢ଼ା ହୋଇ ନାହିଁ । କିନ୍ତୁ ବୁଢ଼ା ନ ହୋଇଥିବାର ଲକ୍ଷଣଗୁଡ଼ିକ କଅଣ ବୋଲି ସେ ଧରି ପାରି ନ ଥିଲେ ।

ମଣି ଦେଖନ୍ତୁ ମୋତେ, ଦେଖିଲେ ଅବଶ୍ୟ ଖୁସି ହେବେ । ସେ ଦୋହରେଇ ହେଲେ ମନେ ମନେ ।

ଚନ୍ଦ୍ରବାବୁ ଲକ୍ଷ୍ୟ କଲେ ଯେ ସୂର୍ଯ୍ୟାଲୋକ ଲାଗି ରହିଛି ବଡ଼ବାପାଙ୍କ ମୁହଁରେ । ବାଃ ! ସେ ନକଳକୁ ଧନ୍ୟବାଦ ଦେବା ସଙ୍ଗେ ସଙ୍ଗେ ମଧ୍ୟ ଧନ୍ୟବାଦ ଜଣାଇଲେ ରାସ୍ତା-କଡ଼ର ବିଭିନ୍ନ ଦୃଶ୍ୟ ଓ ଘଟଣାକୁ । ଯଥା : ଜୀଅନ୍ତା କୁକୁଡ଼ାମାନଙ୍କୁ ହାତରେ ଝୁଲେଇ ଧରିପକି ହୋଇ ଯାଉଥିବାର ଓ ବିକିବାର ଦୃଶ୍ୟ, କେଉଁ ବିଦ୍ୟାଳୟକୁ ମହାବିଦ୍ୟାଳୟ କରିବା ଅଭିପ୍ରାୟରେ କାର୍‌କୁ ଘେରିଯାଇ କରି ଚାନ୍ଦା ଆଦାୟ କରିବାର ଘଟଣା, ଏକାଧିକ ଦଦରା କାଠ ପୋଲମାନଙ୍କ ଉପରେ ଗତି କରିବାର ମରଣାନ୍ତକ ମଜା, ବିଶେଷତଃ ଯେତେବେଳେ ଆଖିରେ ପଡ଼େ ଯେ ପ୍ରତ୍ୟେକ ଜାଗାରେ ନୂଆ ପୋଲର ଶିଳାନ୍ୟାସ କରିଛନ୍ତି ଖୋଦ୍ ମୁଖ୍ୟମନ୍ତ୍ରୀ ପ୍ରାୟ ଦୁ' ବର୍ଷ ତଳେ (ଏଇଠି ଫାଜିଲ୍ ଟୁକୁନ ଟିପ୍‌ପଣୀ ଦେଲା ଯେ ମୁଖ୍ୟମନ୍ତ୍ରୀଙ୍କ ଆସ୍ଥାନ ବି' ତ ଦଦରା ହେବାକୁ ବସିଲାଣି)....ଇତ୍ୟାଦି । କିନ୍ତୁ କେମିତି ଜାଣିବ ଯେ ଏଇ ଆଲୁଅ ଗୋଟାଏ ପ୍ରଚ୍ଛନ୍ନ ଏବଂ ଅନ୍ତରଙ୍ଗ (ହେଲା ଏବେ କୃତ୍ରିମ) ଆବେଗର ପରିପ୍ରକାଶ ? ସେ ସେ ମିଛିମିଛିକା ଧାଉଁଛନ୍ତି ଜଣକୁ ଦେଖିବାକୁ ଯେ ତାଙ୍କୁ ତାଙ୍କ ଜୀବନ ଫେରାଇ ଦେଇଥିଲେ ଚାଳିଶ କି ପଇଁଚାଳିଶ ବର୍ଷ ତଳେ ? ଧାଉଁଛନ୍ତି ତାଙ୍କୁ କହିବାକୁ ଯେ ଧନ୍ୟବାଦ, ଯାହା କରିଛ ଭଲ କରିଛ, ଅନେକ ଧନ୍ୟବାଦ···?

ହୁଏତ ଆମେ ଦିହେଁ ଟିକିଏ ଗୋପନୀୟ କଥାଭାଷା ହେବା ଏଇ ଜୀବନଟା ବିଷୟରେ । କେହି ତା'ର ଟେର୍ ପାଇବେ ନାହିଁ । କ'ଣ କହୁଛ ମଣିମା ? ଚନ୍ଦ୍ରମଣିବାବୁ କୁରୁଳି ଖାଇଲେ । ଏବଂ ଗୋଟାଏ ପ୍ରାକ୍‌ଟିକାଲ୍ ଦୁଃଖ କଲେ । ତୁମେ ତ କୋଉ ମୂର୍ତ୍ତି ନୁହଁ; ଶିବଲିଙ୍ଗଟିଏ । ମୋତେ ଦେଖିଲାରୁ ଖୁସି ହେଲ, କାନ୍ଦ କାନ୍ଦ ହେଲ, କି କୌଣସି କାରଣରୁ ଚିଡ଼ି ଉଠିଲ, ମୁଁ ସେକଥା ଜାଣିବି କେମିତି ?

ଦୁ'ପହର ଖରାରେ ଏବଂ ଉପରୋକ୍ତ ପୋଲ ତଥା ଆବୁଡ଼ାଖାବୁଡ଼ା ରାସ୍ତାରେ ଧକଡ଼ଚକଡ଼ ହୋଇ, ଯଥାକ୍ରମେ···ଆଖଣ୍ଡଳମଣି ! ଥକା ଲାଗୁଛି ? କାହିଁ, ନାହିଁ ତ । ଚନ୍ଦ୍ରମଣିବାବୁ ସେମାନଙ୍କ ସହାନୁଭୂତିସୂଚକ ପ୍ରଶ୍ନରେ ମୁଣ୍ଡ ହଲେଇଲେ । ଲୋକ ଗହଳି, ଧୂଳି କାଦୁଅ, ଧେଡ଼ କୁକୁର, ଗଣଗଣିଆ ମାଛି ତଥା ପଣ୍ଡାମାନଙ୍କର ଦୌରାତ୍ମ୍ୟ ମଧ୍ୟ ତାଙ୍କୁ ବିଶେଷ ବିଚଳିତ କଲାପରି ମନେ ହେଲା ନାହିଁ । କେବଳ ଗୋଟିଏ ଜିନିଷ ଲକ୍ଷ୍ୟ କରିବା କଥା ଯେ ସେ ତରତର ହେଉଥିଲେ । 'ଚାଲ ମ, ସେତିକ ଭୋଗ ଯଥେଷ୍ଟ', 'କଣ ପୋଖରୀକୁ ଯିବାକୁ ପଡ଼ିବ ଗୋଡ଼ ଧୋଇବା ପାଇଁ ?' 'ପଣ୍ଡା ହାତରେ ମୋଟ ଟଙ୍କା ଧରେଇ ଦେଲେ ଚଳିବ ନାହିଁ ?'···ଏହି ପ୍ରକାର ଅନଭିଜ୍ଞ ପ୍ରଶ୍ନରେ ସହଯାତ୍ରୀ-ମାନଙ୍କୁ ବିସ୍ମିତ, ଏବଂ ବେଳେବେଳେ ଈଷତ୍ ବିରକ୍ତ କରି ଦେଉଥିଲେ । କିନ୍ତୁ ତା'ଙ୍କୁ ଧୈର୍ଯ୍ୟ ଧରିବାକୁ ପଡ଼ିଲା । କାରଣ ଟୁକୁନର ପ୍ରକୃତିରେ ମାନସିକ ଥିଲା, ଏବଂ ସେଥିପାଇଁ ବ୍ୟାପକ ଆୟୋଜନ କରିବାକୁ ପଡ଼ିଲା, ଠାକୁର ଦର୍ଶନ ପୂର୍ବରୁ ।

ଆଗତ୍ୟା ସେ ସେମାନଙ୍କଠାରୁ ବିଚ୍ଛିନ୍ନ ହୋଇ ମନ୍ଦିର ବେଢ଼ାରେ ଘୂରି ବୁଲୁଥିଲେ । ବିଭିନ୍ନ ତୀର୍ଥଯାତ୍ରୀମାନଙ୍କର କଥାବାର୍ତ୍ତାକୁ କାନଉଥିଲେ । ଜଣେ ତା'ର ସ୍ତ୍ରୀ କି ଅଉ କେଉଁ ସମ୍ପର୍କୀୟାକୁ କହୁଛି—ତୁ କ'ଣ ଭାବୁଚୁ ଖାଲି ତୋତେ ହିଁ ଇଷ୍ଟା ମଡ଼ଉଛି ? ତୋର ଭକ୍ତି ଉଛୁଳୁଛି ? ଅଉ ମୋର ନୁହେଁ ? ଚନ୍ଦ୍ରମଣିବାବୁଙ୍କର ମନ ହେଲା ଏଇ ରହସ୍ୟର ଗଭୀରକୁ ଯିବେ । ଏବଂ ଅନୁମତିପୂର୍ବକ ତାଙ୍କ ପ୍ରତିଯୋଗିତାର ରେଫରି ହେବେ । ଯେହେତୁ ତାଙ୍କ କହିବାକଥା ଭକ୍ତି, ଯଦି ତା'କୁ ଭକ୍ତି କୁହାଯାଏ, ଭିନ୍ନ ଧାତୁରେ ଗଢ଼ା ।

ଏହି ସମୟରେ ହଠାତ୍ ସେ ତାଙ୍କ ପିଠିରେ ଏକ ବିରାଟ ଚପେଟାଘାତର ଆହ୍ୱାନ ଅନୁଭବ କଲେ । ଏବଂ ଶୁଣିବାକୁ ପାଇଲେ ଏକ ଉଚ୍ଚ ଉଚ୍ଛ୍ୱସିତ ଅଭିବାଦନ—

"ଚନ୍ଦ୍ରମଣି ! ଚନ୍ଦ୍ରୁ ! ଚନ୍ଦ୍ରୁକାଲ୍ !!"

ଘଞ୍ଚ ଦାଢ଼ି ବିଶିଷ୍ଟ ହୃଷ୍ଟପୁଷ୍ଟ ଲୋକଟାଏ କହି ଗ୍ଲଲାଛି—

"ମୁଁ ସେତେବେଳଠୁଁ ଲକ୍ଷ୍ୟ କରୁଛି ତୋତେ । ଭାବୁଛି—ଇଏ କିଏ ସେଇ ? ଏତେ ବୁଢ଼ା ହୋଇଗଲଣି ? ଅବଶ୍ୟ କୋଉ ଯୁଗର କଥା । ତା'ପରେ ଠିକ୍ କଲି ଯେ ହ୍ୟାପ୍ ଚନ୍ଦ୍ରୁ ଛଡ଼ା ଆଉ କେହି ହୋଇ ପାରେ ନାହିଁ । ସେଇ ଲମ୍ବା ଚେହେରା, ଆଖିରେ ସେଇ ତେଜ, ଆଉ ହାତ ଖୁଜୁବୁଜୁ ହେଉଛି— ଭଲିବଲ୍‌କୁ ହାତେଇବ, ବାଜା ବଜେଇବ, କି ଆଉ କ'ଣ କରିବ···ହିଃ ହିଃ···"

ଚନ୍ଦ୍ରମଣିବାବୁ ତା'କୁ ଜଳଜଳ ହୋଇ ଚାହିଁ ରହିଲେ । କିଛି ମନେ ପଡ଼ୁ ନାହିଁ । କିନ୍ତୁ ସନ୍ଦେହ ନାହିଁ ଯେ ଇଏ ମୋ ସାଙ୍ଗ । ବୋଧହୁଏ ନୂଆ ନୂଆ କଲେଜରେ ଜଏନ୍ କରିଥିଲାବେଳେ । ମନେ ପଡ଼ୁ ନାହିଁ ସିନା, ତା'କୁ କୁଣ୍ଢେଇ ପକେଇବାକୁ ଇଚ୍ଛା ହେଉଛି···

( ମୁଁ କହୁ ନ ଥିଲି ? ଦର୍ପଣରେ ମୋର ସେଇ ପୂର୍ବ ଚେହେରାଟାକୁ ଦେଖିଲି ଷଣି ଭଲ ଲାଗିଲା । ପ୍ରକୃତରେ ମୋର ଚେହେରା ସେତିମତ ଲମ୍ବା ନୁହେଁ କି ? ଫ୍ୟାମିଲିରେ ସବୁଠୁଁ ଲମ୍ବା । ପୁଣି ଏତେ ବୟସ ହେଲଣି, ହେଲେ ପେଟ ବ' ବାହାର ନାହିଁ ସେମିତି କିଛି )

"ଆରେ ଭୂତ ଦେଖିଲା ପରି ଏମିତି ଅନେଇଛୁ କ'ଣ ମ ? ଚିହ୍ନିପାରୁ ନାହୁଁ ମୁଁ କିଏ ?"

କିନ୍ତୁ ଚନ୍ଦ୍ରମଣିବାବୁ ତଥାପି ଅନେଇ ରହିଥିଲେ । ଏବଂ ତାଙ୍କ ହସିଲା ମୁହଁ ଏକାଧାରରେ ଅନୁରାଗୀ ଏବଂ ତେଜସ୍ୱୀ ଦିଶୁଥିଲା । ହଠାତ୍ ପୁଳାଏ କିଛି ପାଇଲା ପରି, ଏବଂ ଆହୁରି ପୁଳାଏ ପାଇବ ବୋଲି ।

(କହିଲା---ଆଖିରେ ସେଇ ତେଜ । ସାଙ୍ଗ ବୋଲି ସିନା ସେ ତା'କୁ ସାଙ୍ଗେ ସାଙ୍ଗେ ଚିହ୍ନି ପକେଇଲା ! ଯେତେ ବୁଢ଼ା ହେଲେ ବି ଆଖି ଗଭୀରର ଜକଜକ, ଅଙ୍ଗାର

ତଳର ଜଣାଁ ଟାକୁ ଦେଖିପାରନ୍ତି !…ରହ, ରହ, ତୁ କଏ ବୋଲି କହ ନାହିଁ । ତୋ ନାଆଁ ଯାହା ହେଉ ଯାଏ ଆସେ ନାହିଁ । ଅସଲ କଥା ହେଉଛି ଯେ ତୁ ମୋ ସାଙ୍ଗ, ସେ ବେଳର ସାଙ୍ଗ, ସେଇ ହେଉଛି ମୋ ସତବେଳ)

"ମନେ ପକା । ସୁଭାଷ ହଷ୍ଟେଲ୍ । କାଲିଆ କର୍‌ଦାଶ୍ । ମାଇଚଆ ମଣ୍ଟୁ । ଡ୍ୟାସ୍ ଗୋବନ୍ଦ…ହିଁଃ ହିଁଃ…ଆଉ ତୁ ହେଲୁ ଚଗଲା ଚନ୍ଦୁ । ଆରେ, କୋଉ ଯାଏ ଗଲୁ ତୋର ଏଇ ହାତ ଦ'ଟାକୁ ନେଇ ? ବ୍ୟାଡ଼୍‌ମିଣ୍ଟନ୍, ଭଲିବଲ୍, ସିତାର୍—ସେଇଠୁଁ ? ସେଇଠୁଁ କ'ଣ ଧରିଲୁ ? କେତେ ଦୂରକୁ ଗଲୁ ?…"

( ମୁଁ ସିତାର୍ ବଜଉ ନ ଥିଲି । ବେଳେବେଳେ ତବଲା ବଜଉଥିଲି । କିନ୍ତୁ ବଢ଼ିଆ ଗୀତ ବୋଲୁଥିଲି । ଏତକ ଭୁଲ୍ ହୋଇଗଲା ବନ୍ଧୁର । କିନ୍ତୁ ବାକୀ ସବୁ ଠିକ୍ । ପୂରାପୂରି ଠିକ୍ । ତା'ଛଡ଼ା କଏ ଭଲିବଲ୍ ଖେଳୁ କି ଫୁଟ୍‌ବଲ୍, ସେ ହେଉଛି ଖେଳୁଆଡ଼୍ । କଣ୍ଠ ସଙ୍ଗୀତ ହେଉ କି ବାଦ୍ୟ ସଙ୍ଗୀତ, ତା'କୁ ଯେ ବାଢ଼ି ଦେଇ ପାରେ ଅନ୍ୟମାନଙ୍କ ଆଗରେ, ସେ ହେଉଛି କଳାକାର)

"ମୋ ନାଆଁ ହେଉଛି ପ୍ରମୋଦ ଖୁଣ୍ଟିଆ, ଚିହ୍ନିଲୁ ଏଥର ? ପାଗଳ ପ୍ରମୋଦ, ପ୍ୟାସନେଟ୍ ପ୍ରମୋଦ—ହୋଃ-ହୋଃ-ହୋ…ଶୁଣ୍, ତୁ କୋଉଠି ଅଛୁ କହିଲୁ ?… ବାଲେଶ୍ୱର ? ଠିକଣାଟା ଦେ', ମୁଁ ବ' ଯାଉଛି ସେଠିକି । ଯିବି ତୋ ଝିଅଆସ୍ତ ଘରକୁ, ଆମ ସ୍ତ୍ରୀଙ୍କୁ ବ' ନେଇ କରି ଯିବି ।…ବଟ୍ ଆଇ ହାଭ୍ ଟୁ ଗୋ ନାଓ, ଗୋଟାଏ ଜରୁରୀ କାମ ଅଛି…

(ନା-ନା-ପ୍ଲିଜ୍, ତୁ ଚାଲିଯାଆ ନାହିଁ ଏତେ ଜଲ୍‌ଦ । ଅନେକ କଥା କହିବାର ଅଛି ତୋ ସାଙ୍ଗରେ । ସେବେଳର କଥା । ତଥାପି ମନେ ପଡ଼ୁନାହିଁ ତୁ କଏ, ହେଲେ ତୁ ଯାହା କହୁଛୁ ସବୁ ସତ, ଷୋଳ ଅଣା ସତ । ଚେହେରାରୁ ଆରମ୍ଭ କରି ଆଖିର ତେଜ ଯାଏଁ, ଖୁଜୁରୁକୁ ହାତର କରାମତି ଯାଏ....ମନେ ଅଛି ନା ପ୍ରମୋଦ, ବର୍ଦ୍ଧନଙ୍କ ଇକନମିକ୍‌ସ ଟିଉଟୋରିଆଲରେ ମୁଁ ଯେଉଁ ନୂଆ ତଥ୍ୟ ବାଢ଼ିଲି ସ୍ୱାଧୀନ ମାର୍କେଟ୍‌ର ମନ୍ଦଗତି ଉପରେ, ଆଉ ବର୍ଦ୍ଧନ୍ ସାହେବ ହସି ହସି କହିଲେ ଯେ ଇଏ ଗୋଟାଏ ଜବର୍‌ଦସ୍ତ ଥିଓରି, କହିଲେ ମୁଁ ଗୋଟାଏ ଇକନମିଷ୍ଟ ହେବି ବଡ଼ ହେଲେ…ଆଉ…ଆଉ ମନେ ଅଛି ମୀରା କଥା, ଯେ ଉପରେ ପଡ଼ି ମୋ ସାଙ୍ଗରେ ହାତ ମିଳେଇଲା, କେଉଁଦିନ ଆମ ଭଲିବଲ୍ ଟିମ୍ ଗ୍ୱାର୍ମିଅନ୍ ହେଲା…ଆଉ…)

ଚନ୍ଦ୍ରମଣି ବାବୁ ଅଚାନ୍ତା, ହେଲେ ହଠାତରେ ଜଣେ ବନ୍ଧୁକୁ ଏଇ ସବୁ କଥା ଏବଂ ଆହୁରି କେତେ କଥା ପଚାରିବେ ବୋଲି ଆତୁର ହେଲେ । ସେହେତୁ ତା'ର ହାତକୁ ମୁଠେଇ ଧରିଲେ । କିନ୍ତୁ ବନ୍ଧୁ ଅଟକି ରହି ପାରିଲା ନାହିଁ ।

ଝଡ଼ ପରି ଆସିଥିଲା । ଚାଲିଗଲା କୁଆଡ଼େ । ହେଲେ ତା'ର ଫେରନ୍ତା ପଥକୁ ଅନେଇ ଅନେଇ ଚନ୍ଦ୍ରମଣିବାବୁଙ୍କ ଦେହ ରୋମାଞ୍ଚିତ ହେଲା । ସତେକି ଦେବଦୂତ ଜଣେ

ଅସିଥିଲି । ଅନନ୍ୟ ଅନୁଭବର ଦୂତ । ଆସିଥିଲି ମୋତେ କିଛି ଗୋଟାଏ କହିଯିବ ବୋଲି । ମନେ ପକେଇ ଦେବ, ଚେତେଇ ଦେବ, ଯେ ଏଇ ଥିଲି ତୋର ସତ, ତୋର ପ୍ରବଣତା, ସମ୍ଭାବନା । ଏବେ ମଧ୍ୟ ଅଛି ।

( ୩ )

ସେଦିନ ଚନ୍ଦ୍ରମଣିବାବୁଙ୍କ ନବକଳେବର ଏଭଳି ଅପୂର୍ବ ରୂପ ଧାରଣ କଲା, ବିଶେଷତଃ ମଣିଙ୍କ ପାଖରୁ ଫେରିଲା ପରେ, ଯେ ସେମାନେ ସେ ବିଷୟରେ କୁହାକୁହି ହେଲେ । ବାକସ୍ଥରେ ଜଭୁବାବୁ କହିଲେ ନାହିଁ ଯେ ଇଏ ତାଙ୍କର କରାମତି, କିନ୍ତୁ ତାଙ୍କ ଛାତି ଆହୁରି କୁଣ୍ଢେମୋଟ ହୋଇଗଲା । ସୌଦାମିନୀ କହିଲେ—ନାଇଁ ମ, ସେମିତି କିଛି ନୁହେଁ । ଏତେଦିନ ପରେ ଗୋଟାଏ ଆଉଟିଂ, ବିଶେଷତଃ ଟୋକାଟୋକୀଙ୍କ ସାଙ୍ଗରେ (ସହାସ୍ୟ ଆଖିମିଟିକା) ତା'ର କିଛି ଗୋଟାଏ ପ୍ରଭାବ ପଡ଼ିବ ନାହିଁ ବାବୁଙ୍କ ଉପରେ ? କିନ୍ତୁ ଝୁଲୁନ ବାରମ୍ବାର ସେଇ ଗୋଟିଏ ପଦ କହି ଗ୍ଲୁଥାଏ—ମଣିଙ୍କ ମହିମା !

ସମସ୍ତେ ଦେଖିଲେ ତାଙ୍କର ଏଇ ଅଭିନବ ଶୁକ୍ଳପକ୍ଷର ବିକାଶ । କିନ୍ତୁ କେହି ଜାଣି ପାରିଲେ ନାହିଁ ସେ କେମିତି ବିକଳ ହେଉଛନ୍ତି ଚନ୍ଦ୍ରକଳାଟିକୁ ଧରି ରଖିବା ପାଇଁ, ତା'କୁ ବଢ଼େଇବା ପାଇଁ । ଉତ୍ତରୋତ୍ତର, ଏବଂ ପୁରାପୁରି ହାସଲ କରିବା ପାଇଁ ସେଇ ସ୍ମୃତିର ସତ କଥାମାନଙ୍କୁ, ପ୍ରବଣତାମାନଙ୍କୁ, ଯାହା ପ୍ୟାସ୍‌ନେଟ୍ ପ୍ରମୋଦ ଚହଲେଇ ଦେଇ ଗଲା । ବନ୍ଧୁଟା ତ ପଳେଇଗଲା । ବାଲେଶ୍ୱରରେ ବି' ତା'ର ଦେଖାଦର୍ଶନ ନାହିଁ । ଆଉ କାହାକୁ ପଚାରି ହେବ ? ମୋ ପ୍ରଶ୍ନ ଗୋପନୀୟ, ଖାଲି ସେଥିପାଇଁ ନୁହେଁ । କିଏ ଅଛି ମୋର ସେଇ ସତବେଳର ମଣିଷ ? ଏମାନେ ତ ଆସିଛନ୍ତି କାହିଁ କେତେ ପଛରେ !

କେବଳ ମଣି । ମୁଁ ତାଙ୍କୁ ପଚାରିଥିଲି ସେଦିନ । କିନ୍ତୁ ସେ ଖାଲି ମୁରୁକି ମୁରୁକି ହସିଲା ପରି ଲାଗିଲେ । ଲିଙ୍ଗର ଅ.ଖି ମୁହଁ ନାହିଁ ବୋଲି କିଏ କହୁଛି ମ ? ଚନ୍ଦନ ପ୍ରଲେପର ସେଇ ତିଧାର, ତା'ର ବ୍ୟଞ୍ଜନା କିଛି କମ୍ ନୁହେଁ । କିନ୍ତୁ ଥରମାନ ମେଣ୍ଟିଲା ନାହିଁ । ସେ ଖାଲି ମୋତେ ଉସ୍‌କେଇଲେ । ପରିଷ୍କାର ଭାବରେ କହିଲେ ନାହିଁ । ଯେ କେଉଁଠି କେମିତି ତାଙ୍କର ଦିଆ ଜୀବନଟାକୁ ପୁଣି ମୁଠେଇ ଧରି ପାରିବି, ଛିଅ ଧରି ପାରିବି, ମୋର ସେଇ ସୁବର୍ଣ୍ଣ ଯୁଗର ।

କିଛି କ୍ଷତି ନାହିଁ । ମୁଁ ପାରିବି ।

କିନ୍ତୁ···କିନ୍ତୁ···ଦିନ ପରେ ଦିନ ବିତିଗଲା । ଏବଂ କ୍ରମଶଃ ତାଙ୍କ ମନରେ ଗୋଟାଏ ଅହେତୁକ ଭୟ ଆସିଲା । ଧରି ଏଇ ଜୀବନଦାନ କଥାଟା ମୂଳରୁ ମିଛ, ଆମ ବୋଉର ନିଛକ୍ କଳ୍ପନା···କି ହୁଏତ ମୁଁ ଭୁଲ୍ ଶୁଣିଛି···

ତେଣୁ କେନ୍ଦ୍ରାପଡ଼ାରେ ପହୁଞ୍ଚୁ ନ ପହୁଞ୍ଚୁଣୁ ସେ ଗୋଟାଏ ଅତି ଅସ୍ୱାଭାବିକ କାମ କଲେ । ପ୍ରଥମେ ଗଲେ ତାଙ୍କ ପୈତୃକ ଘରେ ଏକୁଟିଆ ରହିଥିବା ବୋଉଙ୍କ ପାଖକୁ । ଯେଉଁଠିକି ସେ କ୍ୱଚିତ୍ ଯାଆନ୍ତି, ଯାହାଙ୍କ ସାଙ୍ଗରେ ସେ କ୍ୱଚିତ କିଛି ଆଳାପ କରନ୍ତି । (ଯେ ସୁଆଡ଼େ ଦୂରରେ ଥାଇ ମଙ୍ଗଳ କରିବେ ବୋଲି ମୋର ମୁଣ୍ଡରେ ଶିକା ଛିଡ଼ିଛି ?) ଏବଂ ସିଧାସଳଖ ଘୋଷଣା କଲେ—ଜାଣିଛୁ ବୋଉ, ମୁଁ ଯାଇଥିଲି ଆଖଣ୍ଡଳମଣିଙ୍କ ପାଖକୁ । ଆଶା କଲେ ଯେ ବୋଉ ନିଜେ କହି ବସିବ, ଜଳ ଆଉ୍ ।

କିନ୍ତୁ ନୀରବତା ।

ପୁଣି ନୀରବତା ।

କ'ଣ ହେଲା ? ତା'ହେଲେ କଣ ସବୁ ମିଛ, ସବୁ ଭୁଲ୍, ମୂଳରୁ ଶେଷ ଯାଏ ?

ଅବଶେଷରେ ସେ ଆଉ ଧୈର୍ଯ୍ୟ ଧରି ପାରିଲେ ନାହିଁ । ପଚାରି ଉଠିଲେ, "ବୋଉ, ମଣି କ'ଣ ତୋତେ ସତରେ ସପନେଇଥିଲେ ?"

" ଏଁ ?"

ବୃଦ୍ଧାଙ୍କର ବୁଝିବାକୁ ସମୟ ଲାଗିଲା । କିନ୍ତୁ ବୁଝିଲା ପରେ ସେ ଯେତେବେଳେ ହସିଲେ, ଏକ ବିସ୍ମୃତ ପାଚିଲା ପାଟିର ହସ, ତା'ର ମୌଳିକ ଉପାଦାନ ହେଲା— ମୋର ଏଇ ପୁଅଟା ଏତେ ସନ୍ଦେହୀ କାହିଁକି ?

ସେଇଠୁଁ ସେ ଆରମ୍ଭ କଲେ । ଗୋଟାଏ ବିରାଟ ମହାଭାରତ ପୁରୁ କଳ୍ପପର— "ତତେ ଯେତେବେଳେ ଛଅ ପୂରି ସାତ । ଦୁର୍ବଳିଆ ପିଲାଟା । ସବୁବେଳେ ବେମାର ପଡ଼ୁଥିଲୁ । ସେଥିରେ ପୁଣି ହେଲା ଟାଇଫଏଡ୍..."

ଅନେକ ସମୟଯାଏଁ ଗ୍ଲଲିଲା ସେଇ କାହାଣୀର ଅପ୍ରତିହତ ସୁଅ । ହେଲେ ଚନ୍ଦ୍ରମଣିବାବୁ ବସି ରହିଲେ । ଏବଂ ତା'କୁ ପିଇଗଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । କିନ୍ତୁ କିଛି ସମୟ ପରେ ସୌଦାମିନୀ, ଓ ତାଙ୍କ ପଛେ ପଛେ ଟୁକୁନ—ଯେ ଆସିଥିଲା ଜେଜେମାଙ୍କ ପାଖରେ କିଛିଦିନ ରହିବ ବୋଲି—ଏବଂ ଅନ୍ୟ କେତେକ ଜ୍ଞାତି କୁଟୁମ୍ବ ଆସି ପହଞ୍ଚିଲେ । ତେଣୁ ଚନ୍ଦ୍ରମଣି ବାବୁ ତାଙ୍କ ମୁହଁକୁ ପୁଣି ଝୁଲେଇ ଦେଲେ, ଯେତିକି ଛପି ରହିଥିବା ଗାର ଗୁଡ଼ାକୁ ଫେରେଇ ଆଣିବାକୁ ଚେଷ୍ଟା କଲେ, ଓଠକୁ ଆହୁରି ଚାପିଲେ, ଆଖିକୁ କୁଞ୍ଚେଇଲେ...ମୋଟ ଉପରେ ତାଙ୍କର ସେଇ ମାର୍କାମରା ମୁହଁର ଚେହେରାକୁ ପୁଣି ଥରେ ତୋଳି ଧରିଲେ । ସତେକି ଏଭଳି ଉଦ୍‌ଭଟ ଗାଲୁଗପ ସେ ଶୁଣି ନ ଥିଲେ ତାଙ୍କ କାନ ଉଠିବାଦିନୁ ।

କିନ୍ତୁ ଦୁଃଖର ବିଷୟ ତାଙ୍କୁ କେହି ବିଶ୍ୱାସ କଲେ ନାହିଁ । ଅଧିକନ୍ତୁ ଟୁକୁନ ଆବିଷ୍କାର କଲା ଯେ ବଡ଼ବାପାଙ୍କ ମୁହଁ ବି' ଗୋଳ ହୋଇଯାଏ ବାପାଙ୍କ ପରି,

ଯେତେବେଳେ ତାଙ୍କୁ କିଛି ଗୋଟାଏ ଜଣ୍ଡ ମିଳିଯାଏ, ହେଲେ ସେ ତାକୁ ଲୁଚେଇବାକୁ ଚେଷ୍ଟା କରନ୍ତି ବଡ଼ପଣ ଦେଖେଇ । ନାଇଁ, ନାଇଁ, ପାଇଲା ମୁହଁ ନୁହେଁ, ମାଗନ୍ତା ମୁହଁ, ଘୃଣଶିଆ ଶିଶୁର ଓଠ ହାଓଟିଉ···

ଝୁଲୁକର ଆମୋଦରସ ଉଚ୍ଛୁଳି ଉଠିଲା । କିନ୍ତୁ ସେ ହସି ପାରିଲା ନାହିଁ, ଏବଂ ସେଠୁଁ ଭାସ୍କର ପଳେଇ ଆସିଲା, କାରଣ ସେଥିରେ ଆତ୍ମଗ୍ଲାନି ମିଶିଗଲା କୁଆଡ଼ୁ ଆସି । କାହିଁକିନା ତାର ମନେ ପଡ଼ିଗଲା ସେ ଯେଉଁ ମାନସିକ କରିଥିଲା ମଣିଙ୍କ ପାଖରେ । ତାଙ୍କୁ ଡାକିଥିଲା ତା' କୋଳରେ ପିଲାଟିଏ ଦେବାପାଇଁ । ଆଉ କହିଥିଲା ଯେ ସେ ସୁନ୍ଦର ନ ହେଲେ ନାହିଁ, ଖୁସିବାସିଆ ହେଉ । ମାନେ ବଡ଼ବାପାଙ୍କ ପରି ଦେଖା ନ ଯାଉ । ଛିଃ, ଛିଃ, ମୁଁ ଏମିତି କେମିତି ଭାବିଲି ?

# କଳା କୁହୁଡ଼ି

ଆମର ଏଇ ଅମ୍ମୁ ଜଣକ ଅନ୍ୟମନସ୍କ ହେବାକୁ ଭଲ ପାଏ । ଯେମିତିକି ତାକୁ ସମସ୍ତେ କବି କିମ୍ବା ଭାବୁକ ବୋଲି ମନେ କରିବେ । ନ ହେଲେ ସେ ମିଛୁଟାରେ କଥା ମଝିରେ କୁହୁଡ଼ିକୁ ଅନେଇଛି କାହିଁକି ? କୁହୁଡ଼ିରେ କଅଣ ଅଛି—କୋଉ ଆକାର, ପ୍ରକାର ନା ରଙ୍ଗ ?

ଅନିମା ଏହି ମର୍ମରେ ମନେ ମନେ ଥଟ୍ଟା କଲା ଅମରେଶକୁ । କିନ୍ତୁ ପରିହାସରେ ବିଦ୍ରୂପ ଲୁଚି ରହି ନ ଥିଲା ବୋଲି କହିହେବ ନାହିଁ । ବରଂ ଆଶଙ୍କା ହେଉଥିଲା ଯେ ସେ ରାଗିଯାଇପାରେ ଯଦି ଅମରେଶ ବେଶି ସମୟ ଯାଏଁ ଅନେଇ ରହେ କୁହୁଡ଼ିକୁ । କାରଣ ସକାଳୁ ସକାଳୁ ସେ ଏଇ ତଥାକଥିତ ପ୍ରଗତିଶୀଳ ଯୁବ ଛାତ୍ରାବାସକୁ କେବଳ ହିତପ୍ରଶ୍ନ ଗପସପ୍ କରିବାକୁ ଆସିନାହିଁ । ସେ ଆସିଛି ଅମରେଶ ପାଇଁ । ଉଭୟଙ୍କ ଧାରଣା ଯେ ସେମାନେ ପରସ୍ପରକୁ ଭଲ ପାଆନ୍ତି, କିନ୍ତୁ ଅନିମାର ଧାରଣାରୁ ବଳି ବିଶ୍ୱାସ ଯେ ଆଜି ନ ହେଲେ କାଲି ଅମରେଶ ଖୋଲିଖୋଲି କହିବ ସେଇ କଥାଟା । ......କହିବା ଉଚିତ । ଆମେ ଆଧୁନିକ, ଏକବିଂଶ ଶତାବ୍ଦୀର ଆବାହକ କହିଲେ ଚଳେ । ଆମକୁ କୋଉ ଡର ମାଡ଼ୁଛି ନା ଲାଜ ଲାଗୁଛି ? କିନ୍ତୁ ଲୋକଟାର ଏଇ ଯୋଉ ଅଭିଲା ଢ଼ଙ୍ଗ, ଢ଼ଙ୍ଗ ହେଉ କି ବଦଭ୍ୟାସ......ଅନିମା ଧୈର୍ଯ୍ୟର ସହିତ ଅପେକ୍ଷା କଲା । ଆଶା ଥିଲା ଯେ ଏଇ କ୍ଷଣିକ ବ୍ୟତିକ୍ରମ କ୍ଷଣିକ ହୋଇ ରହିବ ।

ସେଇଆ ହେଲା । ତେଣୁ ଅନିମା ଜାଣିପାରିଲା ନାହିଁ ଯେ ଅମରେଶ ଯଥାର୍ଥରେ ଅନ୍ୟମନସ୍କ ହୋଇଥିଲା । ମିଛୁଟାରେ କୁହୁଡ଼ିକୁ ଅନେଇ ନ ଥିଲା । ଯେତେବେଳେ ପ୍ରେମାସ୍ପଦା ଅନିମା ତା'ର ସ୍ୱାଭାବିକ ଉତ୍ତେଜିତ ଭଙ୍ଗୀରେ (ଯେହେତୁ ତା'ର ଆଖିପତା ଦି'ଟା ଅତ୍ୟଧିକ ଚଞ୍ଚଳ ହୋଇଉଠେ, ସେ ଥରକୁ ଥର ତା'ର ଚୂନାକେଶକୁ କପାଳରୁ ଘଉଡ଼େଇ ଦିଏ, ତା' ପାଟି ଖଣ୍ଡ ବାଜିଯାଏ, ଏବଂ ସେ ଲୋଭନୀୟା ଦେଖାଯାଏ) ତରୁଣ ମନ୍ତ୍ରୀ ଶକ୍ତି ବର୍ମନଙ୍କ ଆଖିଦେଖା କୁକର୍ମ ବିଷୟରେ କେତେ କ'ଣ କହିଯାଉଥିଲା, ଅମରେଶ ଆଉ ଜଣକୁ ଦେଖୁଥିଲା । କୁହୁଡ଼ି ଭିତରେ । ମନେ ହେଉଥିଲା ଯେ କୁହୁଡ଼ି ଯୋଗୁ ସେଇ ଲୋକଟିର ଆକାର, ପ୍ରକାର ଓ ରଙ୍ଗ ଆହୁରି ଉଜ୍ଜ୍ୱଳ ହୋଇ ଫୁଟିଉଠିଛି । ସେ ରମଣୀ ନ ହେଲେ ମଧ୍ୟ ରମଣୀୟ, ଲୋଭନୀୟ ନ ହେଲେ ମଧ୍ୟ ବରଣୀୟ । ......କାହିଁକି ନା ସେ ମୋ ବାପା ! ଉଦ୍ଧୃତ ଚିହ୍ନ ଭିତରେ ଥିବା ବାପା । ଯାହାଙ୍କୁ ମୁଁ ନିଜେ ବାଛିନେଇଛି ।

ତା'ଛଡ଼ା ବୋଧହୁଏ ଅନିମା ପୂରାପୂରି ଚହ୍ନିନାହିଁ ଆଜିଯାଏ ଅମରେଶଙ୍କୁ। ଚହ୍ନିଥିଲେ ବୁଝିଥାଆନ୍ତା ଯେ ଏଇ ସ୍ୱଳ୍ପଭାଷୀ ଖେଳୁଆଡ଼ ଯୁବକ ତା'ର ସାଙ୍ଗସାଥୀ-ମାନଙ୍କଠାରୁ କିଛି ଅଧିକ ଏକୁଟିଆ। ତେଣୁ ତା' ପାଖରେ ପ୍ରକୃତରେ ଅଛି କିଛି ସ୍ୱପ୍ନ, କିଛି ଭାବୁକତା। ଯଦିଓ ସେ କବିତା ଲେଖେନାହିଁ କି ତାଙ୍କୁ ଭାବନାଗ୍ରସ୍ତ ଇଣ୍ଟେଲେକ୍‌ଚୁଆଲ ବୋଲି ବୁଝାଯିବ ନାହିଁ।

ତେବେ କବି ହେଉ କି ଯାହା ହେଉ, ସେ ଯେ ସାତମତ ଯୁବକ ଏଥିରେ ସନ୍ଦେହ ନାହିଁ। କାହିଁକନା ଦେଖାଯାଉଛି ଯେ ସେ ଅବଲମ୍ବେ ଗୋଟିଏ ଭାବର ଶାଖାରୁ ଆଉ ଗୋଟିଏ ଭାବର ଡାଳକୁ ଡିଆଁ ମାରିପାରେ। ଯଥା କୁହୁଡ଼ି ଭିତରେ ଥିବା କେଉଁ ଏକ ବାପା ତାଙ୍କୁ ଅବଶ୍ୟ ଅନ୍ୟମନସ୍କ କରିଦେଇଥିଲେ ମୁହୂର୍ତ୍ତିକ ଆଗରୁ, କିନ୍ତୁ ଏଇକ୍ଷଣି ସେ ସମ୍ପୂର୍ଣ୍ଣ ଭିନ୍ନ ଅନ୍ୟ ଏକ ଭାବରେ ମନସ୍ଥ। ଅନିମା ଉଦାଚରି ରସରସିଆ ଶେଷକଥାକୁ ପୂରାପୂରି ଶୁଣିପାରୁନାହିଁ। ଯେହେତୁ ତା'ର ହଠାତ୍ ଆଖିରେ ପଡ଼ୁଛି ଅନିମାର ଶାଢ଼ୀ ଖସା ବ୍ଲାଉଜ ତଳୁ ଫୁଟିଉଠିଥିବା ମୁନଟିଏ।...ତାଙ୍କୁ ମୁଁ ଭଲ ଭାବରେ ଛୁଇଁନାହିଁ। ତା' ସାଙ୍ଗରେ ଖେଳିବା ଦୂରର କଥା। ଯଦିଓ ସେ ମୋ ଗାର୍ଲ୍‌ଫ୍ରେଣ୍ଡ୍। କିନ୍ତୁ କାହିଁକି ସେମିତି କରିବ ନାହିଁ ? ମୁଁ ଜାଣେ ସେ ଆପତ୍ତି କରିବ ନାହିଁ। ସେ ଚୁମାକୁ ମନା କରିନାହିଁ ପ୍ରଥମ ଦିନଠୁଁ। ସ୍ତନ'କୁ ନାହିଁ କରିବ କାହିଁକି ?...

"ମୂଲ୍ୟବୋଧ, ମାଇ ଫୁଟ୍! ମନେ ଅଛି ଆମର ଏଇ ନେତା କେମିତି ଗର୍ଜୁଥିଲେ ସେଦିନ ବୋଟ୍‌କ୍ଲବ ପଡ଼ିଆରେ ? 'ଯେ ଭାରତୀୟ ପ୍ରଜା ପରିଷଦର ମୂଲ୍ୟମାନ ନାହିଁ, ମୂଲ୍ୟବୋଧ ସାହିଁ, ଇତ୍ୟାଦି ଇତ୍ୟାଦି ? ଅବଶ୍ୟ ଗୋଟାଏ ହିସାବରେ ସ୍ୱାଙ୍କର ଅଛି ସେଥିରୁ କିଛି—ନା କ'ଣ କହୁଛ ? ଧର୍ମନିରପେକ୍ଷତା, ସେକ୍ୟୁଲାରିଜମ୍। ନ ହେଲେ କ'ଣ ସେ କୁଳୀନ ବ୍ରାହ୍ମଣ ହୋଇ ବୁଢ଼ୀ ଶବ୍‌ନମ୍ ଅହମଦ୍‌ଙ୍କ ସାଙ୍ଗରେ ଏମିତି ଲଟପଟ ହୋଇ ପାରୁଥାଆନ୍ତେ ?" ଅନିମା ହସି ଉଠିଲା। ଏବଂ ଅମରେଶ ଦେଖିଲା ତା' ଦାନ୍ତପାଟିର ସେଇ ସାମାନ୍ୟ ବୈଷମ୍ୟଟିକୁ, ଗୋଟିଏ ଦାନ୍ତ ଉପରେ ପଡ଼ୋଶୀର ମଧୁରିଆ ଆକ୍ରମଣ, ଅନିମା ଦେହଶ୍ରୀର ବିଶିଷ୍ଟ ସୁନ୍ଦର ଆଳୁଦୋଷ।

"ଆରେ, ଇଏ କ'ଣ କରୁଛ ?" ଅନିମା ମିଛ ଆତଙ୍କରେ ପାଟି କରିଉଠିଲା।

କିନ୍ତୁ ଅମରେଶ ତା'ର ମିଛକୁ ବୁଝିଥିଲା। ତେଣୁ ସେ ଝରକାର ପରଦାକୁ ଟାଣିଆଣି କୁହୁଡ଼ି ଆଲୁଅକୁ ଆପାତତଃ ଦୂରେଇ ଦେବାରେ ହେଲା କଳନାହିଁ। ସେଇଠୁଁ ତତ୍‌କ୍ଷଣାତ୍ ଅନିମା ପାଖକୁ ଯାଇ ତା'ର ଦେହକୁ ଚିପି ଧରିଲା, ଏବଂ ଅନୁଭବ କଲା ଉକ୍ତ ଅପ୍ରତିହତ ମୁନ ଦୁଇଟିକୁ।

ପ୍ରବଳ ଆବେଗର ଧର୍ଷଣରେ ସ୍ତୁତିର ଯେଉଁ ଶବ୍ଦ ଶୁଣାଗଲା, ସେଥିରେ ପ୍ରେମ ସାଙ୍ଗକୁ ଆଉ ଗୋଟାଏ ଭାବର ନିର୍ଘୋଷ ଶୁଣାଗଲା। ଯେଉଁଥିରେ ଅମରେଶ ନିଜେ ଆଶ୍ଚର୍ଯ୍ୟ ହେଲା। ଏବଂ ଖୁସି ହେଲା। ଯେ ପ୍ରତି ଥର ତା' ଅଧା-ଅନୁଭବ ସାଙ୍ଗକୁ ସେହି

ଉନ୍ନତ ଖବ ତଥା ଭବିଷ୍ୟତର ପଲ୍ଲବିତ ଚିନ୍ତାଉଛି ନଳକୁ···ଭାରତୀୟ ପ୍ରଜାପରିଷଦ ! ଆମେ ଦୁଇଜଣ ପଲ୍ଲୀ ସମାଜର ଅନ୍ୟତମ ପ୍ରେମିକ ପ୍ରେମିକା ନୋହୁଁ । 'ଆମେ ହେଉଛୁ ଏଇ ନବୋଦିତ ବାଲ୍ଲକାଣ୍ଡ ପାର୍ଟିର କର୍ମୀ । କାର୍ଯ୍ୟଧାରୀ ସଦସ୍ୟ ନ ହେଲେ ମଧ୍ୟ ହେବୁ କାଲି ସକାଳେ, ପରୀକ୍ଷା ସରିଲା ପରେ ଏବଂ ଯଥାଶୀଘ୍ର ମୁଁ ହେବି ତା' ଯୁବଶାଖାର ସଭାପତି, ଅନ୍ତତଃ ସାଧାରଣ ସଚିବ ଓ ସେ ହେବ ଉପ-ସଚିବ କିମ୍ବା ସେଇଭଳି କିଛି । ମୁଖ୍ୟ ଓ ଉପମୁଖ୍ୟ ଏମିତି କୁଣ୍ଢାକୁଣ୍ଢି ହେବେ, ଯାଉଣୁ ଆସୁଣୁ କୁଣ୍ଢାକୁଣ୍ଢି ହେବେ, ଦେଶ ଓ ଦଶର ମଙ୍ଗଳ ପାଇଁ···

"ଗୁଡ଼, ଗୁଡ଼, କଏ କୋଉଠୁ ଆସି ପହଞ୍ଚିଯିବ ।"

କହିବା ବାହୁଲ୍ୟ ଯେ ଛଡ଼ାଛଡ଼ି ହେବାକୁ ସମୟ ଲାଗିଲା । କିନ୍ତୁ ପରଦା ପୁଣି ଖୋଲିଦେଲା ବେଳକୁ କୁହୁଡ଼ି ତଥାପି ମହଜୁଦ୍ ଥିଲା । ସତେକି ସେ ସହଜେ ପାଲିଯିବା ପାଇଁ ଆସିନାହିଁ । ତା'ର ଆଜି କିଛି କହିବାର ଅଛି ଅମରେଶକୁ, ଯେତେ ଡେରି ହେଉ ପଛେ ।

"ପୁଣି କେବେ ଆସୁଛ ?"

"ଆରେ, ମୁଁ କ'ଣ ଆସିବି ମ ? ତୁମେ ଆସିବ ବୋଲି ନିଜେ ଠିକ୍ କରିଥିଲ ପରା ? ଭୁଲିଗଲଣି ଏତେ ଶୀଘ୍ର ? ଏମିତିକା ଭୁଲାମନ ମୁଁ ଦେଖିନାହିଁ ପୃଥିବୀରେ ! ···ଆଚ୍ଛା, ଶୁଣ ? ଆଉ ମନେରଖ ଏଥର । ଆସନ୍ତା ଶୁକ୍ରବାର ସନ୍ଧ୍ୟା ଏସିଆଡ୍ ଭିଲେଜ୍, 'ଆମେରିକାନ୍ ପାଇ' ରେସ୍ତୋରାଁ । କହିଥିଲି ତୁମର କ'ଣ କାମ ଅଛି ସେଆଡ଼େ । ମୋର ବି ଜଣେ ସାଙ୍ଗ ଅଛି ସେଠି, ମୋତେ ମେଞ୍ଚାଏ ସ୍ପେଶାଲ୍ ନୋଟ୍ ଦେବ ବୋଲି କହିଛି, ଆଇ.ଏ.ଏସ୍ ପ୍ରିଲିମିନାରୀ ପାଇଁ । ତା' ଦାଦିପୁଅ ଭାଇର ନୋଟ୍, ଯେ ୧୯୮୭ ପରୀକ୍ଷାରେ ତୃତୀୟ ହୋଇଥିଲା । ତୁମ ପାଇଁ ଗୋଟାଏ ଜେରକ୍ସ କପି କରିଦେବି କି ?"

ଅନିମା ବିଦାୟ ନେଲା ପରେ ଅମରେଶ ଅନେକ ସମୟ ଯାଏ ଅନେଇ ରହିଲା କୁହୁଡ଼ିକୁ । ଯେମିତିକି ସେ ସେଇ ବିଳମ୍ବିତ ଶୀତ ଧୂସରକୁ ମନାଉଥିଲା । ବିଗତ ମୁହୂର୍ତ୍ତର ସ୍ୱର୍ଣ୍ଣସୁଖକୁ ତା'ର ଉଷୁମକୁ ସ୍ୱୀକାର କରିବା ପାଇଁ ଫୁସୁଲାଉଥିଲା । ···ମୁଁ ଯେତେହେଲେ ତରୁଣ, ଏବଂ ସେ ହେଉଛି ମୋ ତରୁଣୀ । ଆମେ ଏକାଠି ହେବୁ, ଏଇ ହେଉଛି ଜୀବଧର୍ମ । ଏଥିରେ କାହାର ଆପତ୍ତି ରହିବ କାହିଁକି ?

ଅନିମା ଆଇ.ଏ.ଏସ୍. ପରୀକ୍ଷା ଦେବାକୁ ଯାଉଛି । କୃତୀଛାତ୍ରୀ, ସ୍ୱାଭାବିକ ଉଚ୍ଚାକାଙ୍‌କ୍ଷା । ଯେତେଦୂର ସମ୍ଭବ ସେ ପାଇଯିବ କିଛି ନା କିଛି, ଆଇ.ଏ.ଏସ୍. ନହେଲେ ବି ଆଲାଏଡ୍ ସର୍ଭିସ୍ । ମୁଁ ସେଥିରେ ବାଧା ଦେବିନାହିଁ । ପରିଷଦ ପାଇଁ କାମ କର ବୋଲି ବାଧ୍ୟ କରିବି ନାହିଁ । ପାର୍ଟିର ଗୋପନ ପ୍ରେମୀ ହୋଇ ରହିଲେ ସେଇ ଯଥେଷ୍ଟ । ହେଲା ଏବେ ଲୋକେ ଜାଣିବାକୁ, ସରକାର ଜାଣିବାକୁ, ଅନିମା ମିଶ୍ର ଆଇ.ଏ.ଏସ୍. ଓ ଭା.ପି.ପି.ର ନେତା ଅମରେଶ ମିଶ୍ର କେବଳ ପତିପତ୍ନୀ । ସହକର୍ମୀ ନୁହଁନ୍ତି । ନହେଲା

ନାହିଁ ! ତା'ବୋଲି କ'ଣ ମୋ ଦେଶକାମ କୋହଳ ହୋଇଯିବ, ନା ଅନ୍ୟମାଙ୍କ ସଙ୍ଗରେ ମୋର ଯେଉଁ ଭିନ୍ନ କାମ କରିବାର ଅଛି, ସେଥିରେ ଗଣ୍ଡଗୋଳ ହେବ ? ଅମରେଶ କୁହୁଡ଼ି ଉଦ୍ଦେଶ୍ୟରେ ହସିଲା ।

ସେଇଠୁଁ ସେ ସାହସ ପାଇଲା ପରି ଟିକିଏ ଆଖିମିଟିକା ବି ମାରିଲା । ଧାତ୍, ସେ ଅଫିସରଆଣୀ ହେଲେ ମୁଁ କ'ଣ ଖୋଲାଖୋଲି କାମ କରିବି ପରିଷଦ ପାଇଁ ? ମୁଁ କ'ଣ ଜାଣେନାହିଁ ଯେ, ସେଥିରେ ତା' ଚାକିରିରେ ଆଞ୍ଚ ଲାଗିବ ? ନା, ଚାହୁଁଛି ମୁଁ ବି, ପାର୍ଟିରେ ମିଶିବି ନାହିଁ, ଲୁଚଛପା କାମ କରିବି । ଇଚ୍ଛା ଥିଲା ଓକିଲ କି ସାମ୍ବାଦିକ ହୋଇ ପେଟ ପୋଷିବାକୁ । ହୁଏତ ସେ ଚାହୁଁଥିଲେ ମୁଣ୍ଡ ନ ପୂରେଇ ମୁଁ ବି' ଗୋଟିଏ ସରକାରୀ ଚାକିରିକୁ ଧରିବି । ଆଉ ଆମେ ଶାସନକଳର ପେଚ ମୋଡ଼ିବା, ଆମ ଦ୍ୱାରା ଯେତେଟା ସମ୍ଭବ । ଯେମିତିକ ପରିଷଦବାଲା ଆଗେଇ ଆସିବେ, ଅଧିକାଂଶରେ ତାଙ୍କୁ ଇ ଉନ୍ନୟନର ଟଙ୍କା ମିଳିବ, ସେମାନେ ବିଶେଷ ଭାବରେ ଲୋକଙ୍କ ଉପକାର କରିପାରିବେ, ତାଙ୍କୁ ବଶ କରିପାରିବେ, ଅର୍ଥାତ୍ ତାଙ୍କୁ ବୁଝେଇ ଦେଇପାରିବେ ଯେ, ପରିଷଦ ହିଁ ତାଙ୍କର ବନ୍ଧୁ, ସଚ୍ଚା ବନ୍ଧୁ ··କିଛି କ୍ଷତି ଅଛି ସେଥିରେ ? ଆଃ ମୁଁ କହୁନାହିଁ ଯେ, ଆମେ ଭୋଟ କାଗଜର ହେରଫେର କରିବା, ଦୁର୍ନୀତି କରିବା ସ୍ୱାର୍ଥର ପରି । କିନ୍ତୁ କଥା ହେଉଛି ଯେ, ଅଳ୍ପ ବହୁତ ଶଠେଶାଠ୍ୟଂ ସମାଚରେତ୍ ନ କଲେ ଚଳିବ କେମିତି ? ସହଜେ କ'ଣ ଏଇ ସାମନ୍ତବାଦୀ ପୁଞ୍ଜିବାଦୀ ସରକାରକୁ ହଟେଇ ହେବ ?

କୁହୁଡ଼ି ପାତଳା ହୋଇ ଆସୁଛି । ଅମରେଶର ସେଥିରେ ଖୁସି ହେବାର କଥା । ଯେ ଧର୍ମବକକୁ ଉପଯୁକ୍ତ ଉତ୍ତର ମିଳିଛି, ସେଇଥିପାଇଁ ସେ ବାଟ ଛାଡ଼ିଦେଇ ଫେରିଯାଉଛି । କିନ୍ତୁ ତା'ର ସନ୍ଦେହ ହେଲା ଯେ, ଯିଏ ଆସିଥିଲା, ସେ ହଠାତ୍ ଛୁଟିପିଟି ହୋଇ ପଳେଇ ଯାଉଛି । ସତେ କି ସେ ଭୁଲ୍‌ରେ ଅଟକି ଯାଇଥିଲା ଏଠି, ଏଭଳି ଗୋଟାଏ ଇତର ନୀଚ ପ୍ରକୃତିର ଲୋକକୁ କୌଣସି ଗୁରୁତର ପ୍ରଶ୍ନ ପଚାରିବାର ନୁହେଁ ।

ହଠାତ୍ ଦିଶିଯାଉଛି ଡି.ଟି.ସି. ବସ୍‌ର ଅପରିଚ୍ଛନ୍ନଆ ଶାଗୁଆ-ହଳଦିଆ ଦେହ । ଏବଂ ଦପ୍ତର ପାଇଁ, ବିପଣୀ ବଜାର ପାଇଁ, ଟଙ୍କା ରୋଜଗାର ପାଇଁ, ସ୍ତ୍ରୀ ପିଲାଙ୍କ ତଥାକଥିତ ଭବିଷ୍ୟତ ପାଇଁ ଠେଲା-ପେଲା ହେଉଥିବା ଯେତକ ଅଦରକାଣ୍ଡି ଲୋକମାନଙ୍କ ବାକଲିଆ ମୁହଁର ଚେହେରା । ଶୀତ ଧୂସର କଦାପି ଆସି ନ ଥିଲା ତାଙ୍କ ବକଲିଆ ପଣକୁ ଘୋଡ଼େଇବା ପାଇଁ, ସେ ଆସିଥିଲା କେବଳଜଣକର ମହାନତାକୁ ବଢ଼େଇବା ପାଇଁ । କାରଣ ଦୁହେଁ ସମ୍ପର୍କୀୟ ଏକା ଶ୍ରେଣୀର । ଜଣେ ବିରାଟ ହେଲେ ଆରଟି ବ୍ୟାପକ । ଏବଂ ମୁଁ ଅଲବତ୍ କହିବି ଯେ, ସେ ମୋ ପାଖରେ ଟିକିଏ ରହି-ଯାଇଥିଲା । ମୋତେ ଚହ୍ଲିବା ପାଇଁ ଚେତେଇବା ପାଇଁ ଏବଂ ଗୋଟାଏ କ'ଣ ପ୍ରଶ୍ନର ଉତ୍ତର ପାଇବି ବୋଲି । ପାଇଲା ନାହିଁ ? କାହିଁକି, ମୋତେ କ'ଣ ବୋଲି ଭାବିଥିଲା କି ?

କଅଣ ସତରେ ଖବରଥିଲି ଯେ, ସେଇ ଅଖାଡ଼ୁଆ ପୁରୁଣାକାଳିଆ ବସ୍ଟ ବ୍ୟକ୍ତି ହେଉଛନ୍ତି ମୋ ବାପା ? ?

ଅମରେଶ ଆଖିବୁଜି ତାଙ୍କ ପ୍ରତମୂର୍ତ୍ତିକୁ ହେଜିଲା । ଯାହାଙ୍କୁ ବୁଲୁଡ଼ି କୋଳେଇ କାଖେଇ ଦେଖେଇ ଦେଇଗଲି କ୍ଷଣକ ପାଇଁ । ବୋଧହୁଏ ବେଲ ଦେଖି ଠିକଣା ସମୟରେ । ଯେତେବେଳେ ଅଜମା ଥିଲି ମୋ ନିକଟରେ, ଏବଂ ଆମେ ପୁଣି ଗୋଟାଏ ଘନର ବହାରକୁ ନେଇ ଆଡୁର ଟିକଏ ପାଖେଇ ଆସିଲୁ । ବେଶ୍ କହୁ ପାଖେଇ ଆସିଲୁ କହିଲେ ଚଳେ । କିନ୍ତୁ ତା' ମତଲବ କଅଣ ? ମୋ ପ୍ରେମିକା ତା' ଘରେ, ମୋର ଗୋପନ ବାପା ତାଙ୍କ ଘରେ । ମୁଁ କ'ଣ ଏତେ ଅପାରଗ ହୋଇଛି ଯେ, ଦୁହିଁଙ୍କୁ ଯଥା ସ୍ଥାନରେ ରଖି ନଜର କରିପାରିବ ନାହିଁ ? ନା ତା'ର ଅହଙ୍କାରୀ ମୋ ଯୌବନ ଉପରେ ? ···ଅମରେଶ ବୁଲୁଡ଼ିଆ ପ୍ରଶ୍ନଟାକୁ ମୁଠେଇବାକୁ ଚେଷ୍ଟା କଲା । ତା'ର ପ୍ରତ୍ୟେକ ଶବ୍ଦ, ପ୍ରତ୍ୟେକ ଶବ୍ଦର ଅକ୍ଷର ।

ବୁଲୁଡ଼ି ତାଙ୍କୁ କୋଳେଇ କାଖେଇ ନେଇ ଆସିଥିଲି, ଅମରେଶର ଏଇ କଳ୍ପନାଟିକକ ଅନ୍ୟଥା ନୁହେଁ । କାରଣ ଯେତେ ବସ୍ଟ ହେଲେ ବି ବାବୁ ରଘୁନନ୍ଦନ ଦାସ ଗ୍ରେଟିଆ ଲୋକଟିଏ । ଏବଂ ସ୍ୱାଧମତ କଲା । ଯେଉଁଥିପାଇଁ ହୁଏତ ତାଙ୍କ ପ୍ରାତଃଭ୍ରମଣରତ ଚେହେରା ବୁଲୁଡ଼ି ଭିତରେ ଫୁଟିଉଠୁଥିଲି ବୋଲି କହିଲେ ବାସ୍ତବ ଦୃଶ୍ୟର ଅତିରଞ୍ଜନ ହେଲା ବୋଲି କହିହେବ ନାହିଁ । କିନ୍ତୁ ତା'ଛଡ଼ା ଆଉ କ'ଣ ଅଛି ? ଏବେ ମଧ୍ୟ କ'ଣ ଅଛି କେଉଁ ଅଲଗା ଜ୍ୟୋତିର ସଙ୍କେତ ? ଏକଦା ଅବଶ୍ୟ ଏକାଧିକ ବନ୍ଧୁ ତାଙ୍କ ଚେହେରାରେ ଦେଖିଥିଲେ ଏକ ଅପ୍ରତ୍ୟାଶିତ ବହ୍ନିର ଚମକ । ଉଚ୍ଚ କପାଳ, ଶ୍ରେଷ୍ଠ ଆଖି, ଆଗକୁ ବାହାର ଆସିଥିବା ଯୋମଣି, ଓ ଚଉଡ଼ା ଓଠ ବଶିଷ୍ଟ ପ୍ରାୟ କଦାକାର ଚେହେରାର ଏକ ବଚଣ କରାମତ । ଯାହା ଫୁଟିଉଠୁଥିଲି ତାଙ୍କ ଅଳ୍ପସ୍ୱଳ୍ପ କଥାକୁହାରେ, ଏବଂ ସୁଦୀର୍ଘ ନୀରବତାରେ । ଏବଂ ସୁନିର୍ଦ୍ଦିଷ୍ଟ ହସରେ । ମନେ ହେଉଥିଲି ଯେ, ଏଭଳି ଅଗ୍ନି ନିଆଁ ସହଜେ ଦେଖିବାକୁ ମିଳେନାହିଁ । ଯେଉଁଥିରେ ଜ୍ୱାଳା ନାହିଁ; ଅଛି କେବଳ ଦଂଶନ । କ୍ରୋଧ ନାହିଁ; ଅଛି ନ୍ୟାଯ୍ୟ ଉକ୍ତତା, ଉଦ୍‌ବୋଧନ ନାହିଁ; ଅଛି ଟାଣୁଆ ଚ୍ୟାଲେଂଜ୍ ଏବଂ ଶେଷକୁ ବିଷାଦର ଆଳରେ ତାଙ୍କ ବଡ଼ପଣର ଗର୍ବ—ତୁମେ ମୋତେ ସ୍ୱୀକାର କରିବାକୁ ବାଧ୍ୟ । ମୋତେ ଅନୁସରଣ କର ବା ନ କର, ତୁମ ଇଚ୍ଛା । ମୁଁ କେବଳ ଗାନ୍ଧୀବାଦୀ ସମାଜବାଦୀ କି ଆଦର୍ଶବାଦୀ ନୁହେଁ, ମୁଁ ଅନନ୍ୟ—ମାନେ ଗୋଠଖଣ୍ଡିଆ—ମାନେ ଶାନ୍ତି ପାଇଁ ସାଲିସ୍ କରିବା ମୋ ଧାତୁରେ ଯିବ ନାହିଁ—ମାନେ ମୁଁ ନିହାତି ନିହାତି ଏକୁଟିଆ । ଆସିବ ମୋ ପାଖକୁ ? ଆସିପାରିବ ? ଆସିଲେ ଅବଶ୍ୟ ମୁଁ ଖୁବ୍ ଖୁସି ହେବି, ଆଉ ମୋ ଆନନ୍ଦର ହସ ହସିବି । ଏଇ ଝଲକଟିଏ ହେଲା ତା'ର ଶ୍ରେଷ୍ଠମୋଟ ନମୁନା ବୁଝିଲି ?

ଏବେ ମଧ୍ୟ ଅଛି ସେଇ ନିଆଁର ଧାସେ ? ମନେ ହେବ ଯେ ଅଛି, ନ ହେଲେ ଅମରେଶର ଆଖିରେ ପଡ଼ି ନ ଥାଆନ୍ତା । କିନ୍ତୁ ବୀରଯୁଗ ତ କେବେଠୁ ଗଲାଣି, ଆଜିକାଲିକାର ଚତୁର ସୁବୁଦ୍ଧିଶୀଳ ବୋଫର୍ସ ଯୁଗରେ ଅମରେଶର ଏଭଳି ଜ୍ୟୋତିଦର୍ଶନକୁ କ'ଣ ନମ୍ରଭାବେ ଗ୍ରହଣ କରାଯିବ ? ନା ତା' ଚରିତ୍ରର ବୈଜ୍ଞାନିକ ବିଶ୍ଳେଷଣ କରିବା ଉଚିତ, ଯେ କେଉଁଥିପାଇଁ ସେ ନିଜକୁ ଏମିତି ନିରର୍ଥ ଭାବୁଛି, ଖୋଜୁଛି କେଉଁ ଅସଲ ଦେଶ କି ଅସଲ ବାପ ? ସହଜେ ଏଭଳି ପ୍ରଶ୍ନର ଉତ୍ତର ଦେଇହେବ ନାହିଁ । ସେଥିପାଇଁ ଆଉ ଗୋଟାଏ କାହାଣୀ ଲେଖିବାକୁ ପଡ଼ିବ ।

ଯାହାହେଉ ବର୍ତ୍ତମାନର ବୃଦ୍ଧ, ଚନ୍ଦାମୁଣ୍ଡିଆ ଏବଂ ଐତିହାସିକ ରଘୁବାବୁଙ୍କୁ ଅମରେଶ ଜାଣିଥିଲା ସିନା, ତାଙ୍କୁ ସ୍ୱଚକ୍ଷୁରେ ଦେଖି ନ ଥିଲା କେବେ, ଏଇ ମାସେ ଦି'ମାସ ପୂର୍ବରୁ । ଦେଖିଲା ଏଇ ଦିଲ୍ଲୀରେ, ଗୋଟିଏ ଆଞ୍ଚଳିକ ସମାରୋହରେ । ତେବେ ସେଇଦିନଠୁଁ ସେ ଲକ୍ଷ୍ୟ କରିଛି ଯେ, ଭଦ୍ରଲୋକ ପ୍ରାୟ ହସନ୍ତି ନାହିଁ, କିନ୍ତୁ ଯେତେବେଳେ ହସନ୍ତି ନା । ଅମରେଶର ଦେହ ଉଲୁସି ଉଠେ ତାଙ୍କୁ ମନେ ପକାଇ । ସେ ଭାବେ ଯେ, ଏଇ ମହାର୍ଘ ହସର ଉଦ୍ଦେଶ୍ୟ ଓ ଅଭିପ୍ରାୟ ଖାସ୍ ତା'ରି ପାଇଁ । ଯାହାକୁ'ଇ ପାଇବା ପାଇଁ ସେ ଅପେକ୍ଷା କରିଥିଲା ଆଜଯାଏଁ । ସେ ବି ଦେଶ କାମ କରିପାରିବ, ସଚ୍ଚା ଦେଶକାମ—ନିଃସ୍ୱାର୍ଥ, ନିରଳସ । ଯଜ୍ଞ ନିଆଁରେ ନିଜକୁ ପୋଡ଼ିଲା ପରି, ଜଳଜଳ କରି । ସେହି ମୁହୂର୍ତ୍ତରେ ସେ ଯେଉଁ ରୋମାଞ୍ଚ ଅନୁଭବ କରେ, ତା'ର ଅର୍ଥ କଅଣ ସେ ବୁଝିପାରେ ନାହିଁ । (ଥରେ ସେ ନିଜକୁ ଧିକ୍କାରିଲା, ବିକାରଗ୍ରସ୍ତ ରୋଗୀ ବୋଲି ଭାବିଲା, କାହିଁକିନା ତା'ର ମନେପଡ଼ିଲା ଯେ, ପିଲାଦିନର ପ୍ରେମିକା ସୁମିତା ସାଙ୍ଗରେ ଯେଉଁ ସେକ୍ସ ହୋଇଥିଲା ସେଥିରେ ବି' ଠିକ୍ ଏମିତିକା ରୋମାଞ୍ଚ ଆସିଥିଲା—ନିଜକୁ ଅଜାଡ଼ି ଦେବାର, ସାରି ଦେବାର···) କିନ୍ତୁ ସେ ନିଜକୁ ବୁଝାଏ ଯେ, ଯାହା'ର ମୂଳ ନିଆରା, ରଘୁବାବୁଙ୍କ ଅବଦାନ । ସେ ଯାହା ହାସଲ କରିଛନ୍ତି ତାଙ୍କ ସାରା ଜୀବନର ସାଧନାକୁ ନେଇ, ତା'ର ପ୍ରଶ୍ନବାଚୀ ବିରଦାନ । ସତେ କି ସେ ସେଥିରୁ ଟିକିଏ ବଢ଼େଇ ଦେବାକୁ ଚାହାଁନ୍ତି ମୋ ହାତକୁ । ଅତି ଶରଧାରେ । ହଁ, ତାଙ୍କ ଅପରୂପ ସ୍ମିତହାସର ମତଲବ ସେଇଆ । ମାନେ— । ଏଇଠି ସେ ଅଟକି ଯାଏ, ଆଗକୁ ଭାବିବାର ସାହସ କରିପାରେ ନାହିଁ । ମୁଁ ସିନା ତାଙ୍କୁ ବାପା ବୋଲି ମଣୁଛି, ସେ କ'ଣ ମୋତେ ସେଇ ଦୃଷ୍ଟିରେ ଦେଖନ୍ତି ? ଆପଣା ପୁଅ ପରି ?

ଅମରେଶ ଜାଣେ ଅଞ୍ଚଳର ଅନ୍ୟମାନଙ୍କ ପରି, ଯେ ରଘୁବାବୁ ସ୍ୱଇଚ୍ଛାରେ ମନ୍ତ୍ରୀପଦକୁ ନାହିଁ କରିଛନ୍ତି । ସରକାରଙ୍କ ହାତରୁ ଚେନାଏ ଜମି କି ଘରଖଣ୍ଡିଏ ନେବାକୁ ଚାହିଁ ନାହାନ୍ତି, କାହିଁକିନା ସେ ଏଇ କଳୁଷିତ ସରକାରର କାଣିଚାଏ ଅନୁଗ୍ରହ ପାଇବାକୁ ଭୟ କରି ଆସିଛନ୍ତି । କାଳେ ସେଥିରେ ତାଙ୍କର କାସ୍ତା ନଷ୍ଟ ହୋଇଯିବ ! ଏପରି କି ତାଙ୍କର ଦ୍ୱିତୀୟ ହାର୍ଟ ଅପରେସନବେଳେ, ଯେତେବେଳେ ତାଙ୍କୁ ବମ୍ବେ ଯାଇ ଅନେକ

ଖର୍ଚ୍ଚାନ୍ତ ହେବାକୁ ପଡ଼ିଲା, ସେ ସରକାରଙ୍କ ପ୍ରତିନିଧିଙ୍କୁ କ୍ଷମା ମାଗିଲେ । କହିଲେ—ମୋର ସାହାଯ୍ୟ ଲୋଡ଼ା ନାହିଁ, ଧନ୍ୟବାଦ । ମୋର ନିଜ ଲୋକ ଅଛନ୍ତି । ଯଦିଓ ତାଙ୍କର ସ୍ୱଚ୍ଛଳ ତଥା କ୍ଷମତାପନ୍ନ ନିଜ ଲୋକ ବିଶେଷ କେହି ନାହାନ୍ତି ବୋଲି କହିଲେ ଭୁଲ୍ ହେବନାହିଁ । ଲୋକଟା ଜାଣିଶୁଣି ନିଜକୁ ନିଃସ୍ୱ ନିର୍ଧନ ଶକ୍ତି କରି ରଖିଛି, ଆପଣା ଆଦର୍ଶର ଗାରିମାକୁ ବଜାୟ ରଖିବା ପାଇଁ । ସେଇଲାଗି ଅଦୃଷ୍ଟ ବି କ'ଣ ଶତ୍ରୁତାର ନଇଁତାବଡ଼ା ଲଦିଦେଲା ତାଙ୍କ ଉପରେ, ମଜା ଦେଖିଲା ପରି ? ଅଳ୍ପ ବୟସରେ ତାଙ୍କ ସ୍ତ୍ରୀକୁ ନେଇଗଲା ? ଏବଂ ଶେଷ ମଫସଲିଆଣୀ (ଯାହା ଲୋକମୁଖରେ ଶୁଣିବା କଥା) ଝିଅଟିଏ ଛଡ଼ା—? ଅମରେଶର ରାଗ ଆସେ ଭଗବାନଙ୍କ ଉପରେ ।

କିନ୍ତୁ ତା' ବୋଲି ସେ ଯେ ପୁଅଟିଏ ପାଇବା ପାଇଁ ଶୋକେଇଛନ୍ତି ଓ ମୁଁ ଆସି ପହଞ୍ଚିଗଲି ତାଙ୍କ ବୁଢ଼ା ବୟସରେ, ସେ କଥା ନୁହେଁ । ମୁଁ ଏତେ ବୋକା ନୁହେଁ କି ଲୋଭି ନୁହେଁ ! ଅମରେଶ ନିଜକୁ ଉଆଁରିବାରେ ହେଳା କରେ ନାହିଁ ।

ଏଇକ୍ଷଣି ତାଙ୍କ ସ୍ୱରୂପକୁ ହେଜିଲାବେଳେ ଅମରେଶର ମନେହେଲା ଯେ, ବୁଢ଼ାଙ୍କ ଭିତରେ ତାଙ୍କର ସେଇ ଅନବଦ୍ୟ ହସ ବି' ଦିଶିଯାଉଥିଲା, ଯେତେବେଳେ ସେ ଆମ ହଷ୍ଟେଲ ବାଟ ଦେଇ ଗଲେ, ମୋର ଏଇ ଝିରକାର ସାମ୍ନା ସାମ୍ନି ହୋଇ ଏବଂ ସେ ବୁଝିଲି ଯେ ପ୍ରଶ୍ନ ବୁଢ଼ାଙ୍କର ନୁହେଁ, ବୁଢ଼ାଙ୍କର ପରଦା ତଳେ ତାଙ୍କର, ଗୋପନ ପୁଅ ପ୍ରତି ବାପର । ଏବଂ ପ୍ରଶ୍ନର ଶବ୍ଦ, ଶବ୍ଦର ଅକ୍ଷରକୁ ମଧ୍ୟ ବେଶ୍ ପଢ଼ି ହେଉଛି । କହୁଛନ୍ତି,

—ଯାହା କରୁଛୁ କର ପଛେ (ଅନିମାକୁ ନେଇ କି ତନିମାକୁ ନେଇ) ଆସିବୁ ତ ମୋ ପାଖକୁ ? ଆସିବୁ ନା ?

ସେଇଠୁଁ ସେ ବି ତା'ର ଉତ୍ତର ଦେଲା ଆଧୁନିକ ପୁଅ ପଣିଆର ନିର୍ଭୀକତା ସହି ।

—ଅବଶ୍ୟ ଆସିବ । ମୋତେ କ୍ଷମା କର ମୁଁ କ୍ଷଣକ ପାଇଁ ସ୍ୱାର୍ଥୀ ହେବାକୁ ବସିଥିଲି । ତୁମକୁ ନିଶ୍ଚୟ ବାଧିଥିବ ମୋ କଥା । ଯେ ମୁଁ ଭିତରିଆ ଫିସାଦିଆ କାମ କରିବି ବୋଲି ଚାହୁଁଛି ଏଇ ଖଳ ସରକାରକୁ ଓଲଟେଇବା ପାଇଁ । ନା, ମୁଁ ତୁମ ପୁଅ । ଅନିମା ଆଇ.ଏ.ଏସ୍. ହେଲେ ହେଉ, ମୁଁ ସିଧାସଳଖ ଲଢ଼େଇ କରିବି ଏଇ ସରକାର ସାଙ୍ଗରେ ।

ମାନେ ପ୍ରଜା ପରିଷଦରେ ମିଶିବି । ତୁମର ତ କିଛି ଦଳବଳ ନାହିଁ, ଖାଲି ଗୋଟାଏ ଆଦର୍ଶ, ତା'ହେଲେ ଆଉ କ'ଣ କରିପାରିବ କହୁନା ? ଆଜି କେଉଁଠି କୋଉ ପାଞ୍ଚଜନ୍ୟ ବାଜୁଛି ଆମ ପାଇଁ ? ସ୍ୱାଧୀନତାର ଡାକ ? ସ୍ୱାଧୀନତା ମିଳିଗଲାଣି କେବେଠୁଁ । ବୁଢ଼ା ହୋଇଗଲାଣି କହିଲେ ଚଳେ, ତା'ର ଚେହେରା ଯାହା ହେଉନା କାହିଁକି । ବାହାରୁ କୋଉ ଶତ୍ରୁ ବି ମାଡ଼ିଆସୁନାହିଁ ସ୍ୱାଧୀନତାକୁ ଲୁଟି ନେବ ବୋଲି । ଧର୍ମରକ୍ଷା ? ସେ ତ ନିର୍ବୁଦ୍ଧିଆ ହାଣୁଆ ଉଗ୍ରପନ୍ଥୀମାନଙ୍କ ପାଇଁ । ଏବଂ କାଳ୍ପନିକତାକାର ବିପ୍ଳବ ବି ପୁରୁଣା

କାଳିଆ ହୋଇଗଲଣି—ଦେଖୁନା ଚୀନ, ରୁଷିଆ ଆଦି ଦେଶରେ କ'ଣ ସବୁ ଘଟୁଛି ? ତା'ହେଲେ ଉପାୟ କଅଣ ? ଏମାନେ ଅନ୍ତତଃ ନୂଆ, ଏମାନଙ୍କର କିଛି ଆଦର୍ଶ ଅଛି, ଗୋଟାଏ ଜବରଦସ୍ତ ଶତ୍ରୁ ଅଛି, ତା' ନାଆଁ ଦୁର୍ନୀତି, ଏବଂ ଏମାନଙ୍କର ଜଣେ ନେତା ଅଛି ଯେ, ମାତିଜର୍ମିଲ ସଚ୍ଚା ସୁନ୍ଦର ବୋଲି ମନେହୁଅନ୍ତି ।

ହଁ, ଆସିବି ତୁମ ପାଖକୁ । ମାନେ ମିଶିବି ସେଇ ଦଳରେ । ମୁଁ ତୁମକୁ କଥା ଦେଉଛି । ଅନୀମାକୁ ବାହା ହେବା ସାଙ୍ଗରେ କିଛି ସମ୍ପର୍କ ନାହିଁ ତା'ର । ଆଉ ତୁମେ ମୋତେ ଆଶୀର୍ବାଦ କରିବ । ଅଲବତ୍ତ କରିବ । ନ କରିବାର କୌଣସି କାରଣ ନାହିଁ । ତୁମେ ନିଜେ ସେଦିନ କହୁଥିଲ ପରା, ଯେ ଏତେଦିନକେ ଏଇ ଦଳେ ବାହାରିଛନ୍ତି ସତସତିକା କିଛି କରିବେ ବୋଲି, ଏଇମାନେ ହିଁ ପ୍ରକୃତରେ ଗାନ୍ଧୀଙ୍କୁ ମନେପକାଉଛନ୍ତି ?

ନା, ଏମିତି ଚଳିବ ନାହିଁ । ମୁଁ ଦିନେ ତୁମକୁ ନିମନ୍ତ୍ରଣ କରି ଆଣିବି ଏଠିକି । ଅନୀମା ବି ଥିବ । ଆଉ ମୁଁ ତୁମକୁ ସାଫ୍ ସାଫ୍ କହିଦେବି ସବୁକଥା । ମୋ ଜ୍ୱଳନ୍ତ ଅଭିଳାଷର କଥା । ଯେ ତୁମେ ହେଉଛ ମୋ ପ୍ରେରଣା ଆଉ ଅନୀମା ମୋ ପ୍ରିୟ, ଏବଂ ଦୁହିଁଙ୍କ ଭିତରେ ଥାଇ ଆଓ୍ୱାନ୍ ଦେଉଛି ମୋ କର୍ମଭୂମିର ଶଙ୍ଖ, ସ୍ୱରଗାମ୍ଭ ପ୍ରଜା ପରିଷଦ ।

ଅମରେଶ ଗୋଟାଏ କୁଦା ମାରିଲା ତା'ର ଗୋଟିକିଆ ରୁମ୍‌ରେ । ସତେକି ସେ ଜଣାଇବାକୁ ଚାହୁଁଥିଲା ଯେ, ତା'ର ଆନନ୍ଦରେ କେବଳ ପ୍ରକୃଷ୍ଟ ଆଦର୍ଶ ନାହିଁ । ତା' ସାଙ୍ଗକୁ ଅଛି ପ୍ରଭୂତ ଯୌବନ, ଦମ୍ଭ ଓ ବେପରୁଆପଣ ।

ଖେଳୁଆଡ଼ ଅମରେଶ ଉତୁରି ଆସିଛି ମଇଦାନ ଉପରକୁ । ସମ୍ଭାଳ ଏଥର !

( ୬ )

ନରହରି ନାଏକ ଏମ୍.ପି.ଙ୍କ ଦିଲ୍ଲୀସ୍ଥିତ ବାସଭବନ । ସଞ୍ଜର ଅନ୍ଧାର ଆସିବ ଆସିବ ବୋଲି ହେଉଛି । ଅଳ୍ପସମୟ ପରେ ଶୀତଦିନିଆ ଲମ୍ବା ରାତି ଆରମ୍ଭ ହୋଇଯିବ । ନରିବାବୁ ତାଙ୍କ କାମରୁ ଫେରିବେ । କର୍ମକ୍ଷେତ୍ର ଅବଶ୍ୟ ଲୋକସଭା, କିନ୍ତୁ ସେଠି ଖାଲି ମୁହଁ ଦେଖେଇଲେ ହେଲା । ଅସଲ କାମ ବାହାରେ, ଦଳଗତ କାମ, ଏବଂ ସାମୂହିକ କଲ୍ୟାଣ ପାଇଁ ନାନା ଦିଆନିଆ, ଧରାଧରି ଓ କୁହାବୋଲାର କାମ । ଘରକୁ ଫେରିଲା ପରେ ମଧ୍ୟ ତା'ର ଅନୁକ୍ରମଣ—ବିଭିନ୍ନ କିସମର ବନ୍ଧୁ ଗଡ଼ିବେ ତାଙ୍କ ପାଖକୁ ଏବଂ ଦେଶର ପ୍ରଗତିକୁ ନେଇ କେତେ ଆଳାପ ଆଲୋଚନା ଚାଲିବ । ଯେତେଦୂର ସମ୍ଭବ ରାତି ଦଶଟା ଯାଏଁ, ମାନେ ଦୂରଦର୍ଶନରେ "ସଂସଦ ସମାଚାର" ଶୁଣିବା ଯାଏଁ । ଆଲୋଚନାର ମୁଖ୍ୟ ଅଂଶ ହେଲା ଏଇ, ଯେ ବର୍ତ୍ତମାନ ଅନ୍ୟ ବିଧାୟକମାନଙ୍କ ଡ୍ରଇଂରୁମ୍‌ରେ କେଉଁପ୍ରକାର ଆସର ଜମିଥିବ, କିଏ କାହା ସାଙ୍ଗରେ ମିଶୁଥିବ, କିଏ କୋଉ ଗୋଷ୍ଠୀକୁ ଫିଟେଇବାର କି ଯୋଡ଼ିବାର ପ୍ରଯତ୍ନ କରୁଥିବ ଇତ୍ୟାଦି ବିଷୟର ବଳିଷ୍ଠ ଅନୁମାନ କରି ତା'ର

ଯଥା ଯୋଗ୍ୟ ପ୍ରତିକାର କରିବା । ଯେପରିକ ଦେଶ ଠିକଣା ବାଟରେ ସ୍ୱଳ୍ପ— ନଣିବାବୁ ଓ ତାଙ୍କ ସାଙ୍ଗସାଥୀମାନଙ୍କର ଉପଯୁକ୍ତ ସାହାଯ୍ୟ ସହକାରେ । ଅନେକ ପାଟିତୁଣ୍ଡ ହୁଏ, ଗରମାଗରମ ତର୍କ ହୁଏ, ବେଳେବେଳେ ଗୃହା ମଧ୍ୟ ଇଡ଼ ହୋଇଯାଏ ସରକାରୀ କାର୍ପେଟ୍ ଉପରେ । କିନ୍ତୁ ଗୋଟିଏ କଥା ବୁଝିବାରେ ବାଧା ରୁହେ ନାହିଁ— ଏଇ ଦେଶକାମ କରିବାଟା ମଜାର ବ୍ୟାପାର !

ରଘୁବାବୁଙ୍କ ଆଖି ସାମ୍ନାରେ ସାଂପ୍ରତିକ ନେତା ସ୍ୱଇମାନଙ୍କର ଏହି ପ୍ରକାର ଆନନ୍ଦ ଉଚ୍ଚତ ଓ ମୁଖରିତ ହୁଏ ପ୍ରତ୍ୟେକ ସନ୍ଧ୍ୟାରେ । ସେ ଅବଶ୍ୟ ଯୋଡ଼ଯାଡ଼ ହୋଇ ବସନ୍ତି ନାହିଁ ତାଙ୍କ ସାଙ୍ଗରେ । ସୋଫାସେଟ୍‌ରୁ ଦୂରରେ ଥିବା ଗୋଟିଏ ଭୁଇଁଲଗା ଗଦି ଉପରେ ଚକା ମାଡ଼ି ବସିଥାଆନ୍ତି । ଚୁପ୍ ହୋଇ ବସିଥାଆନ୍ତି । ବହି ଖଣ୍ଡେ ପଢୁଥାଆନ୍ତି କି କଅଣ ଲେଖାଲେଖି କରୁଥାଆନ୍ତି । କିନ୍ତୁ ପ୍ରଗତିର ଏଇ ଆଧୁନିକତମ ଦୃଶ୍ୟକାବ୍ୟରୁ ସେ କ'ଣ ନିଜକୁ ପୂରାପୂରି ବିଚ୍ଛିନ୍ନ କରି ରଖିପାରୁଥିବେ ? କିଛି ଦେଖୁ ନ ଥିବେ ? ଶୁଣୁ ନ ଥିବେ ? ତେଣୁ ପ୍ରଶ୍ନ ହେଉଛି ଯେ ସେ ଏଠି ବସି ରହିଥାଆନ୍ତି କାହିଁକି ? ନଣିବାବୁ ତାଙ୍କ ବରିଷ୍ଠ ଓ ସମ୍ମାନୀୟ ତଥା ସମ୍ପର୍କୀୟ ଅତିଥିଙ୍କୁ ଗୋଟାଏ ସ୍ୱତନ୍ତ୍ର ରୁମ୍ ଛାଡ଼ି ଦେଇଛନ୍ତି । ସେଠି ଏକୁଟିଆରେ ବସିବାକୁ ତାଙ୍କୁ କିଏ ମନା କରୁଥିଲା ?

ମୋଟ ଉପରେ ସେ କାହିଁକି ଦିଲ୍ଲୀକୁ ଆସିଛନ୍ତି ଏବଂ ଏଠି ରହିଲେଣି ଏତେ ଦିନ, ତା'ର ରହସ୍ୟ ମଧ୍ୟ ବୁଝିହୁଏ ନାହିଁ ।

ସ୍ୱାଧୀନତା ସଂଗ୍ରାମୀଙ୍କ ତାଲିକାରେ ତାଙ୍କ ନାଆଁ ଥିବାରୁ ତାଙ୍କ ପାଖକୁ ମଧ୍ୟ ଗୋଟିଏ ନିମନ୍ତ୍ରଣ ପତ୍ର ଆସିଥିଲା । ଯେ ଅଗଷ୍ଟ ବିପ୍ଳବର ଅର୍ଦ୍ଧଶତାବ୍ଦୀ ଉପଲକ୍ଷ୍ୟରେ ସମୁଚିତ କାର୍ଯ୍ୟପନ୍ଥା ପ୍ରସ୍ତୁତ କରିବା ପାଇଁ ଗୋଟିଏ ତିନିଦିନିଆ ବୈଠକ ବସିବ ଦିଲ୍ଲୀରେ ଏବଂ ସେଥିରେ ମହାଶୟ ଯୋଗଦାନ କରିପାରିଲେ ଆମେ ଉପକୃତ ହେବୁ । କିନ୍ତୁ ଯେ ଏମିତିକା କେତେ ସରକାରୀ ନିମନ୍ତ୍ରଣକୁ ସଦାସର୍ବଦା ଉପେକ୍ଷା କରି ଆସିଛନ୍ତି, ତାଙ୍କର ହଠାତ୍ କାହିଁକି ମନ ବଳିଲା ତା'ର ଖାତିର୍ କରିବା ପାଇଁ ? ପୁଣି ଦିଲ୍ଲୀ କୋଉ ପାଖ ବାଟ ନୁହେଁ, ଏବଂ ତା'ର ଶୀତକଷ୍ଟ ସାଧାରଣ ନୁହେଁ···ବୁଢ଼ାଙ୍କର କଅଣ ହୋଇଛି ? ନବଯୌବନର ଭେଳିକି ? ନା କେଉଁ ବାର୍ଦ୍ଧକ୍ୟସୁଲଭ ଅଜବ୍ ତାଡ଼ନା ?

ହଁ, ଯଦି ଯେ ସେ ବୈଠକରେ କିଛି ଗୋଟାଏ ନୂଆ କଥା କହିବାକୁ ଚାହୁଁଥିଲେ, ତାହାହେଲେ ତାଙ୍କ ଅଭିନବ ଆଗ୍ରହକୁ ବୁଝିହୁଅନ୍ତା ଅଳ୍ପବହୁତ । କିନ୍ତୁ ତା' ମଧ୍ୟ ନୁହେଁ । ସେଠି ସେ ବସିଥିଲେ ଗୁମ୍ ହୋଇ, ତାଙ୍କ ଚଷମାମୁଣ୍ଡିକୁ ସାଉଁଳଉଥିଲେ, ଚଉଡ଼ା କପାଳର ଭୂରୁକୁ ବାରମ୍ବାର ଟେକୁଥିଲେ, ନାକପୁଡ଼ାକୁ ଫୁଲଉଥିଲେ, ଏବଂ ଆଇ ଆଇ ଓଠକୁ ବଙ୍କଉଥିଲେ । ମନେ ହେବ, ସେ ସଭାସଦ୍‌ମାନଙ୍କୁ ଜଣାଇଦେବାକୁ ଚାହୁଁଥିଲେ ଯେ, ଏହି ସଭାର କାର୍ଯ୍ୟକ୍ରମ ପ୍ରତି ଏହିପ୍ରକାର ବିଦ୍ୱେଷ ଓ ବିଦ୍ରୂପର ଇଙ୍ଗିତ ହିଁ ଯଥେଷ୍ଟ, ମୋ ଶବ୍ଦଗୁଡ଼ାଙ୍କୁ ବ୍ୟୟ କରିବା ଅନାବଶ୍ୟକ । କେବଳ ଥରୁଟାଏ,

ଯେତେବେଳେ ପ୍ରସ୍ତାବ ପଡ଼ିଥାଏ ଯେ, ଗ୍ରାମାଞ୍ଚଳର ପ୍ରତି ପଞ୍ଚାଏତ କେନ୍ଦ୍ରରେ ଅଗଷ୍ଟ ବିପ୍ଳବର ପ୍ରଦର୍ଶନୀ ଅନୁଷ୍ଠିତ ହେବ, ବିପ୍ଳବୀମାନେ କିପରି ଭାବରେ ବ୍ରିଟିଶ୍ ସରକାରଙ୍କୁ ନାକେଦମ୍ କଲେ; ତା'ର ସାଧନ ଉପାଦାନମାନଙ୍କୁ ଦର୍ଶାଇବାକୁ ପଡ଼ିବ ଯୁବଜନତାର ଅବଗତି ପାଇଁ, ସେତେବେଳେ ସେ ବି ଗୋଟାଏ ମନ୍ତବ୍ୟର ବୋମା ଛାଡ଼ି ଦେଇଥିଲେ । କହିଲେ—

"ଆଜ୍ଞା, ସେଥିରେ କ'ଣ କିଛି ଲାଭ ହେବ ? ଅବଶ୍ୟ ଯଦି କେଉଁଟା ଏ-କେ-୪୭ ସ୍ନାଇପର୍ ରାଇଫଲ୍ ରଖା ହୁଏ ସେଠି, ତା'ହେଲେ ହୁଏତ ସେମାନେ ଆପ୍ୟାୟିତ ହେବେ । ବୁଝିବେ ଯେ, ଆମ ବାପ ଦାଦାଙ୍କର ଅକଲ୍ ଥିଲା··· ।" ସଭାସଦ୍‌ମାନେ ହସି ଉଠିଲେ । ଏବଂ ମୁହଁ ଚୁହାଁଚୁହିଁ ହେଲେ । ସତେକି ସେମାନେ ସଭା ମଧ୍ୟରେ ଗୋଟାଏ ଗାନ୍ଧିବାଦୀ ଜରଦ୍‌ଗବର ଉପସ୍ଥିତିକୁ ସ୍ୱୀକାର କରିପାରୁଛନ୍ତି ।

ଚନ୍ଦନଦନିଆ ବୈଠକ ବି ସରିଲା । ତା'ପରେ ମଧ୍ୟ କାହିଁକି ପଡ଼ିରହିଛ ଦିଲ୍ଲୀରେ ? ତୁମର ସଫେଇକୁ କ'ଣ ବୋଲି ବିଶ୍ୱାସ କରିବି ? ଯେ ଏଠି ଜଣେ ବିଶିଷ୍ଟ ସ୍ନାନୀୟ ହାକିମ ଅଛନ୍ତି, ତାଙ୍କର ଚିକିତ୍ସାରେ ରହିବା ପାଇଁ ଦିଲ୍ଲୀ ରହଣିକୁ ବଢ଼େଇବାକୁ ପଡ଼ୁଛି ?

ଏବଂ ବସି ରହୁଛ ଏଇ ବୈଠକଖାନାରେ, ସଞ୍ଜ ପରେ ସଞ୍ଜ, ଯେତେକି ଦୁର୍ନୀତି ଓ ଭ୍ରଷ୍ଟାଚାରର ମନ୍ତ୍ରଣା ଶୁଣିବା ପାଇଁ ? ?

ବିଶ୍ୱାସ କରିହେଉନାହିଁ ଯେ ଭିତରେ ଭିତରେ ତୁମକୁ ପାପକଥା ଶୁଣିବାକୁ ଭଲ ଲାଗେ । ଯେମିତିକି ଆଜନ୍ମ ଭଦ୍ରପୁରୁଷଙ୍କୁ ଖଣ୍ଡିକଥା ଶୁଣିବାକୁ ଭଲ ଲାଗେ ବେଳେବେଳେ, ଅଳ୍ପବହୁତ ଉତ୍ତେଜିତ ହେବା ପାଇଁ । ତେଣୁ ମନେ ହେଉଛି ଯେ ବୁଢ଼ା ବୟସରେ ତୁମେ ତୁମର ଭକ୍ତତାକୁ ଭୁଲେଇବାକୁ ଚାହଁ । ବୋଧହୁଏ ତୁମର ଇଚ୍ଛା ହେଉଛି ଯେ ଏଣିକି ଘରକୋଣରେ ନ ବସି ପାପୀ ସଂସାରର ଗତିବିଧିକୁ ପ୍ରକାଶ୍ୟରେ ଦେଖିବ, ଶୁଣିବ ଓ ତୁମର ଶୁଖିଯାଇଥିବା ପିତା ନଳିତାକୁ ରସବନ୍ତ କରିବ । ଆଉ ସେଇଆକୁ ଶୋଷିବଉଥିବ, ଶୋଷୁଥିବ, ମରିବା ଯାଏଁ । କାହିଁକି ନା କେବଳ ସେତିକି ରହିଯାଇଛି ତୁମ ପାଖରେ । ଆଉ କିଛି ଦେଇ ହେବନାହିଁ କି ଦେଖେଇ ହେବ ନାହିଁ ଏଇ ବୟସରେ । ଏବଂ ଏଇ ଯୁଗରେ ।

କିନ୍ତୁ ବର୍ତ୍ତମାନ ଶାଲ୍‌ଟିଏ ଘୋଡ଼େଇ ହୋଇ ସେ ଯେମିତି ଘୁରିବୁଲୁଛନ୍ତି ନିରିବାବୁଙ୍କ ଲନ୍‌ରେ, ଏବଂ ବେଳେବେଳେ ମୁହଁଟାକୁ ଟେକି ଧରୁଛନ୍ତି ସଞ୍ଜର ଆକାଶ-ଆଡ଼େ, ସେଇଠୁଁ ଆକାଶ ତା'ର ନରମ ଆଲୁଅ ଦେଇ ତାଙ୍କ ମୁହଁର କ୍ଳାନ୍ତ କୁଞ୍ଚିତ ଇତିହାସକୁ ଆଉଁସି ଦେଉଛି, ସେଥିରୁ ମନେ ହେବ ଯେ ସେ ଭକ୍ତତାକୁ ମଧ୍ୟ ତ୍ୟାଜ୍ୟ କରିସାରିଲେଣି । ଅଣ୍ଡା ଛଅଁରେ ଛଅଁର ଚିହ୍ନବର୍ଣ୍ଣ ନାହିଁ । ଦଂଶନର ପ୍ରବଣତା ଗ୍ଳାନି-ଗଲାଣି, ଚ୍ୟାଲେଞ୍ଜ କରିବାକୁ ବଳ ନାହିଁ । ଖାଲି ଥିଲା ଏଇ ଆତ୍ମଭିକ୍, ଭକ୍ତତା, ତାକୁ ବି

ଆଉ ଧଣ ରକ୍ଷିହେବ ନାହିଁ ବେଶିଦିନ । ଅବସାଦକୁ ଆଉ ମିଛ ବୋଲିହେଉ ନାହିଁ । ହୁଏତ ତା'ର ନାଆଁ ଦେଇପାର ଘୋରତର ବିଷାଦ । ମନ ଭୁଲେଇବା ପାଇଁ ।

ଅନ୍ଧାର ଘୋଟିବା ଆଗରୁ ସେ କେତୋଟି ନିଷ୍ପତ୍ତି କରିନେଲେ ନିଜ ପାଇଁ । କହିଲେ ମୁଁ ଆଜି ନାଗର ଡ୍ରଇଁରୁମ୍‌ରେ ବସିବ ନାହିଁ । ଯଥେଷ୍ଟ ହେଲଣି । ତା' ଛଡ଼ା ଦିଲ୍ଲୀରେ ବ' ଆଉ ପଡ଼ିରହିବ କାହିଁକି ? ଫେରିଯିବ । ନିଜ ପାଇଁ ଆଉ ଗୋଟାଏ ଗୁହା ଖୋଜିନେବ, ଝିଅ ବି ତା'ର ପତ୍ର ପାଇବ ନାହିଁ କି ଧେଣ୍ଡୁରା ପିଟିବ ନାହିଁ ଯେ ବାପା ଏଇଠି ଅଛନ୍ତି । ଆତ୍ମଚରିତଟାକୁ ସାରିଦେବ ଶୀଘ୍ର । ସେଇଠୁଁ ? ସେଇଠୁଁ ଦେଖାଯିବ··· ନଗରକୁ କ'ଣ ଭୂତ ଲାଗିଥିଲା ଯେ ତା' ପିଲାପିଲିଙ୍କୁ, ମାନେ ତା' ସ୍ତ୍ରୀ ମଞ୍ଜୁଳାକୁ ପଠେଇ-ଦେଲା ଗାଆଁକୁ ? ତା'ର କୋଉ ରାଜମାତ୍ର ଭଣ୍ଡୁର ହୋଇଯାଉଥିଲା ତା' ଯୋଗୁ ? ମଞ୍ଜୁଳା ମୋ ନିଜ ଶାଳୀ ନୁହେଁ, ସ୍ତ୍ରୀଙ୍କର ମାମୁଝିଅ ଭଉଣୀ, ହେଲେ ଦି'ଜଣଙ୍କ ଚେହେରା ବହୁତ ମିଶେ । ସେମିତିକା ଗାଲଫୁଲା ହସ, ଅଉ ଧଇଁସଇଁଆ ତରବରିଆ କଥା, ସତେ କି ସମସ୍ତ ସତରେ ପଳେଇ ଯାଉଛି । କିନ୍ତୁ ଖବରନାହିଁ ଯେ ତାକୁଇ ଦେଖିବ ବୋଲି ମୁଁ ଆଉ କୋଉଠିକି ନ ଯାଇ ନଗ ଘରେ ଆସି ରହିଲି । ମୁଁ ସେମିତିକା ସେଣ୍ଟିମେଣ୍ଟାଲ୍ ଫୁଲ୍ ନୁହେଁ । ଯାହାହେଉ ଦିଲ୍ଲୀ କାମ ସରିଲା । ଯିବା ଏଥର ।

ତେବେ ଯିବା ଆଗରୁ ସେଇ ଟୋକାଟାକୁ ଜଣେଇଦେବାକୁ ପଡ଼ିବ । ଅମରେଶ । ଖାଲି ଆମ ଅଞ୍ଚଳର ପିଲା ବୋଲି ନୁହେଁ । ତା'ର ରଙ୍ଗଢଙ୍ଗ ଭିନ୍ନେ, ଅନେକଟା ସେ ଯୁଗର ଖଦଖୋଲା ଭକ୍ତଙ୍କ ପରି, ଯେଉଁମାନେ ଗାନ୍ଧୀ ଆଶ୍ରମକୁ ଆସୁଥିଲେ ପ୍ରତ୍ୟେକଦିନ । ପଛରେ ବସୁଥିଲେ, କିନ୍ତୁ ଆସୁଥିଲେ, ଶୁଣୁଥିଲେ ଓ ମନେ ହେଉଥିଲା ଯେମିତି ନ ପାହିଷ୍ଟୁ କିଛି ଗୋଟାଏ କରିବେ ଦେଶ ପାଇଁ । ଇଏ ବି ସେମିତି ଢ଼ିମା ଢ଼ିମା ଆଖି କରି ମୋର ଜିଦ୍‌ଖୋର ସତ୍ୟାଗ୍ରହୀ ଅର୍ଥାତ୍ ମାଡ଼ଖିଆ କଥାଗୁଡ଼ାକ ଶୁଣିଯାଏ । ପିଇଯାଏ କହିଲେ ଚଳେ । ଯେଉଁଥିପାଇଁ ମୁଁ ବି ବୋଧହୁଏ ଟିକିଏ ବେଶୀ ଗପିଯାଏ କି କଅଣ । ବେଳେ-ବେଳେ ସନ୍ଦେହ ହୁଏ ଯେ ଆମ ଦଳର ହୋଇଥିଲେ···କ'ଣ ହୋଇଥାଆନ୍ତା ? ମନ୍ତ୍ରୀ ହୋଇ ବସନ୍ତାଣି ଏଇକ୍ଷଣି ? ନା ଗୁଳିମାଡ଼ ଖାଇ ଖତମ୍ ହୋଇ ଯାଆନ୍ତାଣି କେବେଠୁଁ ?

ନା, ତା'କୁ କହିକରି ଯିବ । ( ତା'ର ପାଇଁ କ'ଣ ମୁଁ ଦିଲ୍ଲୀରେ ରହିଗଲି ଏତେଦିନ, ଏଇ ପ୍ରଶ୍ନ ଅବଶ୍ୟ ତାଙ୍କ ମନକୁ ଆସିବାର ସମ୍ଭାବନା ନ ଥିଲା । ) ବହୁତ ଦିନ ହେଲା ସେ ଆସିନାହିଁ ମୋ ପାଖକୁ । କହୁଥିଲା ପରୀକ୍ଷାରେ ବ୍ୟସ୍ତ ରହିବ । କିନ୍ତୁ ବାପଧନ, ମୋର ଅନୁମାନ ଯେ ଅଉ ଗୋଟାଏ ବିଶେଷ କାରଣ ଅଛି । ତନୁପାତଳୀ ଝିଅଟିଏ ଆସେ ତୋ ପାଖକୁ, ମୁଁ ଦେଖିଛି । ତାକୁଇ ନେଇ ଟିକିଏ ବେଶି ବ୍ୟସ୍ତ ହୋଇ-ପଡ଼ିଛୁ--ନୁହେଁ ? ଭଲ, ଭଲ । ହେଲେ ସେଇଆ କହିଦେଲୁନି କାହିଁକି ? ଭୟ ଲାଗିଲା କହିବାକୁ ? ମୁଁ କ'ଣ ତୋର ଲୋକାଲ୍ ଗାର୍ଜେନ୍ ? ନା ମୁଁ ତୋ ବାପ ??

ରଘୁବାବୁଙ୍କର ଠୋ ଠୋ ହୋଇ ହସିବାକୁ ଇଚ୍ଛା ହେଲା । କିନ୍ତୁ ସେ ଉଦ୍‌ଗମର ଆରମ୍ଭରେ ରହିଗଲେ ଅପ୍ରକଟ । ସତେ କି ତାଙ୍କର ଖିଆଲ ହେଲା ଯେ ଟୋକାଟା ଅଛି ସେଇଠି କୋଉଠି, ତାକୁ ବାଧିବ ପରା !

( ୩ )

ଜଣେଇ ଦେବା ପାଇଁ ବେଶି ଡେରି ହେଲାନାହିଁ । ରଘୁବାବୁଙ୍କୁ ଜଳକୁ ଯିବାକୁ ପଡ଼ିଲାନାହିଁ ତା'ର ସେଇ ଟୋକାଟାକଲିଆ ହଷ୍ଟେଲକୁ, ଯେଠି ତାଙ୍କ ହୋ' ହଲ୍ଲାରେ ମୁଣ୍ଡ କ'ଣ ହୋଇଯିବ ମଣିଷର । ଦି'ଦିନ ପରେ ଅମରେଶ ଆସି ପହଞ୍ଚିଗଲା ସକାଳୁ ସକାଳୁ । କ'ଣ ଗୋଟାଏ ଜରୁରି କାମ ଥିଲା ପରି ମନେ ହେଉଥିଲା । କିନ୍ତୁ ତା' ଆଗରୁ ରଘୁବାବୁଙ୍କ ପାଟିରୁ ବାହାରିଗଲା ଯେ ସେ ଆସନ୍ତା ସପ୍ତାହରେ ଫେରିପାଉଛନ୍ତି । ସେଥିରେ ଟୋକାଟା ଏମିତି ତରକି ଉଠିଲା କାହିଁକି ? ଖାଲି ସେତିକି ନୁହେଁ, ମିନିଟିଏ ଭାବିଲା ପରି ହୋଇ ହଠାତ୍ ଗୋଟାଏ ନିମନ୍ତ୍ରଣ ଛାଡ଼ିଦେଲା—"ସାର୍, ଆପଣ ଆସନ୍ତା ମଙ୍ଗଳବାର ଦିନ ଆସି ପାରିବେ ଆମ ହଷ୍ଟେଲ୍‌କୁ ? ଡିନର୍ ଖାଇବେ ମୋ ସାଙ୍ଗରେ"—ତା'ପରେ ତାଙ୍କ କୁଣ୍ଠାର କାରଣ ବୁଝିପାରିଲା ପରି, "ନା' ଡାଇନିଙ୍ଗ୍ ହଲ୍‌ରେ ନୁହେଁ, ମୋର ରୁମ୍‌ରେ । ନିରୋଳାରେ । କାହିଁକିନା ମୋର ଗୋଟାଏ ବିଶେଷ କଥାବାର୍ତ୍ତା କରିବାକୁ ଅଛି ଆପଣଙ୍କ ସାଙ୍ଗରେ ।"

"ତୁମ ପରୀକ୍ଷା ସରିଯାଇଥିବ ତ ?"

"ହଁ, ହଁ, ସରିଥିବ ଠିକ୍ ତା' ପୂର୍ବଦିନ ।"

"ଆଉ କାହାକୁ ଡାକିନାହଁ ?"

"ନା···ଆଇ ମିନ୍, ଆଉ ଜଣେ ହୁଏତ ଥିବ । ସେ ମୋ ସାଙ୍ଗରେ ପଢ଼େ । ତା' ନାଆଁ ଅନିମା । ଭଲ ଝିଅଟିଏ । ଆପଣଙ୍କ ସାଙ୍ଗରେ ଚିହ୍ନା କରେଇଦେବି···"

ରଘୁବାବୁଙ୍କର ଇଚ୍ଛା ହେଲା ଟୋକାକୁ ଚିଡ଼େଇବେ । ଭଲ ଝିଅଟିର ଗହଣରେ ବିଶେଷ କଥାବାର୍ତ୍ତା ! ଉତ୍ତମ । କିନ୍ତୁ ବାବୁ, ମୋତେ କାହିଁକି ପୂରାଉଛ ସେଥିରେ ? ଆଉ କେହି ମିଳିଲେ ନାହିଁ ତୁମକୁ ? ହେଲେ ସେ ପରିହାସର ପାଖ ମାଡ଼ିଲେ ନାହିଁ ! ଭଦ୍ରୋଚିତ ଭଙ୍ଗୀରେ କହିଲେ, "ଧନ୍ୟବାଦ । ମୁଁ ଆସିବି, ନିଶ୍ଚୟ ଆସିବି ।" ଏବଂ ତାଙ୍କ ପ୍ରତିଶ୍ରୁତିରେ ଆନ୍ତରିକତାର ଅଭାବ ନ ଥିଲା । ଆସିବ ନାହିଁ କେମିତି ? କେଇଟା ପୁଅଝିଅ ଅଛନ୍ତି ମୋ ସଂସାରରେ ଯେଉଁମାନେ ମୋତେ ଡାକିବେ ଏମିତି, ତାଙ୍କ ଜୀବନର ଖାସ୍ ସୁଖବର ଶୁଣେଇବା ପାଇଁ ? ଏବଂ ବୋଧହୁଏ ମୋତେ ହିଁ ପ୍ରଥମ···

କିନ୍ତୁ ପରବର୍ତ୍ତୀ ମଙ୍ଗଳବାରଦିନ ଇସ୍ତ୍ରୀକରା ଗଲାବନ୍ଦ କୋଟ୍ ପିନ୍ଧି ଅମରେଶର ହଷ୍ଟେଲକୁ ଗଲାବେଳେ ରଘୁବାବୁ ଗୋଟାଏ ରହସ୍ୟର ସନ୍ଧି ମଧ୍ୟ ଅନୁଭବ କରୁଥିଲେ, ଏବଂ ତା'ର ଉଦ୍‌ବେଗକୁ ଉପଭୋଗ କରୁଥିଲେ । ଡାକିଲା ତ ଡାକିଲା ସାକ୍ଷୀ ହେବା

ପାଇଁ, ଗୁରୁଜନଙ୍କ ଠାରୁ ଆଶୀର୍ବାଦ ପାଇବା ପାଇଁ କି ଆଉ ଯୋଉଥିପାଇଁ । ସେଥିରେ "କଥାବାର୍ତ୍ତା" କରିବାର କଅଣ ଅଛି ? ନା ଏତେଦିନ ବାହାରେ ରହି ଟୋକାଟା ତା' ମାତୃଭାଷା ଭୁଲିଗଲାଣି ?

ଏଣେ ଅମରେଶ ତା'ର ଉଦ୍‌ବେଗକୁ ନେଇ ଉଦ୍‌ବେଳିତ ହେଉଥିଲା । ଏଇ ପହିଲିବାର ସେ ଆସୁଛନ୍ତି ଏଠିକି । ଏବଂ ମୁଁ ତାଙ୍କୁ ଚମକେଇଦେବି । ସର୍‌ପ୍ରାଇଜ୍ ପରେ ସର୍‌ପ୍ରାଇଜ୍ । ସବାଶେଷକୁ ଏମିତି ଗୋଟିଏ କାବାକଥା ଶୁଣେଇବି ତାଙ୍କୁ ଯେ ସାର୍ ଚିତ୍ତହୋଇ ଗଡ଼ିପିବେ । ମୂର୍ଚ୍ଛା ଓ ପତନ ! କିନ୍ତୁ ସେତିକବେଳେ ମୁଁ ତାଙ୍କ ଜ୍ୟୋତିର୍ମୟ ତ୍ୟାଗପୂତ ମୁହଁକୁ ପୁରାପୁରି ଦେଖିବି, କାହିଁକିନା ତା'ର ପୁଞ୍ଜିଭୂତ ଆଲୁଅ ପଡ଼ୁଥିବ ମୋ ଉପରେ । ଏବଂ ପାଇବି···

ପ୍ରଥମେ ସାର୍ ଦେଖିବେ ମୁଁ କେମିତି ତାଙ୍କ ରୁଚିକୁ ଚିପି ରଖିଛି । ଭଜା ମୁଗଡାଲି, ସଜନା ଶାଗ, ବଡ଼ି ଭଜା । ଖୋଜି-ଖୋଜି ସେଇ ବଗିଚାରେ ରନ୍ଧେଇଛି ତାଙ୍କ ପାଇଁ ।

ସେଇ ହେବ ତାଙ୍କ ବିସ୍ମୟସ୍ଥାନର ପହିଲି ପାଦ । ତା'ପରେ ସେ ଶୁଣିବେ ଯେ ମୁଁ ରାଜନୀତିରେ ଝାସ ଦେବାକୁ ଯାଉଛି । ମତଲବ ରାଜନୀତି ନୁହେଁ । ଆଗାମୀ ସୂର୍ଯ୍ୟକୁ ଓଟାରି ଆଣିବାର ରାଜନୀତି, ଯାହାର ପ୍ରତୀକ ହେଉଛନ୍ତି ଶ୍ରୀ ଚନ୍ଦ୍ରମାଧବ ଚୌଧୁରୀ, ଭାରତୀୟ ପ୍ରଜା ପରିଷଦର ସଭାପତି । ମୁଁ ଖାଲି ତାଙ୍କ ପାର୍ଟିର ସଭ୍ୟ ହେବି ତା' ନୁହେଁ, ମୁଁ ତାଙ୍କ କ୍ରାନ୍ତିକାରୀ ଆନ୍ଦୋଳନରେ ମିଶିଯିବି, ହଜେଇ ଦେବି ନିଜକୁ । ଗାଆଁରୁ ଗାଆଁ, ସହରରୁ ସହର ଘୂରି ବୁଲିବି, ଆଉ ପ୍ରାଣମୂର୍ଚ୍ଛା ଲଢ଼େଇ କରିବି ଶତ୍ରୁମାନଙ୍କ ସାଙ୍ଗରେ— ଆମ ଦେଶର ଯେତେକ ଦୁର୍ନୀତି, ମାନେ ଯୌତୁକ, କଳାପୋତେଇ, ହାତଗୁଞ୍ଜା, ଖଚମିଛ ସାଙ୍ଗରେ । ସାର୍‌ଙ୍କ ବେଳର ଲୋକେ ଯେମିତି ଲଢ଼େଇ କରୁଥିଲେ ନିଜର ସବୁ କିଛି ଛାଡ଼ିଛୁଡ଼ି ଦେଇ ।

ସବୁ ଛାଡ଼ିଛୁଡ଼ି ଦେଇ । ସେଇ ହେଲା ମୂଳମନ୍ତ୍ର । ଯାହାକୁ ନେଇ ଦେଶ ସ୍ୱାଧୀନ ହେଲା । ଏବଂ ଯାହାକୁ ନେଇ ଆଜି ଏଇ ଦେଶଟାକୁ ଉଦ୍ଧାର କରିହେବ । ନ ହେଲେ ରକ୍ଷାନାହିଁ !

ସାର୍ ଶୁଣିବେ । ହୁଏତ ପ୍ରଥମେ ବିଶ୍ୱାସ କରିବେ ନାହିଁ । ଭାବିବେ ଇଏ ହେଉଛି ମୋର କ୍ଷଣିକ ଉନ୍ମାଦନା । ଫେସନଆ । ଉପରଠାଉରିଆ ।

କିନ୍ତୁ ସେ ବୁଝିବେ । ଯେତେବେଳେ ଜାଣିବେ ଯେ ମୁଁ କ'ଣ ସବୁ ଛାଡ଼ିବାକୁ ଯାଉଛି । ଖାଲି ଅର୍ଥଲାଭ ନୁହେଁ, ବସ୍ତୁର ସୁଖ ନୁହେଁ, ଆହୁରି ନିବିଡ଼ ଅନ୍ତରଙ୍ଗ ସୁଖ । କାବା ହେବେ···ଆଉ ମୋତେ କୁଣ୍ଢେଇ ପକେଇବେ । ବୋଧହୁଏ ତାଙ୍କ ପାଟିରୁ କଥା ବାହାରିବ ନାହିଁ । ହୁଏତ ତାଙ୍କ ଆଖିରୁ ଲୁହ ଝରିବ ଗଳଗଳ ହୋଇ । ଆନନ୍ଦାଶ୍ରୁ !

କିନ୍ତୁ ସେ କ'ଣ ବୁଝିବେ ଯାହା ଘଟିଛି ମୋ ଉପରେ ଏଇ କେଇଟା ଦିନ ଭିତରେ ? କେମିତି ମୁଁ ରାତି ପରେ ରାତି କଅଁଳ ଜୋଛନାକୁ ଦୂରେଇ ଦେଇଛି ମୋ

ପାଖରୁ, ହେଲେ ସୁଦୂର ଶୀତଳ ଜହ୍ନକୁ ନମସ୍କାର କରୁଛୁ ? ଖାଲି ଉଷୁମ ଶେଯକୁ ଫିଙ୍ଗି ଦେଇଛୁ ନୁହେଁ, ଅଧୁଟାଏ ଲୁଗାପଟା ବି ଉତାରି ଦେଇଛୁ ଦେହରୁ, ଶୀତର ପ୍ରକୋପକୁ ଚ୍ୟାଲେଞ୍ଜ୍ କରିବା ପାଇଁ । ଲଢ଼ିଛୁ ନିଜ ସାଙ୍ଗରେ । ଏବଂ ଶେଷକୁ ଅନୁଭବ କରୁଛୁ··· ଯେ, ଅସଲ ତ୍ୟାଗ କାହାକୁ କହନ୍ତି । ସେଥିରେ ଅଭିନବ ଉଲ୍ଲାସ, ଅପରୂପ ଯନ୍ତ୍ରଣା । ଆଃ ! ମନେ ହୋଇଛି ମୁଁ ବି' କିଛି ପାଠ ପଢ଼େଇ ପାରିବି ପଞ୍ଜାବର ଭ୍ରାନ୍ତ ଶିଖଯୁବକ-ମାନଙ୍କୁ ଆଉ ତାଙ୍କୁ ବାଟକୁ ଆଣିପାରିବି । ସେଇଠୁଁ ପିଆଲାର ଟୁଂ ଟାଂ, ଚୂଡ଼ିର ରୁଣୁଝୁଣୁ, ରସରସିଆ ଆଲାପ, ସାନସାନ ଓଠର ଗୁଲୁଗୁଲୁ କଥା, ଇତ୍ୟାଦି ଇତ୍ୟାଦିର ଲୋଭକୁ ତିରସ୍କାର କରୁଛୁ । କହୁଛୁ ଇଏ ନୁହେଁ, ଇଏ ନୁହେଁ, ଇଏ ନୁହେଁ । କାହିଁକନା ଏସବୁ ହେଉଛି ଘରକରଣାର ଇତର ସାଧାରଣ ଉଷୁମ । ସ୍ୱାର୍ଥବନ୍ଧ ସାଲ୍‌ସ୍‌ରେ ଚିଆର, ଗୋଡ଼ରୁ ମୁଣ୍ଡ ଯାଏଁ । ଅନିମା ତା'କୁ ଗ୍ରୁଡ଼ପାରିବ ନାହିଁ···ଦୁଃଖର ବିଷୟ । ଆଇ.ଏ.ଏସ୍. ହେଉ ବା ନ ହେଉ ।

ଏଇ ଗତକାଲି ରାତିରେ ମୁଁ ମୋ ଶେଷ ଫଇସଲା ଶୁଣେଇଲି । ତୁମକୁ ସାମ୍ନାରେ ରଖି । ଯେ ଅନିମା ଆଉ ଦେଶ କାମ ଏକାଠି ହୋଇପାରିବ ନାହିଁ । ଭୋଗ ଓ ତ୍ୟାଗର ସହବାସ ଅସମ୍ଭବ । ଅତଏବ—

ମୁଁ ଅନିମାକୁ ବି ଗ୍ରୁଡ଼ିଦେବି, ଭୁଲିଯିବି !

ତତ୍‌କ୍ଷଣାତ୍ ମୁଁ ଅନିମାକୁ ଫୋନ୍ କଲି । କହିଲି ଡିନର୍ ନିମନ୍ତ୍ରଣକୁ ଭୁଲିଯାଅ । ମୋର ଅନ୍ୟ କାମ ଅଛି ।

ସାର୍ ନ ବୁଝିଲେ ଆଉ କିଏ ବୁଝିବ ମୋର ଏଇ ଆତ୍ମତ୍ୟାଗର ମହିମା ? ନ ବୁଝିଲେ ନାହିଁ, ସ୍ୱୀକାର କରିବେ ତ, ଟିକିଏ ହସିବେ ତ ମୋ ଆଡ଼କୁ ଚାହିଁ !

···ରଘୁବାବୁ ଆସି ପହଞ୍ଚିଲେ ଯଥା ସମୟରେ ଏବଂ ଅମରେଶର ଅସାମାନ୍ୟ ତତ୍ପରତା ଓ ଖୁସିବାସିଆ ଭାବକୁ ଲକ୍ଷ୍ୟ କଲେ । ଖାସା ପିଲାଟାଏ ! କିନ୍ତୁ ମୁହୂର୍ତ୍ତି ପରେ ମୁହୂର୍ତ୍ତି ବିତିଗଲା, ହେଲେ ତାଙ୍କର କୌତୂହଳ ଚରିତାର୍ଥ ହେଲାନାହିଁ । "କଥାବାର୍ତ୍ତା" ଆରମ୍ଭ ହେବ କେତେବେଳେ ? କଅଣ ଏମିତିକା ଗୁରୁତର ବିଷୟ ଯେ, ତାକୁ ଡିନର୍ ସରିବା ଯାଏଁ ଅଟକେଇ ରଖିବାକୁ ପଡ଼ୁଛି ?

ତା'ଛଡ଼ା ସେ ଝିଅ ଖଣ୍ଡକ କାହିଁ ?

ଟେବୁଲ୍‌ରେ ଥାଳୀ ବଢ଼ା ହେଲା । ମାତ୍ର ଦୁଇଟି ଥାଳୀ । କଥା କଅଣ ?

ରଘୁବାବୁ ଆଉ ସବୁର୍ କରିପାରିଲେ ନାହିଁ । ପଚାରିଲେ—"ସେଇ ଝିଅ, ତାଙ୍କ ନାଆଁ ଅନିମା ପରା, ଆସୁନାହାନ୍ତି ସେ ?"

"ନା, ଅନିମା ଆସୁନାହିଁ । ମୁଁ ତାକୁ ମନା କରିଦେଇଛି ।"

ସେଇଠୁ ଅମରେଶ ବାଧ୍ୟ ହେଲା କହିବାକୁ, ଯାହା କହିବା ପାଇଁ ପଣ କରିଥିଲା । ସାର୍‌ଙ୍କ ବିମୂଢ଼ ଚାହାଣୀକୁ ଉପେକ୍ଷା କରି ହେବ ନାହିଁ ଆଉ । କହିଗଲା । ଉଦ୍ଦୀପ୍ତ

ଅବାରିତ ଶବ୍ଦର ଭାଷା, ବକ୍ତୃତା ଦେଲା ପରି । ହେଲେ ଉଦ୍‌ଯାଉଥିଲା ମଝିରେ ମଝିରେ, ଗୁହୁଁ ଥିଲା ସାର୍‌ଙ୍କ ମୁହଁକୁ ।

ରଘୁବାବୁ ଜଳଜଳ ହୋଇ ଅନେଇ ରହିଥିଲେ । ଶୁଣି ଯାଉଥିଲେ । ଅନେକ ଅନେକ ଦିନ ହେଲାଣି, ଶୁଣି ନ ଥିଲ ଏମିତିକା କଥା, ଯାହା ବକ୍ତୃତା ପରି ଶୁଭୁଛି, କିନ୍ତୁ ବକ୍ତୃତା ନୁହେଁ । ଆପଣା ଜ୍ୱାଳାର ଯାତନା, କାନ୍ଦଣା, ସ୍ୱପ୍ନ ଓ ସାହସ । କିନ୍ତୁ ସେ ମୋ ମୁହଁକୁ ଗୁହୁଁଛି କାହିଁକି ଏମିତି ? ମୁଁ କ'ଣ କହିବି ? ତେବେ ସେ ଅବଶ୍ୟ ଧରିନେବ, ତା'ର ଧରିନେବା ଉଚିତ୍‌, ଯେ ମୋର ଶୁଭେଚ୍ଛା ଅଛି ତା' ପଛରେ ।

"...ତ୍ୟାଗ କରିବାକୁ ହେବ, ଦେହକୁ କାଟିବା ଯାଏଁ, ଅସ୍ଥିମଜ୍ଜା ବାହାରି ଉଠିବା ଯାଏଁ—ନା କ'ଣ କହୁଛନ୍ତି ସାର୍ ?"

ସାର୍ ତଥାପି ନିରୁତ୍ତର । କହିପାରିବ ନାହିଁ, କିଛି କହିପାରିବ ନାହିଁ । କିନ୍ତୁ ମୋ ଆଶୀର୍ବାଦ ରହିଛି ତୋ ପଛରେ, ପୁରାପୁରି ଅଛି ।

"...ଶେଷକୁ ମୁଁ ଠିକ୍ କଲି ଯେ ଅନିମାକୁ ବି ଛାଡ଼ିଦେବି । ବାହା ହେବିନାହିଁ ।"

କଥାଟାର ତାତ୍ପର୍ଯ୍ୟ ବୁଝିବା ପାଇଁ ଟିକିଏ ସମୟ ଲାଗିଲା ରଘୁବାବୁଙ୍କର । କିନ୍ତୁ ବୁଝିଲାକ୍ଷଣି ସେ ଚମକି ଉଠିଲା ପରି ମନେହେଲା । ସତେକି ଅମରେଶ ଅତର୍କିତରେ ଗୋଟାଏ ତୀର ଛାଡ଼ିଲା ତାଙ୍କ ଉପରକୁ, ଯାହା ଗଳିଗଲା ତାଙ୍କ ପାଞ୍ଜରର କେଉଁ ଫାଙ୍କ ଭିତରେ ।

"କେବେ ହୁଏତ ବାହା ହେବି, ଯେତେବେଳେ ଉପଯୁକ୍ତ ସାଥୀ ମିଳିବ, ଯେ ପରିପଦରେ ମିଶିଥିବ, ଆଉ ମୋ ତ୍ୟାଗଧର୍ମ ସାଙ୍ଗରେ ତାଳ ଦେଇପାରିବ ।"

ସେଇଠୁ ସହସା ଗୋଟାଏ ବିସ୍ମୟକର ଘଟଣା ଘଟିଲା । ରଘୁବାବୁଙ୍କର ମୁହଁ କଳାକାଠ ପଡ଼ିଗଲା । ତେହେଁସ କଳା ହେଲେ ବି' ତା' ଭିତରେ ଥିବା ଯେତେକ ରକ୍ତ ତରମର ମୁହଁରେ ଜମିଗଲା ପରି ଦିଶିଲା । ସତେକି ସେ ଏଭଳି ଗୋଟାଏ ଷ୍ଟ୍ରୋକ ପାଇବେ ବୋଲି ଭାବି ନ ଥିଲେ । ଏଭଳି ଗୋଟାଏ ନିଷ୍ଠୁରତା...କିନ୍ତୁ ନିଷ୍ଠୁରତା ମୋ ଆଡ଼ୁ ନୁହେଁ, ତା'ରି ଆଡ଼ୁ । ହୋଇପାରେ ଟୋକାଟା ପାଗଳ, ମୂର୍ଖ, କିନ୍ତୁ ସେଥିପାଇଁ ମୁଁ ଦାୟୀ ନୁହେଁ...ହଁ, ମୁହିଁ ଦାୟୀ । ମୋର ଜୀବନ, ଜୀବନର ଇମେଜ୍, ଯାହାକୁ ମୁଁ ଆଦ୍ଧରି ବଢ଼େଇଛି ଏଠିକା ଆଖି, ମୋ ସତ୍ୟାଗ୍ରହୀ ବୀରତ୍ୱର ଇତିହାସ ଶୁଣେଇ । ମୁହିଁ ତାକୁ ଆଣିଛି ଏଇ ଅବସ୍ଥାକୁ, ତେଣୁ ମୋତେ ହିଁ କିଛି କରିବାକୁ ପଡ଼ିବ, ଯେମିତିକି ଟୋକାଟା ବଞ୍ଚିଯିବ..

...ଆରେ, ମୁଁ କ'ଣଟା କରିବି ? ମୁଁ ମଧ୍ୟ ଭାବିଥିଲି ଯେ ଗୁରୁଟା ମଫସଲିଆଣୀ, ମୋ ମନଲାଖି ହେଲା ନାହିଁ, ଯେ ସେ ନ ଥିଲେ ମୁଁ ଜଣେ ଉପଯୁକ୍ତ ସାଥୀକୁ ବାଛିଥାଆନ୍ତି, ହୁଏତ ସରିତା ପରି ଜଣେ କର୍ମକୁଶଳା (ଏବଂ ହାସ୍ୟକୁଶଳା) ସହକର୍ମିଣୀକୁ—ଇଏ କ'ଣ ସତ ? ଚାଲ ବଉଦଟାକୁ ସତ ବୋଲି କହିବ କିଏ ? ନା ସେଇଥିପାଇଁ ଗୁରୁ ଗୁଲିଗଲା,

ଆଉ ଗୋଟାଏ ଶେଜିଣା ନାକକାନ୍ଦୁରା ଝିଅ ଗୁଡ଼ିଗଲା ମୋ ପାଇଁ ? କହିବ ଯେ ଏଇ ଦୋଷୀ ଭାବ ରହିଛି ମୋ ଉକ୍ତତାର ପଛକୁ ? ଆଉ କ'ଣ ରହିଛି କହୁନା ? ରହିଛି ଯେ ଥୋକେ ଥିଲେ ମୋ ସାନ ଭାଇ ପର, ସ୍ତାବକ ପରି, ଯଥା ରମେଶ୍ବର ମାହାନ୍ତି, ଅରୁଣି କର, ଧନ ମିଶ୍ର, ଯେଉଁମାନେ ଠିକଣା ବେଳେ ଗାଦିକୁ ମାଡ଼ିବସିଲେ, ମୋତେ ପଚ୍ଛରଲେ ବ ନାହିଁ ? ମିଛ, ମିଛ, ପଚ୍ଛରଲେ ବ ମୁଁ ନାହିଁ କରି ଦେଇଥାଅନ୍ତି । ଏଥିରେ ଆଦୌ ସନ୍ଦେହ ନାହିଁ···

କହିଲେ କହିବ ଯେ, କେଇଟା ବର୍ଷ ଭିତରେ ତୋ'ର ସ୍ୱପ୍ନ ଭାଙ୍ଗି ଯିବ । ତୁ ବୁଝିବୁ ଯେ, ଏଇ ପରିଷଦ ବି' ତୁଚ୍ଛା ଅନ୍ୟତମ ଦଳ, ଗାଦିରେ ବସିବା ପାଇଁ । ତାଙ୍କ ଭିତରେ ବି'କେହି ମହାତ୍ମା ନାହାନ୍ତି, ସେଠି ବ ଦୁର୍ନୀତି ଛପି ରହିଛି, ଠିକଣା ବେଳେ ବାହାରି ଆସିବ, ସାଲୁବାଲୁ ହେବ । ଆଉ ତୁ ଛଟପଟ ହେବୁ । ହେଲେ ନେଡ଼ିଗୁଡ଼ କହୁଣୀକୁ ବୋହିଯିବଣି ସେତେବେଳକୁ । ଅଗତ୍ୟା ତୋ ପାଟି ପିତା ହୋଇଯିବ । ପିତାରୁ ବଳି ପିତା ହେବ, ବୟସ ବଢ଼ି ବଢ଼ି ଗଲାରୁ । ବୁଢ଼ା ହୋଇ ମରବା ଯାଏଁ । ନାରେ ପୁଅ, ତୁ ସେ ଭୁଲ୍ କର୍ ନାହିଁ, ବାହା ହୋଇପଡ଼ ଅଳମାକୁ, ଆଉ ଘର ସଂସାର କର ଅନ୍ୟମାନଙ୍କ ପରି । ତୋର ବାପମାଆ ଯେଇଆ ଚାହାନ୍ତି ନିଶ୍ଚୟ, ତୋର ସମାଜ ଯେଇଆ ଚାହେଁ । ମୁଁ ଟା କଏ ?

କିନ୍ତୁ ଅମରେଶକୁ ତାଙ୍କ କଳାକାଠ ମୁହଁ ଆଉ ପ୍ରକାରେ ମନେ ହେଲା । ସତେକି ସେ ଏମିତ ଦିଶୁଛନ୍ତି, କାହିଁକନା ବାଷ୍ପ ଜମିଯାଇଛି । କଲା ଯାହା କାନ୍ଦୁରା ସେଇଆ । ପାଣି ଅପ୍ ଅପ୍ ହୋଇ ଝରିବ ଏଇକ୍ଷଣି, ମୁଁ ତାଙ୍କୁ ରକ୍ଷା ନ କଲେ ।—ମୁଁ କହୁ ନ ଥିଲି ?

ନା, ରଘୁବାବୁ କାନ୍ଦିଲେ ନାହିଁ । ସେଇ ହିସାବରେ ଅମରେଶର କଳନା କାମ ଦେଲା ନାହିଁ । କିନ୍ତୁ ସେ ହସିଲେ ।···ଟୋକାଟା ବୋକା ବୋଲି ମୁଁ ବ କ'ଣ ବୋକା ହୋଇଛି ? ମୋ ସ୍ୱାର୍ଥର ଘରଖଣ୍ଡିକ ପୋଡ଼ିଯାଇ ନାହିଁ । ମୋର ସୌଭାଗ୍ୟ ଯେ, ଏତେଦିନକେ ମୁଁ ଗୋଟାଏ ପୁଅ ପାଇଛି, ମାନେ ଆମ ଦେଶ ଗୋଟାଏ ପୁଅ ପାଇଛି । ତା'ଛଡ଼ା ତା'ର ପାଟି ପିତା ହେଲା ବେଳକୁ ମୁଁ କୋଉ ବଞ୍ଚିଥିବ ଯେ, ଦୋଷ ମାଡ଼ି ପଡ଼ିବ ମୋତେ ?

ରଘୁବାବୁ ହସିଲେ ଏବଂ ତା' ପିଠିରେ ହାତ ରଖିଲେ । ଅମରେଶ କୃତକୃତ୍ୟ ହେଲା । ଏତକ ଲୋଡ଼ା ଥିଲା ମୋର···

# ମଗ୍ନନ୍

ଦିଲ୍ଲୀ ନଗରୀ । ସ୍ଥାନ—ମଗ୍ନନ୍ । ସମୟ—ମଧ୍ୟାହ୍ନ ।

( ଏକ )

ମହାପାତ୍ର ମାଧବ ଦାସଙ୍କର ବାରମ୍ବାର ରାଜଧାନୀକୁ ଆସିବା ନୂତନ ନୁହେଁ । କାରଣ ସେ ଜଣେ ପ୍ରତିଷ୍ଠିତ "ଏ" କ୍ଲାସ କଣ୍ଟ୍ରାକ୍ଟର୍, ତଥା ଏକ୍ସ୍‌ପୋର୍ଟର୍, ଏବଂ ଓଡ଼ିଶାର ପ୍ରଭାବଶାଳୀ ଶିଳ୍ପମନ୍ତ୍ରୀ ଯଯାତି ବେହେରାଙ୍କର ହାତବାରିସି । ସହଜେ ତାଙ୍କୁ ବିଭିନ୍ନ ସ୍ତରରେ ଦେଶର ରାଜଧାନୀ ସହିତ ଯୋଗସୂତ୍ର ରଖିବାକୁ ହେବ । ରଖିବାକୁ ହେବ ଓ ତା'କୁ ଅଧିକରୁ ଅଧିକ ଟାଣ କରିବାକୁ ପଡ଼ିବ, ଯେପରିକି କୌଣସି, ପ୍ରତିଦ୍ୱନ୍ଦ୍ୱୀ ତା'କୁ ହୁଗୁଳେଇବାର ଦୁଃସାହସ ନ କରେ । ଆଜିକାଲି କାହାରିକୁ ବିଶ୍ୱାସ ନାହିଁ । ତା'ଛଡ଼ା କେତେବେଳେ କିଏ ଗାଦିରୁ ଖସିଯିବ ତା'ର ଠିକଣା ନାହିଁ । ଏପରିକି ଯଯାତି ଭାଇନା (ନା, ନା, ସେ ସବୁଦିନେ ମୋର ବନ୍ଧୁ ହୋଇ ରହିବେ, ରହିବା ଉଚିତ)···ସେ ଯାହାହେଉ ରାଜଧାନୀର ବିଭିନ୍ନ ଅବିନାଶୀ ଚୁଟିଆ ମୂଷାମାନଙ୍କୁ ଖୁସ୍ ରଖିବା ବୁଦ୍ଧିମାନର ଲକ୍ଷଣ । ମୁଁ ଯଥେଷ୍ଟ ରୋଜଗାର କଲିଣି, ଯଥେଷ୍ଟ ସଞ୍ଚୟ କଲିଣି, ମୋର ପିଲା ଛୁଆ ବେଶ୍ ଆଗେଇଗଲେଣି, ଏଭଳି ଆତ୍ମସନ୍ତୋଷକୁ ନେଇ ଆରାମ କରିବା ମୂର୍ଖତା । ସେଇଥିପାଇଁ ତ ଆମ ଅଞ୍ଚଳର ଲୋକେ ଏମିତି ପଛୁଆ ହୋଇ ରହିଯାଇଛନ୍ତି । ଏହି ପ୍ରକାର ମନୋଭାବ ତାଙ୍କୁ ଯଥାର୍ଥରେ ଉତ୍‌କାଏ ଦିଲ୍ଲୀକୁ ଆସିବା ପାଇଁ । ବାରମ୍ବାର । ଆସି ବିଭିନ୍ନ ଦପ୍ତର, କଲେଜ, କାରଖାନା, ପେଣ୍ଠ ଇତ୍ୟାଦିରେ ବଡ଼ ବଡ଼ ବନ୍ଧୁମାନଙ୍କୁ ସଙ୍ଗୁଳିବା ପାଇଁ, ଏବଂ ମଝିରେ ମଝିରେ ଜଣେ ଅଧେଙ୍କୁ ଉଚାଙ୍ଗ ହୋଟେଲ୍ ରେସ୍ତୋରାଁରେ ଆପ୍ୟାୟିତ କରିବା ପାଇଁ ।

ଅତଏବ ସେ ଖରାଦିନ୍ଟାରେ ଦିଲ୍ଲୀ ଆସିଛନ୍ତି, ଏବଂ ତାଜ୍ ହୋଟେଲ୍‌ରେ ଥିବା ସୁପ୍ରସିଦ୍ଧ 'ମଗ୍ନନ୍' ରେସ୍ତୋରାଁରେ ବସି ଜନୈକ ବନ୍ଧୁଙ୍କ ଧୀରେ ସୁସ୍ଥେ ବିଅର୍ ପିଆଉଛନ୍ତି, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଏବଂ ମନୋରମ ସନ୍ଧ୍ୟା ବଦଳରେ କାହିଁକି ଏଇ ପ୍ରଚଣ୍ଡ ମଧ୍ୟାହ୍ନ, ହୁଇସ୍କି ଜାତୀୟ ଠୋସ୍ ପାନୀୟ ବଦଳରେ ବିଅର୍ ପରି ଗୋଟାଏ ହାଲୁକା ବସ୍ତୁ, ଏଭଳି ଜିଜ୍ଞାସା ମଧ୍ୟ ଇତର ତଥା ଅବାନ୍ତର । ମଗ୍ନନ୍ ଭିତରଟା ସବୁବେଳେ ମନଲାଖି ଥଣ୍ଡା କମ୍ପା ଉଷୁମ, ଋତୁ ଅନୁଯାୟୀ । ଏବଂ ଏଠି ଦିନ ରାତିଠାରୁ ଭିନ୍ନ ନୁହେଁ ବୋଲି ଭାବିବା ଉଚିତ । କାହିଁକିନା—ଦେଖୁନା' ଏଇ ବିରାଟ ଲଣ୍ଠନମାନଙ୍କୁ ? ମଞ୍ଚାର ଅନୁରୂପ ସାଜସଜ୍ଜାକୁ ? ଦେଖୁନା' ମେନୁକାର୍ଡ଼ରେ କଅଣ କେମିତି ଲେଖା ହୋଇଛି ? ଯଥା 'ଶିକାର' ପୂର୍ବରୁ ମେନୁ ହେଲା ସୁପ୍, ଗ୍ଲେଟ ଚଙ୍ଗୁଡ଼ି ବିଶିଷ୍ଟ

ଖଟାଳିଆ ସାଲଭ଼୍ ଆଦି, ଯେଇଠୁଁ ଆସିବ ଅସଲ ଶିକାରର ଖେଳ···ଆଃ ! ତୁମର କଳ୍ପନା କଅଣ ଏତେ ଦୁର୍ବଳ ଯେ ତୁମ ମନରେ କିଛି ଗୋଟାଏ ବିଶିଷ୍ଟ ଉତ୍ତେଜନା ଆସିବ ନାହିଁ ତନ୍ଦୁରି ଚିକେନ୍‌କୁ ଦାନ୍ତେଇଲା ବେଳେ ? ମୋଟ ଉପରେ ଏଇ ଉଲଙ୍ଗ ଆହାର-ବିହାରର ପରିବେଶରେ ? କଅଣ ଅନୁମାନ କରି ପାରିବ ନାହିଁ ଯେ ଦିନ ହେଉଛି କି ରାତି, ମଇ ମାସ କି ଡିସେମ୍ବର, ଇଏ ହେଉଛି ତୁମର ମଞ୍ଚା, ଆଉ ତୁମେ ଏଠିକି ଆସିଛ ଶିକାର କରିବା ପାଇଁ ?

ଉପମାଟାକୁ କ'ଣ ଆଉ ଟିକିଏ ଗହନ କରି ଭାବି ପାରିବ ନାହିଁ ଯେ ତୁମେ ସତରେ ଉର୍ଦ୍ଧ୍ୱକୁ ଉଠି ଆସିଛ, ଏବଂ ଆତିଥ୍ୟର ଆଳରେ ସୁନିର୍ଦ୍ଦିଷ୍ଟ ଜନ୍ତୁମାନଙ୍କୁ, ଅର୍ଥାତ୍ ସ୍ୱାର୍ଥସିଦ୍ଧିର ବାଧାବିଘ୍ନକୁ ଦେଖି ଚିହ୍ନି ଶିକାର କରିବାହିଁ ତୁମର ଉଦ୍ଦେଶ୍ୟ ? ତା'ହେଲେ ସିନା ଏଇ ବିଶିଷ୍ଟ ରେସ୍ତୋରାଁର ନାମକରଣ ସାର୍ଥକ ହେବ ।

କହିବାକୁ ଗଲେ ମାଧବବାବୁ କଅଣ ଏଠିକି ଆସିନଥିବେ କେଉଁ ଏକ ଶିକାର ସୁଲଭ ମନୋବୃତ୍ତି ନେଇ ? ଏବଂ ଏଇ ବିଅର୍‌ପିଆ ବନ୍ଧୁ, ମାନେ ତା' ହାତରେ ଥିବା କଲମ କମ୍ପା କଣ୍ଟିହିଁ ହେଉଛି ତାଙ୍କର ଈପ୍‌ସିତ ଶିକାର, ଉପସ୍ଥିତ ଲକ୍ଷ୍ୟରେ ପହୁଞ୍ଚିବା ପାଇଁ ?

ନା !! ଅନ୍ତତଃ ଆଜି ତା' ନୁହେଁ । ଏଇ ବନ୍ଧୁଜଣକ ଦୋସର । ଏବଂ ଯଦି ବା ସ୍ୱା'କୁ ଶିକାରର ଆୟୋଜନ ବୋଲି କୁହାଯାଏ, ତାଙ୍କ ଲକ୍ଷ୍ୟ ନୁହେଁ କେଉଁ ପର୍ମିଟ୍-ଲାଇସେନ୍‌ସ, ବା ସେହିପରି କିଛି । ଖାଲି ଟିକିଏ ରିହାତି । ଏଇ କେଇଟା ବର୍ଷ ହେଲା ଯେଉଁ ଅସ୍ୱସ୍ତି ବଢ଼ି ଉଠୁଛି ଦିଲ୍ଲୀକୁ ନେଇ, ତା'ଠାରୁ ଦୂରେଇ ଯିବାର କାମନା । ହୁଏତ ସେଇଠୁଁ ଗୋଟାଏ ଆଶ୍ୱାସନା ମିଳିବ । ଯେ କଥାଟା ଏତେ ବିଷମ ନୁହେଁ, ସେ ଯେମିତି ଭାବୁଛନ୍ତି ।

କେଉଁଥିପାଇଁ ଏଇ ଅସ୍ୱସ୍ତି ? ଅବା ଅସନ୍ତୋଷ ?

ମନେହୁଏ ତା'ର ବିବିଧ ବିଭିନ୍ନ ଉପାଦାନ । ସେଗୁଡ଼ାକ କେତେଦୂର ନୂଆ ବୋଲି କହି ହେଉ ନାହିଁ । ପୁଣି ତା'କୁ ସବୁ ଏକାଠି କରି କଥାଟା ମୋଟ ଉପରେ ଏଇଆ ବୋଲି ଚିହ୍ନେଇବା କଷ୍ଟ । ଯଥା :

—ରାସ୍ତାରେ ଧାଉଁଥିବା ଯାନବାହନର କାନଅତଡ଼ା କେଁ କାଁ ପେଁ ପାଁ, ବସ୍‌ମୁହାଁ ଯାତ୍ରୀଙ୍କର ଦଳାଚକଟା ଦୌଡ଼, ଉଜନଚକିଆ ଅଟୋରିକ୍‌ସାର ଉଠାପକା ଉଲ୍ଲାସ, ଓ ତା' ପଛଆଡ଼ୁ ଭୁସ୍ ଭୁସ୍ ହୋଇ ବାହାରୁଥିବା ଧଳାଧଳା ଧୂଆଁ···( କଅଣ ଆଗରୁ ନଥିଲା ଏମିତି ? )

—ବିଶ୍ରାମ ବେଳେ ବସେଇ ଉଠେଇ ଦେଉ ନ ଥିବା ବେଖାତିରିଆ ମଶା ଓ ମାଛି···(ବାବୁ ଇଏ ବି' ଥିଲା, ମଝିରେ ହୁଏତ କମି ଯାଇଥିଲା । )

—ଲମ୍ବାଚଉଡ଼ା ଲତାଦ୍ରୁମଦେଷ୍ଟିତ ଆଉଜଉମାନଙ୍କରେ ଯେଉଁଠି ଏତେ ଘୋଘା' ନାହିଁ କି ଧୂଳିଧୂଆଁ ନାହିଁ, ହେଲେ ନୀରବତା ବି' ନାହିଁ, ଅପରନ୍ତୁ ଏକ ମଖମଲି ପଞ୍ଝାର ସ୍ତବ୍ଧତା । ବଙ୍ଗଳାକୁ ଜଗିଥିବା ସୁଲସ୍‌ଟୌକିର ସେଇ ଲୋକଟାକୁ ଦେଖୁନା', ଦେଖୁନା' ସେ କେମିତି ଛକି ରହିଛି ତୁମକୁ···? ( ଧ୍ୟାନ୍ତ୍ର, ଭି.ଆଇ.ପି.ମାନଙ୍କର ସୁରକ୍ଷା ଆଉ କାହାକୁ କୁହାଯାଏ ? )

—ଦୋକାନ ବଜାରର କଣାବକା, ଯେଉଁଠି କୁଣ୍ଠିତ ହସର ଟେକାଏ ଅସୁ ଆସୁ ଲିଭି ଯାଉଛି, ସତେକି ଦୋକାନୀ କି ଗରାଖ କେହି କାହାରିକୁ ଲେଉ୍ଟୁ ନାହାନ୍ତି, ଖାଲି ଗୋଟାଏ କାମ ତୁଣ୍ଡେଇ ଦେବା କଥା, ନହେଲେ ବିପଦ, ଚଲିଯିବ ରାଇସାହେବ, ଆଗେ ବଢ଼ିଯିବ···(ସୌଜନ୍ୟ ବିଳାସ ପାଇଁ ସମୟ କାହିଁ ? )

—ସରକାରୀ ଅଧାସରକାରୀ ଭବନମାନଙ୍କରେ ମଧ୍ୟ ଗୋଟାଏ ଆତ୍ମରକ୍ଷାର ଭାବ । ଲାଙ୍ଗୁଡ଼ ଟେକି ଉଦ୍ୟତ ହୋଇ ରହିଥିବାର ଖରନିଶ୍ୱାସ, କାଳେ ତୁମେ ତୁମ ନଖଦନ୍ତ ଚଳେଇଦେବ, ସେ କିଛି କହିବା ପୂର୍ବରୁ, ଅତର୍କିତରେ···(ସଦା ସତର୍କ ହୋଇ ରହିବା ବୁଦ୍ଧିମାନର ଲକ୍ଷଣ )

ଇତ୍ୟାଦି, ଇତ୍ୟାଦି । ଆଗରୁ କ'ଣ ଥିଲି କେମିତି ଥିଲି ସେକଥା ଭିନ୍ନ, କୋଉ ଗୋଟାକ ମିଶୁଛି କାହା ସାଙ୍ଗରେ ଯେ ମାଧବବାବୁ ତାଙ୍କ ଅସ୍ୱସ୍ତିର ସାମୂହିକ ରୂପଗୁଣକୁ କିଛି ଗୋଟାଏ ନାଆଁ ଦେଇ ପାରଥାଆନ୍ତେ ? ଯେମିତିକି ଇଏ ହେଉଛି 'ବଢ଼ି' ଉଠୁଥିବା ରାଜଧାନୀର ଅତି ଦର୍ପ, ଅତି ଭୟ, ଅତ୍ୟଧିକ ଭାବକାତରତା ବା ସେହିପରି କିଛି···ଏବଂ ଫଳରେ ଗୋଟାଏ ଅପରିଚ୍ଛନ୍ନତା ଖଣ୍ଡି ଖଣ୍ଡି ଭାବ ? ଯେଉଁଥିରେ (ଅଭ୍ୟାସ ନଥିଲେ) ମୁଣ୍ଡ ବଥେଇବାକୁ ବାଧ୍ୟ ଏବଂ ମଣା ମାଛି ବି' ତୁମକୁ ପାସଙ୍ଗରେ ପକେଇବେ ନାହିଁ ?

ତେବେ ତାଙ୍କର ଦୃଢ଼ ବିଶ୍ୱାସ ଥିଲି ଯେ ଏଇ ମୁଣ୍ଡବଥା ଖାଲି କାବନ୍ ମନୋକ୍‌ସାଇଡ଼୍‌ର ପ୍ରାଦୁର୍ଭାବ ଯୋଗୁଁ ନୁହେଁ, ତା' ପଛରେ ଆଉ କିଛି ଅଛି ଯାହା ଆଗରୁ ନ ଥିଲି । ···ନ ଥିଲି ମୁଁ ଯେତେବେଳେ କଲିକତାରୁ ପକେଇ ଆସିଲି ଏଠିକି, ଓ ଏମ୍.ପି. ଗଗନ ଭାଇଙ୍କ ସୁପାରଶରେ ଚାକିର ଖଣ୍ଡେ ପାଇଗଲି କୁଟୀର ଧାତୁଶିଳ୍ପ ନିଗମରେ । ଏବଂ ମୋର ମନେ ହେଲି ଯେ ଇଏ ପ୍ରକୃତରେ ଗୋଟାଏ ରାଜଧାନୀ, ସ୍ଫୂର୍ତ୍ତି ଓ ଶାନ୍ତିର ଶେଷକଥା । ···ଏବଂ ତତ୍‌ସହ ଗୋଟାଏ ସାଧାରଣ ବିଶ୍ୱାସ, ଯେ ବ୍ୟାଧି ଦୁରାରୋଗ୍ୟ ନୁହେଁ ।

ଏଥର ମନେପଡ଼ିଲି ଜଣକ କଥା । ନିଗମରେ ନାମ ଡାକି ଦେଲାତ ଜଗ୍‌ମୋହନ୍ ଭୁଟିଆ । ଜଗମୋହନ୍ ଜୀ ।···ମୋର ବନ୍ଧୁ, ସହକର୍ମୀ । ଅନ୍ୟତମ ଡାଇରେକ୍ଟର୍, ତେଣୁ ଅଧିକାଂଶ ପାହ୍ୟାରେ ଥିଲେ ମଧ୍ୟ ସାଥୀ । ଖାଲି ମୋର ନୁହେଁ, ନିଗମରେ କାମ କରୁଥିବା ପ୍ରତ୍ୟେକ ଲୋକର ସାଥୀ, ସେ ହାକିମ ହେଉ କି ଚପରାଶି । କାହିଁକିନା ସେ ସବୁରି ସାମ୍ନାରେ ହସିପାରେ ତା'ର ସେଇ ତେଉତେଉକା ହସ । ଏବଂ ଗୁରୁବାଣୀ

ଗାଇପାରେ । ସତେକି ଗୁରୁଙ୍କ ଛାଇ ତଳେ ସମସ୍ତେ ସମାନ, ସମସ୍ତେ ସୁଖୀ । 'ଐସା ନାମୁ ନିରଞ୍ଜନୁ ହୋଇ, ଜେକୋ ମଂନି ଜାଣେ ମନି କୋଇ…'

ଆଜି ସେଇ ଲୋକଟି ତାଙ୍କ ଅତିଥି । ଏବଂ ମାଧବବାବୁ ତାଙ୍କୁ'ଇ ପାଇ କହୁ ଚାଲିଛନ୍ତି ନିଜକୁ, ଯେ ଦିଲ୍ଲୀରେ ଖାଲି ଏଇ ଗୋଟିକ ମୋର ବନ୍ଧୁ ( ହୁଏତ ଆଉ ଜଣେ ଦି'ଜଣ ଥିବେ ସେ ବେଳର ଲୋକ, ମନେ ପକେଇଲେ ହେବ), ଖାଲି ୟା'ରି ସାଙ୍ଗରେ ମୋର ମେଳ ଅଛି, ମାନେ ଆତ୍ମାର ମେଳ । ବ୍ୟାପ ଆଉ ସମସ୍ତେ ଫାଲ୍‌ତୁ !

ପିଉ । ମନ ଭରି ଖାଉ, ପିଉ, ଭଜନ ବୋଲୁଥାଉ । ସେଇଥିରେ ମୋର ଖୁସି । ଯେମିତି ଆମ ବାପମାଆ ମଝିରେ ମଝିରେ ବାବାଜୀ ବୈଷ୍ଣବମାନଙ୍କୁ ଖୁଅ ଦେଲେ ଘରକୁ ଡାକି ଆଣି । ଏବଂ ଅତିଥି ବିଶେଷ ଖାଇ ସାରି ତୃପ୍ତିର ହାକୁଟି ମାରିଲାବେଳେ ତାଙ୍କ ଗୋଡ଼ତଳେ ପଡ଼ି ଯାଉଥିଲେ ଲମ୍ବ ଲମ୍ବ ହୋଇ । ମାଧବବାବୁ ହସିଲେ । … ଉଦାହରଣଟା ଠିକ୍ ନୁହେଁ । ଚପଳ । ମୁଁ କ'ଣ କୋଉ ଧର୍ମ କମେଇବି ବୋଲି ଡାକି ଆଣିଛି ତା'କୁ ? ଯେ ଯଥେଷ୍ଟ ଅର୍ଥଲାଭ ହୋଇ ଗଲଣି, ଏଣିକି କିଛି ଧର୍ମର ଫାଇଦା ଉଠେଇଲେ ହେବ ? ନା । ଲୋକଟାକୁ ମୋତେ ଭଲ ଲାଗେ । ସେଇଥିପାଇଁ ।

ତେବେ ଏଇ ଫାଇଦାଶୂନ୍ୟ ନିମନ୍ତ୍ରଣର ପଛରେ କ'ଣ ଗୋଟାଏ ଆତୁରିଆ ଆଶା ଛପି ରହି ନ ଥିଲା ? ଯେ ତଦ୍ଦ୍ୱାରା ତାଙ୍କ ଦିଲ୍ଲୀଗତ ଅସ୍ୱସ୍ତିର ଉପଶମ ହେବ, ଯନ୍ତ୍ରଣାଗୁଡ଼ିକ କମିବ ? ନହେଲେ ସେ କ'ଣ ଗତକାଲି ଏତେ ସମୟ ନଷ୍ଟ କରି, ୟା'କୁ ତା'କୁ ପଚାରି, ସେଇଠୁଁ ଟ୍ୟାକ୍‌ସିରେ ଏତେ ଗୁଡ଼ାଏ ଟଙ୍କା ଖର୍ଚ୍ଚ କରି ଜଗ୍‌ମୋହନ୍‌ଜୀଙ୍କୁ ଖୋଜି ବାହାର କରି ଆଆନ୍ତେ ଯମୁନା ସେପାରିର କେଉଁ ସୁଦୂର କଲୋନିରେ ? ଏବଂ ଦି'ପଦ କଥା ଭାଷା ନ ହେଉଣୁ ନିମନ୍ତ୍ରଣ ଜଣାଇ ଆଆନ୍ତେ ମଗ୍ନନ୍‌ରେ ଏକାଠି ହେବା ପାଇଁ ?

ଜଗ୍‌ମୋହନ୍‌ଜୀ ଅବଶ୍ୟ କାବା ହୋଇ ଯାଇଥିଲେ । …ହଁ, ଇଏ ଆମ ନିଗମ୍‌ରେ ଥିଲା । ଉଡ଼ିଶ୍ୟାକା ଦାସ୍‌ବାବୁ । ବେଶ୍ ମୋଟେଇ ଗଲଣି । ସିଲ୍‌କ୍‌ର ସଫାରି ସୁଟ୍ । ମୁଣ୍ଡବାଳକୁ ରଙ୍ଗେଇଛି ବୋଧହୁଏ । ଆଉ ଗୋଟାଏ ମହୁଆ ଅତର ବାସ୍ନା ଆସୁଛି ତା' ବାଳରୁ କି ପୋଷାକରୁ । ହଁ, ସେ ମୋ ପାଖକୁ ଆସୁଥିଲା ମଝିରେ ମଝିରେ । ଧର୍ମକଥା କହିଲାବେଳେ ଶୁଣୁଥିଲା ମନ ଦେଇ । ଅନ୍ୟମାନଙ୍କ ପରି ତରତର ହେଉ ନଥିଲା ଖସି ପଳେଇଯିବା ପାଇଁ । ବିଶେଷତଃ ମୁଁ ଜପ୍‌ଜୀ ସାହେବ ବୋଲିଲା ବେଳେ ତା' ଆଖି ବଡ଼ ବଡ଼ ହୋଇ ଉଠୁଥିଲା । ଦୋହାର ଅର୍ଥ ପଚାରୁଥିଲା, ବୁଝୁଥିଲା, କହୁଥିଲା ଯେ ତାଙ୍କ ଭାଗବତରେ ବି' ଏମିତିକା କ'ଣ ସବୁ ରହିଛି, କିନ୍ତୁ ସେଥିରୁ ପଦ ମନେ ପଡୁ ନାହିଁ । ହେଲେ କହୁଥିଲା ଯେ କଲିକତାରୁ ଏଠିକି ଆସି ତା'କୁ ଭଲ ଲାଗୁଛି ନିଶ୍ଚୟ, କିନ୍ତୁ ଏଇ କିରାଣୀଗିରି ଆଉ ପୋଷଉ ନାହିଁ । ମନ ହେଉଛି ଚାକିରି ଛାଡ଼ି ଦେବି, ବ୍ୟବସାୟ କରିବି । ହଠାତ୍ ଦିନେ ଶୁଣିଲା ବେଳକୁ ସେ ସତସତିକା ଚାକିରି ଛାଡ଼ି ଦେଇଛି…

ମୋ ରୁମ୍‌କୁ ଆସି ବଦାସ୍ତ ନେଇ ନ ଥିଲ ମୋ୦ୁ । ଖାଲି ଯାହା ହାତ ମିଳେଇଥିଲ ଫେସ୍‌ୱାର୍‌ୱେଲ୍ ମିଟିଂରେ । ଆଜ ଏତେଦନ ପରେ···ପୁଣି କ୍ୟାପିଟାଲ୍‌ର ଗୋଟାଏ ନାମ୍‌ଜାଦା ରେସ୍ତୋରାଁକୁ ନମନ୍ତ୍ରଣ···ବାବୁର ମତଲବ କଅଣ ?···

ବସ୍ମୟ ପରେ ସତର୍କତା । ଜଗ୍‌ମୋହନ୍‌ଜୀଙ୍କ ସ୍ୱଭାବକୋମଳ ସ୍ୱରବାଣୀରେ ଯେଉଁ ତେଜ ଫୁଟି ଉଠିଥିଲ, ତା'ର ରଙ୍ଗ ବଦଳିଗଲ । ଯାହାର ସମ୍ପର୍କ ଅଛି ଲଙ୍ଗୁଲଟେକା ଜନ୍ତୁର ନାଶ୍ୱାସ ସାଙ୍ଗରେ, ତେଣୁ ମାଧବବାବୁ ତା'କୁ ନଶ୍ଚୟ ଚହ୍ନିପାରି ଥାଆନ୍ତେ । ଏବଂ ହୁଏତ ମୂଳରୁ ହତାଶ ହୋଇ ପଡ଼ିଥାଆନ୍ତେ । କନ୍ତୁ ଭାଗ୍ୟ ଭଲ ସେମିତ ହେଲ ନାହିଁ, କାରଣ ରଙ୍ଗଟା କମେଷକେ ପୁଣି ବଦଳିଗଲ । ବର୍ତ୍ତମାନ ସେଥିରେ କଛ ଗୋଟାଏ ନଧି ମିଳିଯିବାର ଆନନ୍ଦ । ସେହେତୁ ତା'କୁ କେବଳ ଉଜ୍ଜ୍ୱଳତା କୁହାଯିବା ଉଚତ । ସେଇଠୁଁ ଆସିବ ସ୍ନିଗ୍ଧତା···

ମେହେତୁ ଜଗ୍‌ମୋହନ୍‌ଜୀ ଭାବିଲେ ଯେ କଥାଟା ବୁଝିହେଲ ଏଥର । ବ୍ୟବସାୟରେ ମୋଟେଇ ଗଲ ପରେ ଟୋକାର ମନ ଘର ଧରଲଣି । ଯେ ଏସବୁ ମିଛ, ବେକାର,ତୁଚ୍ଛା ଅଶାନ୍ତିର ମୂଳ । ସେଇଲଗି ସେ ଖୋଜ ଲୋଡ଼ ଆସିଛି ମୋ ପାଖକୁ ଏତେଦନ ପରେ । ପୁଣି ଥରେ ମୋ ପାଖରୁ ଗୁରୁବାଣୀ ଶୁଣିବ ବୋଲ ।

ସ୍ନିଗ୍ଧତାର ଆବେଶରେ ଆଖିପତା ନଇଁ ଆସିଲ । ଚକ୍‌କା ମୁହଁର ମାଂସଳ ଓଠରେ ଗୋଟିଏ ପ୍ରଶସ୍ତ ସ୍ମିତହାସ ଖେଳିଗଲ ଏ କୂଳରୁ ସେ କୂଳ । ଜଗ୍‌ମୋହନ୍‌ଜୀ କହିଲେ—ଥ୍ୟାଙ୍କ୍ ୟୁ, ମୁଁ ଆସିବ ; ଡିନର୍ ସୁବିଧା ହେବ ନାହିଁ ମୋ ପାଇଁ, ବୁଢ଼ା ହେଲିଣି କନା, ଲଞ୍ଚ୍‌କୁ ଆସିବି—ଓକେ ?''

(ଲଞ୍ଚ୍‌କୁ ସେ ଅଧିକ ଉପଯୋଗୀ ମନେ କଲେ ତା'ର ଅନ୍ୟ ଏକ ସାମାନ୍ୟ କାରଣ ମଧ୍ୟ ଥିଲ । ପାନୀୟ ଭିତରେ ସେ ବିଅର୍‌କୁ ବେଶୀ ଭଲ ପାଆନ୍ତି, ଯାହା ମଧ୍ୟାହ୍ନକୁ ସୁହାଏ । ଏବଂ ମଗ୍ନନ୍ ପରି ରେସ୍ତୋରାଁର ବିଅର୍ ଖୁବ୍ ଉଚ ଧରଣର ହୋଇଥିବ ନଶ୍ଚୟ···। ତେବେ କାରଣଟା ଥିଲ ସାମାନ୍ୟ । ତଥା ଆନୁଷଙ୍ଗିକ) ।

ଆଜି ମାଧବବାବୁ ତାଙ୍କୁ ଏପର୍ଯ୍ୟନ୍ତ କଛି ପଚ୍ଚାର ନାହାନ୍ତି ଧର୍ମ ବିଷୟରେ । ଯଦିଓ ବିଅର୍‌ରେ ତ୍ମୁକଟିଏ ଦେଇଛନ୍ତି କ ନାହିଁ ଜଗମୋହନ୍‌ଜୀ ଗୋଟାଏ ଗୁଣୁଗୁଣୁ ଆରମ୍ଭ କରଦେଇଥିଲେ । ଗୁରୁ ନାନକ୍‌ଜୀଙ୍କର ଗୋଟାଏ କବର୍ ଅମଲ୍ଗଣ, ପୃଥିବୀର ପାପୀ-ତାପୀଙ୍କୁ—

ସୁଣିଏ ସିଧ ପୀର ସୁର ନାଥ ।
ସୁଣିଏ ଧରତ ଧବଳ ଆକାଷ ।
ସୁଣିଏ ଦୀପ ଲୋଅ ପାତାଳ···
ନାନକ ଭଗତା ସଦା ବିପାସୁ ।
ସୁଣିଏ ଦୂଖ ପାପକା ନାସୁ ।

ତା' ସାଙ୍ଗକୁ ତାଙ୍କର ସେଇ ତନ୍ମୟ ଭାବ । ଚଇତନ୍ୟଆଙ୍କ ପରି । ମାଧବବାବୁଙ୍କର ମନେ ପଡ଼ିଲା । ଥରେ ତାଙ୍କୁ ବିଚିତ୍ର ଲାଗିଥିଲା ଯେ ଲୋକଟା କେମିତି ହଠାତ୍ ପଳେଇ ଯାଇପାରେ ପୃଥିବୀରୁ । ଏବଂ ପୁଣି ଫେରି ଆସେ ଚଟ୍‌କିନା । କଗମର କେଉଁ ଗୋଟାଏ ସମସ୍ୟା ନେଇ ଆଲୋଚନା ଚାଲିଚି, ଏଇସମୟରେ ଜଣେ ଆଲୋଚକ କ୍ଷଣିକ ବିରତିର ଫାଙ୍କରେ ଜଣାଇଲା ଯେ ସେ ଦ'ଦିନ ହେଲା ଫେରିଛି ଅମୃତସରରୁ । ବାସ୍ ! ଜଗମୋହନ୍‌ଜୀ ଅନେଇ ରହିଲେ ତା' ଆଡ଼କୁ, ଗୋଟାଏ ନୂଆ କଥା ଶୁଣିଲା ପରି । ଏବଂ ଧୀରୁ ଧୀରୁ ତାଙ୍କ ଗ୍ରୀବା ଝୁଲିବାକୁ ଲାଗିଲା, ଆଖି ଛଳଛଳ ହୋଇ ଆସିଲା, ଓ ପାଟିରୁ ଗୁରୁବାଣୀ ବାହାରିଲା । ଏଭଳି ଏକ ମନୋମୁଗ୍ଧକର ଦୃଶ୍ୟ, ଯେ ମନେହେଲା ସେ ଏଠି ନାହାଁନ୍ତି, ଅଛନ୍ତି ଯାଇଁ ସେଇ ମହାମନ୍ଦିରର ପ୍ରାଙ୍ଗଣରେ, ସରୋବର କୂଳରେ । ଏବଂ ଗୁରୁବାଣୀର ଦୋହା ଭାସି ଆସୁଛି ମାଇକ୍‌ରେ, ଶରୀର ଓ ସରୋବର ଉଭୟଙ୍କୁ ଛୁଇଁ ଛୁଇଁ, ପୁଲକିତ କରି···ଆଃ ! କିନ୍ତୁ ଅଳ୍ପସମୟ ପରେ ସେ ଉଠିଗଲେ ହଠାତ୍ । ଏବଂ ପଚାରିଲେ,—ଆଚ୍ଛା, ଗୋପାଲ୍‌ବାବୁଙ୍କ ଉପରେ ଯେଉଁ ଟଙ୍କା ବାକି ଥିଲା, ସେଥିପାଇଁ ରିମାଇଣ୍ଡର୍ ଯାଇଛି କି ନାହିଁ ?

ଏମିତି କେମିତି ହୁଏ ? ପୃଥିବୀରୁ ଏକ୍‌ଦମ୍ ପଳେଇ ଯାଇ ପୁଣି ଫେରି ଆସି ହୁଏ ଦ'ମିନଟ୍‌ରେ ସୁଇଚ୍ ଟିପିଲା ପରି ? ସୁବିଧା ଦେଖି ମାଧବବାବୁ ତାଙ୍କୁ ପଚାରିଥିଲେ ଏଇ ପ୍ରଶ୍ନ । ତା'ର ଉତ୍ତରରେ ଜଗମୋହନ୍‌ଜୀ ତାଙ୍କର ସେଇ ଅମାୟିକ ହସ, ହାଲୁକା ହସର ପୂର୍ବକଥା (ଚଟକା ଗୋଲ୍ ମୁହଁରେ ଦରଖୋଲା ଓଠକୁ ଲମ୍ବେଇ ଦେଇ, ସତେ ଶ୍ମଶ୍ରୁବିହୀନ ରାମକୃଷ୍ଣ···)ଟିକୁ ପ୍ରଦାନ କରି କହିଥିଲେ—"ଆରେ ଦାସ୍‌ବାବୁ, ଆପଣଙ୍କୁ ଜଣା ନାହିଁ ଆମ ବୁଲେଶାହା କଣ କହିଥିଲେ ? ସେ ଥରେ ତାଙ୍କ କ୍ଷେତରେ ଧାନ ରୋଉଥିଲେ । ଜଣେ ପଚାରିଲା—ସନ୍ତଜୀ, କହିଲେ ମୋ ମନଟାକୁ କେମିତି ନେଇଯିବ ଭଗବାନଙ୍କ ପାଖକୁ ? ସନ୍ତ୍‌ଜୀ ତାଙ୍କ ରୁଆରୋଇ କାମ ଜାରି ରଖିଲେ । ମୁଣ୍ଡ ବି ଟେକିଲେ ନାହିଁ ଉପରକୁ । କହିଲେ ମାତ୍ର ପଦୁଟିଏ—'ଏମିତି ।' ମାନେ ଆୟତ୍ତାଧୀନ ଏଇ ଧାନଗଛକୁ ଏପାଖରୁ ସେପାଖ । ତତ୍‌କ୍ଷଣାତ୍ । ନିହାତି ସହଜ । ଖାଲି ମନ ଥିଲେ ହେଲା । ବୁଝିଲେ ଦାସ୍‌ବାବୁ ?"

ଲୋକଟାକୁ ଖାଲି ଅନେଇ ରହିବା କଥା । ତା'ର ସେଇ ସହଜିଆ ଭକ୍ତ ଓ ସଦାସୁଖୀ ଭୋଳାପଣକୁ ଅନୁଭବ କରି ପାରିଲେ ସେଇ ଲକ୍ଷେ ଟଙ୍କା । ପ୍ରକୃତରେ ବୁଢ଼ା ହୋଇ ଗଲଣି । ମୁଣ୍ଡବାଳ ପ୍ରାୟ ପୁରାପୁରି ପାଚି ଗଲଣି । କିନ୍ତୁ ସେଇ ଲୋକ । ସେଇ ଭାବ । ନା, ତା'କୁ ଏଣୁତେଣୁ କିଛି ପଚାରିବ ନାହିଁ । ବୋଲୁ ତା'ର ଗୀତ, ବୋଲିବ ଯେତେବେଳ ଯାଏ । କଳେ କହିଯାଉ, ଯାହା କହିବ । ମୁଁ ଖାଲି ଦେଖୁଥିବି··· ଶୁଣୁଥିବି···

ତେଣୁ ମାଧବବାବୁ ବିଶେଷ କିଛି ପଚରାଉଚରା କଲେ ନାହିଁ । ଧର୍ମକଥା ଗୁଡ଼ିକ, ମାମୁଲି ବ୍ୟକ୍ତିଗତ ପ୍ରଶ୍ନ, ଯଥା : ସ୍ୱାସ୍ଥ୍ୟ କେମିତି ଅଛି, ରିଟାୟାର୍ ହେଲା ପରେ କେମିତି ସମୟ କଟୁଛି ଇତ୍ୟାଦି କୁଶଳବାର୍ତ୍ତାର ସୌଜନ୍ୟକୁ ମଧ୍ୟ ଲମ୍ବେଇବାକୁ ଚାହିଁଲେ ନାହିଁ । ତେବେ ତାଙ୍କର ଖିଆଲ୍ ନଥିଲା ଯେ ସେ ଗୋଟିଏ କୁଶଳ ପ୍ରଶ୍ନକୁ ଦି'ତିନି ଥର ପଚାରି ସାରିଲେଣି ବିଭିନ୍ନ ଢଙ୍ଗରେ ।—"ଆଉ ଆପଣଙ୍କର ସେଇ ସାନପୁଅଟା—ତା' ନାଆଁ ଗୁର୍‌ଚେଜ୍ ନା ? ଯାହାଙ୍କୁ ଆପଣ ଗୁରୁଙ୍କ ହାତରେ ଟେକି ଦେଇଥିଲେ—ତା' ଖବର କଅଣ ? କେତେଥର ଆସିଛି ଆମ ଦପ୍ତରକୁ । ଖାସା ସ୍ମାର୍ଟ୍ ଟୋକା । ଯାହା ପଚାରିବ, ତା'ର ଫଟାଫଟ୍ ଉତ୍ତର ଦେଇଦେବ, ଟିକିଏ ହେଲେ ଲାଜ ନାହିଁ କି ସଙ୍କୋଚ ନାହିଁ···ବଡ଼ ହେଲେ କ'ଣ କରିବୁ ବୋଲି ପଚାରିଲାରୁ କହିଲା ମୁଁ ଆଇ.ଏଫ୍.ଏସ୍ ହେବି, ଦୁନିଆଁ ଦେଖିବି···ହୋଇଥିବ ନିଶ୍ଚୟ, ଆଇ.ଏଫ୍.ଏସ୍ ନହେଲେ ବି' ସେମିତିକା କିଛି···"

ଜଗ୍‌ମୋହନ୍‌ଜୀ ଖାଲି କହିଲେ—'ହଁ, ହଁ, ହୋଇଥିଲା, ହୋଇଥିଲା···' । କିନ୍ତୁ କ'ଣ ହୋଇଥିଲା କି ହୋଇଛି କିଛି ବୁଝା ପଡ଼ିଲା ନାହିଁ । ତେଣୁ ଅଜାଣତରେ ମାଧବବାବୁ ତା'ର ବିଷୟରେ ପଚାରି ସାରିଲେଣି ଥରକୁ ଥର, ତାଙ୍କର ସନ୍ଦେହ କୌତୂହଳକୁ ମେଣ୍ଟେଇବା ପାଇଁ ।

···ଆରେ ତା'ର ଦି'ଗିଲାସ ସରିଗଲାଣି ସ୍ୱା' ଭିତରେ ? ଅଥଚ ମୋର ଗୋଟାଏ ବି' ସରିବାକୁ ନାହିଁ ? ଚଅଁ ଚଅଁ କରି ପିଇ ଯାଉଛି···ହଉ ହଉ, ପିଉ ଯେତେ ପିଇବ । ମାଧବବାବୁ ଅଳ୍ପବହୁତ ଆଶ୍ଚର୍ଯ୍ୟ ହେଲେ ମଧ୍ୟ ଆତିଥ୍ୟରେ ଊଣା କଲେ ନାହିଁ । ମେନୁକାର୍ଡ୍ ଧରି ପହଞ୍ଚିଥିବା ତନ୍ୱୀତରୁଣୀକୁ ପୁଣି ଥରେ 'ନୋ, ଥ୍ୟାଙ୍କ୍‌ସ୍, ଆଉ ଟିକିଏ ପରେ' କହି ବିଦା କରି ଦେଲେ । ଏବଂ ଆଉ ଗୋଟାଏ ବୋତଲ ମଗେଇଲେ ।

କିନ୍ତୁ କ୍ରମଶଃ ବୋତଲ ପରେ ବୋତଲ ମଗେଇବାକୁ ପଡ଼ିଲା । ଜଗ୍‌ମୋହନ୍‌ଜୀ ! କଣ ହୋଇଛି ତୁମର ? ଏତେ ଶୋଷ ? ନା ବିଅର ବୋଲି ଗୋଟାଏ ବସ୍ତୁ ଚାଖିନାହଁ ଯୁଗେ ହେଲା ? ମାଧବବାବୁ ଆମୋଦିତ ହେଲେ ।

ହେଲେ ତାଙ୍କ ଆମୋଦ ଦୀର୍ଘ ରହି ପାରିଲା ନାହିଁ । ଯେତେବେଳେ ସେ ଦେଖିଲେ ଯେ ଢୋକ ପରେ ଢୋକ ବିଅର୍ ସାଙ୍ଗକୁ 'ଶବ୍ଦ' ପରେ 'ଶବ୍ଦ'ର କୀର୍ତ୍ତନ ଚାଲିଥିଲେ ମଧ୍ୟ ( ଏମିତି ଚାଲିଛି ଯେ ପାଖ ଟେବୁଲ୍‌ର ଲୋକେ ଅନାଉଛନ୍ତି ଆମ ଆଡ଼କୁ ) ଶବ୍ଦ ଗୁଡ଼ାକ ଅଡୁଆତଡୁଆ ହୋଇ ଯାଉଛି । ସ୍ୱରଭଙ୍ଗ ହେଉଛି । ସଚେତ ବନ୍ଧୁ ତାଙ୍କର ସ୍ୱଗୁଣବିନ୍ୟାସକୁ କୌଣସିମତେ ଚାଲୁ ରଖିବାକୁ ଚାହାଁନ୍ତି । ଏଥର ସେ ସହଜରେ ଫେରି ଆସିବାକୁ ନାରାଜ । ମର୍ତ୍ତ୍ୟକୁ, ଅବା ଏଇ ପୃଥିବୀକୁ । ତା'ଛଡ଼ା ସେ ବେଶ୍ କିଛି ସମୟ ଯାଏଁ ଚୁପ୍ ହୋଇ ରହିଯାଉଛନ୍ତି । ଏବଂ ବଗିଲାପରି ଅନାଉଛନ୍ତି ସାମ୍ନାକୁ···ମୋ ଆଡ଼କୁ ?? କଥା କଅଣ ?

ଧ୍ୟାତ୍ତୁ, ଜଗ୍‌ମୋହନ୍‌ଜୀ ରାଗିବା ଲୋକ ନୁହେଁ । ଅସମ୍ଭବ ! ହୁଏତ ପିଆପିଇର ଅଭ୍ୟାସ ନାହିଁ ବିଶେଷ । ସେଇଲାଗି ନିଜକୁ ଧରି ରଖି ପାରୁ ନାହିଁ । ତଥାପି···ସେ ହୁଏତ ଅଯଥାରେ ହସିପାରେ, କାନ୍ଦିପାରେ, ଚୁପ୍ ହୋଇ ବସି ଯାଇ ପାରେ—କିନ୍ତୁ ରାଗିବ କେମିତି ? ମୁଁ କ'ଣ ତା'କୁ ଚିହ୍ନି ନାହିଁ ସେଦିନୁ ? ନା ଇଏ ବି ଏତେ ବଦଳି ଯାଇଛି ସ୍ୱା' ଭିତରେ ?

ମାଧବବାବୁ କ୍ଷୁବ୍ଧ ହେଲେ । ଏବଂ ଭାବିଲେ—କଅଣ କିଛି ଗଲତି ହେଲା ମୋ-ଆଡ଼ୁ ? କିଛି ଭୁଲ୍ କଥା କହିଲି କି ? ନା ଇଏ ବି ହିଂସା କରୁଛି ମୋତେ, ଯେ କାଲିକା କିରାଣୀଟାଏ କେମିତି ଏତେ ବଡ଼ ଲୋକ ହେଲାଣି ? ହେ ଭଗବାନ୍ !

ମାଧବବାବୁଙ୍କର ସନ୍ଦେହ ସତ ନଥିଲା । ଅନ୍ତତଃ ପୁରାପୁରି ସତ ନଥିଲା । କାରଣ ଜଗ୍‌ମୋହନ୍‌ଜୀ ମୋଟେ ହିଂସା କରୁ ନଥିଲେ ତାଙ୍କର ପ୍ରାକ୍ତନ ସହକର୍ମୀଙ୍କୁ, ତା'ର ସୁଖସମୃଦ୍ଧିକୁ । ଏବଂ ଯଦିବା ସେ ରାଗୁଥିଲେ, ରାଗଟା ଏତେ ଅଡ଼ୁଆତଡ଼ୁଆ, ତାଙ୍କ ଶବ୍ଦକାର୍ତ୍ତିନର ଗଣ୍ଡଗୋଳପରି, ଯେ ତା'କୁ କିଏ ସତ ବୋଲି ମଣିବ ? ଏବଂ ଯେଉଁ ଛୁଲୁଛୁଲୁ ରୁହାଣୀ ଭିତରୁ ଓହରି ଯାଇ ମଦନଶାକୁ ଆବୋରିଛି, କହିବାକୁ ଗଲେ ପ୍ରାଣ-ବିକଳରେ ଜାବୁଡ଼ି ଧରିଛି, କାଳେ କୋଉ ଦମ୍ଭମସ୍ତ ଦୁଃଖ ଧସିପଡ଼ିଯିବ, ତା'ର ଯନ୍ତ୍ରଣାକୁ କ'ଣ ଦେଖିପାରୁନାହାନ୍ତି ମାଧବ ବାବୁ ?

ଦେଖିପାରୁ ନାହାନ୍ତି । ପାରିବେ ନାହିଁ । କେହି ହେଲେ ପାରିବ ନାହିଁ । କାରଣ ସେଇ ଯନ୍ତ୍ରଣାର ମର୍ମକଥା ଅତି ଗମ୍ଭୀରରେ ଅଛି, ଏବଂ ଅନେକ ଆଡ଼କୁ ବ୍ୟାପିଛି । ଯେହେତୁ ସିଏ ଖାଲି ବୁଢ଼ାର ନୁହେଁ କି ଭକ୍ତର ନୁହେଁ···ଅଧିକନ୍ତୁ ବାପର । ତାକୁ ଦେଖେଇ ହେବ ନାହିଁ, ଯେମିତି ହେଲେ ଲୁଚେଇବାକୁ ପଡ଼ିବ । ବୁଡ଼େଇବାକୁ ପଡ଼ିବ । ନିଶାରେ ହେଉ କି କ୍ରୋଧରେ । ତା'ର ବିରୂପକୁ ଘୋଡ଼େଇବାକୁ ପଡ଼ିବ ।

( କାହିଁକି ପଚାରି ବୁଲୁଛି ହଜାରଥର ? ଜାଣିସିଆଣା ? ନା, ମନେ ହେଉ ନାହିଁ ସେମିତି । ଯାହାହେଉ ସେ ମୋ ପୁଅ ନା ତା' ପୁଅ ?···ହୁଁ, ମୋ ପୁଅ ସ୍ମାର୍ଟ, ବୁଦ୍ଧିଆ । ମୋଠୁଁ ଆଉ କିଏ ବେଶୀ ଜାଣିଛି ତା' ବିଷୟରେ ? ଜାଣିଛି, ହେଲେ କହିପାରିବ ନାହିଁ । ସାଧାରଣ ବାପଙ୍କପରି ଛାତି ଫୁଲେଇ ବଡ଼େଇ କରି ପାରିବ ନାହିଁ ।

···ତା'ଛଡ଼ା ମୁଁ ତମକୁ କାହିଁକି କିଛି କହିବାକୁ ଯିବ ? ତମେ କ'ଣଟା ବୁଝିବ ତା' ସ୍ୱପ୍ନ କି ଦୁଃସ୍ୱପ୍ନର କଥା ? ତା' ଜାତିଭାଇ ବୁଝିଲେ ନାହିଁ, ଭାରତ ସରକାର ବୁଝିଲା ନାହିଁ, ବାପ ହୋଇ ମୁଁ ବି ସବୁତକ ବୁଝିପାରୁ ନାହିଁ । ଆଉ ତମେ ତ କୋଉ—

ପୁଅ---ପହଞ୍ଚିଥିଲା ତା' ପହିଲି ସ୍ୱପ୍ନ ପାଖରେ । ଆଇ. ଏଫ. ଏସ. ହୋଇଥିଲା । ହବ ନାହିଁ କେମିତି ? ପଢ଼ାରେ ଫାଷ୍ଟ୍, ଡିବେଟ୍‌ରେ ଫାଷ୍ଟ୍, ଖେଳକୁଦରେ ବି କେତେ କପ୍ ପାଇଛି । ସବା ଶେଷକୁ ଲିଡର୍ । ହବ ନାହିଁ କେମିତି ? କିନ୍ତୁ ଜାଣିଛ ? ଜପ୍‌ଜୀ

ସାହେବ ତା'ର ପୁଅପୂଣ ମୂଖସ୍ଥ । ଥରେ ଥରେ ମୋତେ ବ' ବୁଝେଇ ବସିବ ତା'ର ଗୂଢ଼ ତତ୍ତ୍ୱ ! ପାଗଳା !

...ବାବୁ, ଜାଣିଛୁ, ତୁ ସେଇ ଦିନଠୁଁ ଆସିନୁ ମୋ ପାଖକୁ—ଆସି ପାଞ୍ଚ ବର୍ଷ ହୋଇ ଗଲଣି ? ନା, ନା, ଥରୁଟାଏ ଆସିଥିଲୁ ତୋ ବେମାର ମାଆକୁ ଦେଖିବୁ ବୋଲି । କିନ୍ତୁ ପାଞ୍ଚମିନଟ୍ ବ' ବସିଲୁ ନାହିଁ ମୋ ପାଖରେ । ମୋତେ ଥରେ ହେଲେ ବୁଝେଇବାକୁ ଦେଲୁ ନାହିଁ । ଯେ ସନ୍ତ୍ରୀ ସିପାହୀମାନେ ଖଣ୍ଡା ଧରିଥିଲେ ଧର୍ମକୁ ବଞ୍ଚେଇବେ ବୋଲି, ବିଚରା ଗରିବଗୁରୁବା, ସ୍ତ୍ରୀ ପିଲାଙ୍କ ରକ୍ତ ବୁହାଇବା ପାଇଁ ନୁହେଁ ।

ଶୁଣ୍, ଶୁଣ୍, ରାଗ୍ ନା । ମୁଁ କ'ଣ କହୁଛି ଶୁଣ୍ । ପ୍ରତିଶୋଧର ଅର୍ଥ ଅଛି । ଭାରତ ସରକାର ନ ବୁଝିଲେ ବ' ମୁଁ ବୁଝିଛି । କିନ୍ତୁ...କିନ୍ତୁ ତା' ବୋଲି କ'ଣ ତୁ ତୋ ଶତ୍ରୁକୁ ଚିହ୍ନିବୁ ନାହିଁ ? ବଜାରଘାଟରେ ବୁଲୁଥିବା ଖେଳତାମସା ଦେଖୁଥିବା, ଏପରିକି ଶୋଇଥିବା ଲୋକ ଗୁଡ଼ାଙ୍କୁ ଗୁଳିକରି ମାରିଦେବୁ ଏମିତି ? ତାଙ୍କ ଦେହ କ'ଣ ଦେହ ନୁହେଁ ନା ତାଙ୍କ ରକ୍ତ ନାଲି ନୁହେଁ ?

ନା ମ, ତୁ କିଛି ମାରୁ ନ ଥିବୁ ତାଙ୍କୁ । ତୋ ମନରେ ଏତେ ହିଂସା ଆସିବ କୋଉଠୁ ? କୋଉ ତୋ ବାପର ଥିଲା ନା ମାଆର ଥିଲା ଯେ...ହଁ, ହଁ, ଥିଲା ଆମ ଟୋକାବେଳେ, ଯେତେବେଳେ ଆମେ ପ୍ରେମ କରୁଥିଲୁ । ଗୋଟାଏ ମିଛିମିଛିକା ହିଂସାର ଆନନ୍ଦ—ଇସ୍ !

...ଆରେ ଦାସ୍‌ବାବୁ, ମୋ ଆଡ଼କୁ ଅନେଇଛ କାହିଁକି ଏମିତି ? ଦେଖୁନା' ମୁଁ କେମିତି ହସୁଛି ଆମ ପ୍ରେମକଥା ମନେ ପକେଇ ? ମୋତେ ଡରୁଛ ନା କଅଣ ? ଡର୍‌ପୋକ୍ କହିଁକା ! ମଗାଅ ଆଉ ଗୋଟାଏ ବିଅର !

ବୁଝିଲ, ସବୁ ଦୋଷ ତୁମର । ତୁମପରି ଯେତେକ ଚାକିରିଆ, କିରାଣୀ, ଓକିଲ, ବ୍ୟବସାୟୀଙ୍କର ଯେଉଁମାନେ ଗୀତା କି ଗୁର୍‌ବାଣୀ, କିଛି ପଢ଼ନ୍ତି ନାହିଁ କି ବୁଝନ୍ତି ନାହିଁ । ଖାଲି ଟଙ୍କା କମାନ୍ତି, ଆଉ ହାଁକରି ଶୁଣି ଯାଆନ୍ତି ଆମେ କଣ କହୁଛୁ । ଯେମିତିକି ଖାଲି ସେତିକରେ ସ୍ୱର୍ଗକୁ ଯିବେ !

ତୁମେ ସବୁ ରଗେଇଛ ମୋ ପୁଅକୁ । ତା'କୁ ଅପମାନ ଦେଇଛ । ତା' ଦେହର ଭିତରେ ପଶି...

ହୁଏତ ସେ ଆଉ ଫେରିବ ନାହିଁ । ପୁଲିସ୍ ପାଖକୁ କି ତା' ବାପ ପାଖକୁ । ଆଉ ସେଥିପାଇଁ ତମେ'ଇ ଦାୟୀ... )

ଏହି ସମୟରେ ଜଗ୍‌ମୋହନ୍‌ଜୀଙ୍କ ନିଶାଗ୍ରସ୍ତକ୍ଲିଷ୍ଟ ଚେହେରା ଏଭଳି ଭୟାବହ ଦେଖାଗଲା ଯେ ମାଧବବାବୁଙ୍କର ମନେ ହେଲା ଏଇକ୍ଷଣି କିଛି ଗୋଟାଏ ଘଟିବା ଉଚିତ । ଫଇସଲା ହୋଇଯିବା ଉଚିତ ଯେ ଦିଲ୍ଲୀ ବଦଳି ଯାଇଛି ନା ତାଙ୍କର ମୁଣ୍ଡ ବିଗିଡ଼ି ଯାଇଛି ।

କେହି ଲକ୍ଷ୍ୟ କରି ପାରି ନ ଥିଲେ ଯେ ପାଖ ଟେବୁଲ୍‌ରୁ ଜଣେ ଭୋଜନାର୍ଥୀ ଅନେଇ ରହିଛି ଏଆଡ଼କୁ । ବୋଧହୁଏ ଜଗମୋହନଜୀଙ୍କ ଆଡ଼କୁ ।

## ( ଦୁଇ )

ଯେଉଁ ଭଦ୍ରଲୋକ ତାଙ୍କୁ ବାରମ୍ବାର ଅନେଉଥିଲେ, ବୋଧହୁଏ ଠିକଣା ଭାବରେ ଚିହ୍ନିବାପାଇଁ, ସେଇଠୁଁ ଅନ୍ୟମନସ୍କ ହୋଇପଡୁଥିଲେ ଏବଂ ସାମ୍ନାରେ ବସିଥିବା ଅତିଥିଙ୍କ ସହାସ୍ୟ ଫଟ୍ ଫଟ୍ କଥାବାର୍ତ୍ତାରୁ କିଛିଟା ଧରିପାରୁ ନଥିଲେ, ତାଙ୍କର ଉପସ୍ଥିତି ଟିକିଏ ବେଖାପା ମନେ ହେବ ଏମିତିକା ଜାଗାରେ। ଅନ୍ତତଃ ମନେ ହେବ ଯେ ଆତିଥ୍ୟର ବିଲ ତାଙ୍କ ପକେଟ୍‌କୁ ଯିବ ନାହିଁ। କାରଣ ଅଧ୍ୟାପକ ତାପସ ବନ୍ଦ୍ୟୋପାଧ୍ୟାୟ ଜଣେ ସାଧାରଣ ଅର୍ଥାତ୍ ସ୍ୱଳ୍ପସମ୍ବଳ ବିଶିଷ୍ଟ ନାଗରିକ। ପିନ୍ଧିଛନ୍ତି ମୋଟା ଖାଦିର କୁର୍ତ୍ତା ପାଇଜାମା। ପୁଣି ଗୋଟାଏ ଝୁଲିମୁଣି, ଯାହାକୁ ସେ ଏପର୍ଯ୍ୟନ୍ତ କାନ୍ଧରୁ ଉତାରିବା ଆବଶ୍ୟକ ମନେ କରି ନାହାଁନ୍ତି।

କିନ୍ତୁ ଇଏ ହେଉଛି ଗୋଟାଏ ପୁରୁଣାକାଳିଆ ଏବଂ ଉପରଠାଉରିଆ ଅନୁମାନ। ଯେକୌଣସି ଅତ୍ୟାଧୁନିକ ନାଗରିକର ଜାଣିବା ଉଚିତ ଯେ ଠିକଣା ଭାବରେ ପିନ୍ଧିଥିଲେ ଏଭଳି ବେଶଭୂଷାକୁ 'ଏଥ୍‌ନିକ୍' ଅର୍ଥାତ୍ ଆଞ୍ଚଳିକ ଗାରିମାରେ ଗୁଣୀ ବୋଲି ବୁଝାଯାଏ। ଏବଂ ଝୁଲିମୁଣି ସାଙ୍ଗରେ କେବଳ ଭିକ୍ଷା ଅଥବା ସମାଜସେବାର ସମ୍ପର୍କ ନାହିଁ। ଅଛି ମଧ୍ୟ କଳାତ୍ମକ ତଥା ସାଂସ୍କୃତିକ ଆତ୍ମାର, ଯାହାର ଶୋଷ ସହଜେ ମେଣ୍ଟେ ନାହିଁ। ଏବଂ ଯାହାର ନାନା ଜ୍ଞାତବ୍ୟ ତଥ୍ୟକୁ ଗୋଟେଇ ରଖିବା ପାଇଁ ଝୁଲିମୁଣି ହିଁ ସବୁଠାରୁ ଉପଯୋଗୀ। ବିଶେଷତଃ ଯେତେବେଳେ ନିତ୍ୟପ୍ରତ୍ୟହ ଘୂରିବୁଲିବାକୁ ପଡ଼େ ରାଜଧାନୀର ବିଭିନ୍ନ ଉଚ୍ଚାଙ୍ଗ କଳାପ୍ରଦର୍ଶନୀ, ପୁସ୍ତକ ମେଳା ଏବଂ ନୃତ୍ୟଗୀତର ଗବେଷ ହିସାବରେ। ଏହେତୁ ତାପସ ବନ୍ଦ୍ୟୋପାଧ୍ୟାୟ କେଉଁଟା କ୍ଲାସ୍ ନିଅନ୍ତି ଏବଂ କ'ଣ ପଢ଼ାନ୍ତି, ତା'କୁ ନେଇ ହୁଏତ ଲୋକେ ବାରକଥା କହିପାରନ୍ତି, କିନ୍ତୁ ତାଙ୍କ ଶୁଭକାଙ୍କ୍ଷୀ ବନ୍ଧୁମାନେ ଆଶା କରନ୍ତି ଯେ ସେ ଯଥାସମୟରେ ରିଡର୍ କି ପ୍ରଫେସର୍ ନ ହୋଇ ପାରିଲେ ନାହିଁ, ଅତିଶୀଘ୍ର କିଛି ଗୋଟାଏ ହେବେ। ପହଞ୍ଚିବେ କେଉଁଠି ନା କେଉଁଠି। ତାପସ୍‌ଦା ରାଜଧାନୀର କେଉଁ କଳାକାର, ପତ୍ରକାର, ତଥା କଳା-ସଂସ୍କୃତିର ଅଧିକାରୀଙ୍କୁ ଜାଣେ ନାହିଁ କହିଲ ?

ହେଲା। କିନ୍ତୁ ଯେତେ ଉଚ୍ଚାଙ୍ଗ କଳାପ୍ରେମୀ ହେଲେ ମଧ୍ୟ ତାଙ୍କ ପୁଞ୍ଜି ମଧ୍ୟ କ'ଣ ଏତେ ଉଚ୍ଚ ଧରଣର ଯେ ସେ ମଗ୍ନନ୍ ଭଳିଆ ରେସ୍ତୋରାଁରେ ଜଣେ ସୌଖୀନ ଓ ସାହେବାନିଆ ବନ୍ଧୁଙ୍କୁ (ଯାହା ତାଙ୍କ ବେଶଭୂଷା, ହାବଭାବ, ବିଶେଷତଃ ଇଂରେଜି କହିବାର ଠାଣି ଓ ଉଚ୍ଚାରଣରୁ ଜଣାପଡୁଛି) ଆପ୍ୟାୟିତ କରିବାର ସାହସ କରିପାରିଲେ ? ନୁହେଁ, ମୋଟେ ନୁହେଁ। ତଥାପି ତାଙ୍କୁ ଏଭଳି ଏକ ଉଦ୍ୟମ କରିବାକୁ ପଡ଼ିଲା, କାରଣ ଅତିଥିବିଶେଷ ଯଥାର୍ଥରେ ବନ୍ଧୁ ହୁଅନ୍ତୁ କି ନାହିଁ, ସେ ହେଉଛନ୍ତି ଜଣେ ମୂଲ୍ୟବାନ୍ ଅଧିକାରୀ। ଦିଲ୍ଲୀ ଦୂରଦର୍ଶନରେ ବିଭିନ୍ନ ଧରଣର ସାଂସ୍କୃତିକ ଛବି ଦେଖାଇବାକୁ ହେଲେ

ତାଙ୍କର ବାଟ ଦେଇ ଯିବାକୁ ପଡ଼ିବ । କଥା ହେଉଛି କ'ଣ କି, ତାପସ୍‌ଦା' ପୂର୍ବାଞ୍ଚଳର ଅନ୍ୟତମ ପ୍ରେମକିମ୍ବଦନ୍ତୀକୁ ଆଶ୍ରା କରି ଗୋଟିଏ ନୃତ୍ୟନାଟ୍ୟ ଲେଖିଛନ୍ତି, ଯାହାକୁ ଦୂରଦର୍ଶନରେ ରୂପାୟିତ କରି ହେବ । ଏବଂ କରିବା ଉଚିତ । ବିଶେଷତଃ ଏହି ଅଧିକାରୀ ଜଣକ 'ହଁ' ଭଣିବା ଉଚିତ, କାରଣ ସେ ହେଉଛନ୍ତି ପୂର୍ବାଞ୍ଚଳର ଲୋକ । ତାଙ୍କ ନାଆଁ ନିରଞ୍ଜନ ମିଶ୍ର । କିନ୍ତୁ ଅନୁସନ୍ଧାନ କରିବାରୁ ଜଣାପଡ଼ିଲା ଯେ ଖାଲି ସେତିକରେ ଚଳିବ ନାହିଁ । ପ୍ରତିଦ୍ୱନ୍ଦ୍ୱୀ ଅନେକ । ତେଣୁ ଆଉ କିଛି ଆବଶ୍ୟକ । ହାତଗୁଞ୍ଜା ନ ହେଲା ନାହିଁ (ସେ ଦିଗରେ ତାଙ୍କର ସମ୍ବଳ ନାହିଁ), କେଉଁ ଏକ ସୁନ୍ଦରୀ କଳାବନ୍ତୀ ସାଙ୍ଗରେ ଚହଲା ନ କରେଇ ପାରିବା ଦୁଃଖର ବିଷୟ (ସେ ଦିଗରେ ତାଙ୍କର ଦକ୍ଷତା ନାହିଁ), କିନ୍ତୁ ମିଶ୍ର ସାହେବଙ୍କୁ କଅଣ ଅନ୍ତତଃ ଗୋଟିଏ ଲଞ୍ଚ୍ ଖୁଆଇ ହେବ ନାହିଁ କୌଣସି ବଡ଼ ରେସ୍ତୋରାଁରେ ? ଶିକ୍ଷକ ହେଉ କି ଲେଖକ, ଏତିକି ପୁଞ୍ଜି ନ ଖଟେଇଲେ ସେ କୋଉ ମୁହଁରେ ଦୂରଦର୍ଶନ ପରଦାରେ ପହଞ୍ଚିବାକୁ ବସିଛି ? ଏହେତୁ ମିଶ୍ରସାହେବ ଆଜି ତାପସ୍‌ଦାଙ୍କ ନିମନ୍ତ୍ରିତ ଅତିଥି । ବିଶିଷ୍ଟ ମଗ୍ବନ୍ ରେସ୍ତୋରାଁରେ । ଏବଂ କଥାଟାକୁ ବିଚିତ୍ର ବୋଲି ମନେ କରିବା ଅନ୍ୟାୟ ।

ତା'ଛଡ଼ା ଫଲେନ ପରିଚୟତେ । ସନ୍ଦେହ ନାହିଁ ଯେ ମିଶ୍ରସାହେବ ଏଇ ଆତିଥ୍ୟକୁ ବେଶ୍ ଉପଭୋଗ କରୁଛନ୍ତି । ବାରମ୍ବାର କହିସାରିଲେଣି ଯେ ଏଠିକାର ସର୍ଭିସ୍ ଡାମ୍ନ୍‌ଡ୍ ଗୁଡ୍, ଫୁଡ୍ ବି' ଟପ୍‌ସ୍, ବିଶେଷତଃ ତନ୍ଦୁରି ଚିକେନ୍‌ଟା ସାଙ୍ଘାତିକ୍ । ଏବଂ ପ୍ରକାରାନ୍ତରେ ଜଣେଇ ଦେଲେଣି ଯେ ବନ୍ଦ୍ୟୋପାଧ୍ୟାୟଙ୍କର ନୃତ୍ୟନାଟିକା ଗ୍ରହଣ-ଯୋଗ୍ୟ । କୁଆଡ଼େ ସେଥିରେ ଗୋଟାଏ ମିଷ୍ଟିକ୍ କ୍ୱାଲିଟି ଅଛି ଯାହା ଏକାଧାରରେ ଆସାମର 'ବିହୁ' ନାଚ ଓ ପୁରୁଲିଆର 'ଛଉ' ସାଙ୍ଗରେ ମିଶି ଯାଉଛି (କେମିତି ମିଶୁଛି ତାପସ୍‌ଦା ବୁଝିପାରିଲେ ନାହିଁ, କି ବୁଝିବାକୁ ଚାହିଁଲେ ନାହିଁ), ତେଣୁ ତାକୁ ପ୍ରାଇମ୍ ଟାଇମ୍ ନ ହେଲେ ମଧ୍ୟ ପାଖାପାଖି କେଉଁଠି ଖଞ୍ଜି ଦେଲେ ମନ୍ଦ ହେବ ନାହିଁ । ମୋଟ ଉପରେ ତାପସ୍‌ଦା ଧରି ନେଲେଣି ଯେ ଫଳ ଫଳିଛି, ତେଣୁ ତାଙ୍କ ଧାରୁଆ ଶୁଖିଲା ମୁହଁ ଝଲି ଦିଶିଲାଣି । ସେହେତୁ ସେ କିଛି ଅଧିକା ଟଙ୍କା ଖର୍ଚ୍ଚ କରି ମିଶ୍ରସାହେବଙ୍କ ପ୍ରିୟ ଭୋଜନ ଶେଷର ପାନୀୟ ଚେରିବ୍ରାଣ୍ଡି (ଅନୁସନ୍ଧାନରୁ ମିଳିଥିବା ଅନ୍ୟତମ ତଥ୍ୟ) ମଗେଇବେ କି ନାହିଁ ଭାବୁଛନ୍ତି, ଏଇ ସମୟରେ ତାଙ୍କ ଆଖି ପଡ଼ିଲା ପାଖ ଟେବୁଲରେ ବସିଥିବା ଗଣଗଣିଆ ଗୀତ ବୋଲୁଥିବା, ଓ ବିଅର୍ ପିଉଥିବା ଭଦ୍ରଲୋକଙ୍କ ଉପରେ ।

ସେଇଠୁଁ ସେ ତାଙ୍କ ଆଡ଼କୁ ବାରମ୍ବାର ଚାହିଁଲେ । ଏବଂ ବିଚଳିତ ହେଲେ ।

ବିଚଳିତ ହେଲେ, ଯେତେବେଳେ ଚହଲାଚହଲା ମୁହଁଟାକୁ ପୁରାପୁରି ଚିହ୍ନି ହେଲା । ···ଇଏ ହେଉଛି ଗୁର୍‌ଜିତ୍‌ର ବାପ ! ସନ୍ଦେହ ନାହିଁ ଏଥିରେ । ମୁଁ ତା'କୁ କେତେଥର ଦେଖିଛି । ଆମ କଲେଜକୁ ଆସୁଥିଲା ବିଭିନ୍ନ ଉତ୍ସବ ଅନୁଷ୍ଠାନରେ । ତା' ପୁଅକୁ ଦେଖିବା ପାଇଁ । ଏବଂ ଫୁଲେଇ ହେବା ପାଇଁ । ମାନେ, ଦେଖ ମୋ ପୁଅ କେତେ

ପ୍ରାଇଜ୍ ପାଇଛୁ, କେମିତି ଏଇ କଲେଜକୁ କମ୍ପ୍ଟେଉଛୁ । ଉପରେ ପଢ଼ି କଥା କହୁଥିଲି ଆମ ସାଙ୍ଗରେ, ତା'ର ପିତୃତ୍ୱକୁ ପ୍ରଚ୍ଛର କରିବା ପାଇଁ । ପ୍ରଥମେ ପ୍ରଥମେ ମୁଁ ବିଶ୍ୱାସ କରି ପାରି ନ ଥିଲି ଯେ ଇଏ ତା' ବାପା ହୋଇଥିବ, କାରଣ ଗୁର୍‌ଜିତ୍ ହେଉଛି ସର୍ଦ୍ଦାର ଟୋକା, ଆଉ ସ୍ୱାଙ୍କ ମୁହଁରେ ନଣ ଦାଢ଼ି ନାହିଁ । କିନ୍ତୁ ପରେ ବୁଝିଲି ଯେ ଇଏ ହିନ୍ଦୁ ହେଲେ ମଧ୍ୟ ତା'ର ଗୋଟିଏ ପୁଅ ଗୁରୁଙ୍କୁ ଦେଇ ଦେଇଛି । ଘରେ ଘରେ ଏଇ ପ୍ରଥା ରହିଛି ପଞ୍ଜାବରେ । ଆଉ ଭଦ୍ରଲୋକ କୁଆଡ଼େ ଜଣେ ମହାନ୍ ଗୁରୁ ଭକ୍ତ । ସେଇଥିପାଇଁ ଏହି ମହାମୂଲ୍ୟବାନ୍ ଭେଟି ଗୁରୁଙ୍କ ପାଇଁ ।

ଗୁରୁଜିତ୍ । ଦେଖିବାକୁ ମୋଟେ ତା' ବାପ ପରି ନୁହେଁ । ଜଳଜଳ ପରି ଆଖି । ତାଙ୍କ ସଭାସମିତି କଥା ଛାଡ଼, ଡିବେଟ୍‌ରେ ବି' ଯେଉଁସବୁ କଥା କୁହେ ଆଉ ଯେମିତି ଭାବରେ, ସେଥିରେ ସାଧାରଣ ଲୋକ ତାତି ଉଠିବ । ଯେ ଏଭଳି ଘୋର ଅନ୍ୟାୟ କରିଯାଇଛି ନିରୀହ ଜନତା ପ୍ରତି । ଟୋକା ମୋତେ ବି' ଦିନେ ଡରେଇବାକୁ ବସିଥିଲା ! ହେଲେ ମୁଁ ଯଥା ସମୟରେ ଖସି ଆସିଲି ତା' ପାଖରୁ । କଲ୍‌ଚର୍‌ର ଖସି ଆସିବା କଥା କୋଧ ପାଖରୁ ।

କିନ୍ତୁ କିଏ ଜାଣିଥିଲା ତା' ରାଗ ଏତେ ଉପରକୁ ଉଠିବ ? ଆଇ. ଏଫ୍. ଏସ୍ ଭଳିଆ ଚାକିରିଟାକୁ ଛାଡ଼ିଛୁଡ଼ି ଦେଇ ମିଶିବ ଗୋଟାଏ ବଦ୍‌ମାସଙ୍କ ଦଳରେ ? ବୋମା ଛାଡ଼ିବ, ଗୁଳି ମାରିବ···

ଶିକ୍ଷକ ହିସାବରେ ମୁଁ ତା'କୁ କ୍ଷମା କରି ପାରିବି ନାହିଁ । ଅସମ୍ଭବ !

ମନେ ପଡ଼ିଯାଉଛି ଦି' ବର୍ଷ ତଳର କଥା । ଏଠିକା ହଓ୍ୱାଲା । ଆମର ଶ୍ୟାମାପୂଜା । ପେଣ୍ଡାଲ୍‌ରେ କେତେ ହସଖୁସି, ହୋ ହଲ୍ଲା ଚାଲିଛି । କିଛି ସମୟ ପରେ 'ତାସେର୍ ଦେଶ୍' ନାଟକ ଦେଖା ହେବ । ମୁହିଁ ଥିଲି ତା'ର ନିର୍ଦ୍ଦେଶକ । ଏଇ ସମୟରେ ହଠାତ୍ ଗୁଡ଼ାଏ ଚୋ' ଚା'···ହଓ୍ୱାଲାର ବାଣ ପରି ନୁହେଁ, ଆଉ କିସମର । ଭାଗ୍ୟ ଭଲ ମୋର ତତ୍‌କ୍ଷଣାତ୍ ମନେ ହେଲା ଯେ ଇଏ ଆଉ କିସମର । ଏବଂ ମୁଁ ଚଟ୍‌କିନି ଖସି ଆସିଲି ସେଠୁ, ଘର ଭିତରକୁ ।

ପାଞ୍ଚ ମିନିଟ୍ ଭିତରେ ସବୁ ସାଫ୍ । ରକ୍ତାକ୍ତ ପେଣ୍ଡାଲ୍ । ବାରଜଣ ମରିଗଲେ । ପୁଣି ତା' ଭିତରେ ମୋର ଜଣେ ଅନ୍ତରଙ୍ଗ ବନ୍ଧୁ । ଡାକ୍ତର ନିର୍ମଳ ବସାକ୍, ପରିବାର ବନ୍ଧୁ, ପିଲାଦିନର ବନ୍ଧୁ···

ତୁ ସେଇ ଦଳରେ ଥିଲୁ କି ନାହିଁ, ଆଉ କେଉଁଟା ଗୁଳି ଛାଡ଼ିଥିଲୁ କାହା ଉପରେ, ସେ କଥା ମୁଁ କହି ପାରିବି ନାହିଁ । କିନ୍ତୁ ତୁ ତାଙ୍କର ଭିତରୁ ଜଣେ ।···ଓଃ, ମନେ ପଡ଼ିଲା କ୍ଷଣି ଛାତି ଭିତରଟା କ'ଣ ହୋଇ ଯାଉଛି···

ମୋ ବନ୍ଧୁଙ୍କୁ ମାରିଛୁ ତୁ । ସେ ହିସାବରେ ମଧ୍ୟ ମୁଁ ତୋତେ କ୍ଷମା କରିପାରିବି ନାହିଁ, ବୁଝିଲୁ ଗୁର୍‌ଜିତ୍ !

ସେଇଠୁ ସେ ନଜକୁ ଉଠେଇଲେ । ଏବଂ କହିଲେ ମନେ ମନେ···

—ଇଚ୍ଛା କଲେ ମୁଁ ତୋତେ ଧରା ପକେଇ ଦେଇ ପାରିବ । କାହିଁକନା ମୋ ପାଖରେ ଅଲ୍ଟବଡ଼ୁତ ଖବର ପହୁଞ୍ଚୁଛ ଯେ କେଉଁମାନଙ୍କ ସାଙ୍ଗରେ ମିଶିଛୁ, ଆଉ ସେମାନଙ୍କୁ ମୁଁ ଜାଣେ । ଅନ୍ତତଃ ତାଙ୍କ ଭିତରୁ କେତେଜଣଙ୍କୁ···

—ତୋ କଲେଜ୍ ବେଲର କଣ୍ଠସ୍ୱର ଅଛୁ ଆମ କଲେଜ୍‌ର କ୍ୟାସେଟ୍‌ରେ, ପୁଣି କେତେ ଫଟୋ, କେତେ ହସ୍ତାକ୍ଷର । ମୁଁ ସେସବୁକୁ ପହଞ୍ଚେଇ ଦେଇ ପାରିବ ପୁଲିସ୍ ଗ୍ରୁହଣିରେ, ଏପରକି ଗଭର୍ଣ୍ଣରଙ୍କ ପାଖରେ···

—ଇଚ୍ଛା କଲେ ମୁଁ ଅବକା ଉଠିଯିବ ଏଇ ଟେବୁଲ୍‌ରୁ । ଆଉ ତୋର ଏଇ କପଟ ବୋକାଭଳ ଦଶୁଥିବା, ବିଅର୍ ପିଇ ମାତାଲ ବନଥିବା ବାପର କାନ୍ଧଟାକୁ ହଲେଇ ହଲେଇ ତୋର ସନ୍ଧାନ ନେଇ ପାରିବ, ଯାହା ପୁଲିସ୍ ପାରି ନ ଥିବେ ।

—ଇଚ୍ଛା କଲେ···

ତାପସ୍‌ଦାଙ୍କର ଇଚ୍ଛା ବଲବତୀ ହେବାକୁ ଲଗିଲ । କନ୍ତୁ ସେ ଗୁଣୀ ଏବଂ ବାରମ୍ବାର ନଜକୁ ଚେତାଇ ଦେବାରେ ହେଳା କଲେ ନାହିଁ ଯେ କୋଧ ସାଙ୍ଗରେ କଲ୍‌ଚର୍‌ର ସମ୍ପର୍କ ନାହିଁ । ବରଂ କୋଧ ହେଉଛ ତା'ର ଶତ୍ରୁ । ଏବଂ କଲ୍‌ଚର୍‌କୁ ବଞ୍ଚାଇବାକୁ ପଡ଼ିବ ଯେମିତ ହେଲେ । ବଶେଷତଃ ତାଙ୍କର ଏଇ ନୃତ୍ୟନାଟିକା, ଏଇ ବଶିଷ୍ଟ ଉଦ୍ୟମକୁ···

କନ୍ତୁ ମିଶ୍ରସାହେବଙ୍କ ଆଡ଼କୁ ଫେର ଚାହିଁଲ ବେଳକୁ ସେ ବ ଅନେଇଛନ୍ତି ଆଉ କୁଆଡ଼େ । ଏବଂ ତାଙ୍କ ଗୃହିଣୀରେ ଗୋଟାଏ ରସରସିଆ ଭାବ···

( ୩ )

ମିଶ୍ରସାହେବ ଦେଖିବାକୁ ପ୍ରଚଣ୍ଡ କଳା ଓ ଗେଧେକା ହୋଇପାରନ୍ତି, ତା'ବୋଲି ସେ ରସିକ ନ ହେବାର କୌଣସି କାରଣ ନାହିଁ । ଦେଖିମାର ତାଙ୍କ କେଶବନ୍ୟାସର ଠାଣି, ତା'ର ଊର୍ଦ୍ଧ୍ୱଗାମୀ ଚପଳତା । ତାଙ୍କ ବର୍ଣ୍ଣାଢ଼୍ୟ ବୁସ୍‌ସାର୍ଟ । ବଶେଷତଃ ତାଙ୍କ କଥାକୁହାର ଉଚ୍ଛଳ ପ୍ରବାହ, ଯାହା ସୂକ୍ଷ୍ମବାଚତ ଏବଂ ପ୍ରାଞ୍ଜଳ ଭାଷାରେ ଶବ୍ଦାୟିତ ହୁଏ । ହେଲେ ଏ ସବୁଥିରେ ଅଛୁ ଏକ ମସୃଣ ପରଚ୍ଛନ୍ନତା, ଯେଉଁଥିପାଇଁ ତାଙ୍କ ରସିକତା ସବଂଥା ସଞ୍ଜତ ଓ ଶାଳୀନ ମନେ ହୁଏ । ଧାରଣା ହୁଏ ଯେ ଇଏ ବୋଧହୁଏ ଉଚ୍ଚାଙ୍ଗ ସଭ୍ୟସମାଜର କାଇଦା—ଏଇ ଶବ୍ଦାୟିତ ରଙ୍ଗ, ଶ୍ଳେଷାତ୍ମକ ଢଙ୍ଗ । ଯଥା ସେ ଯେତେବେଳେ ତାଙ୍କ ପାଖକୁ ଆସିଥିବା ଏବଂ ଦୂରଦର୍ଶନର ଶୁଭଦୃଷ୍ଟି ଲୋଡ଼ୁଥିବା କୌଣସି ନାରୀ ପ୍ରତ୍ୟାଶୀଙ୍କୁ କୁହନ୍ତି—'ସତେ ଆଜ ଚମତ୍କାର ଦେଖାଯାଉଛନ୍ତି ଆପଣ !' 'ବସନ୍ତୁ, ମୁଁ ଆସୁଛ ଡ଼'ମିନଟ୍‌ରେ, ଦୟାକର ମୋତେ ଛାଡ଼ି କର ଯାଆନ୍ତୁ ନାହିଁ', 'ଦୂରଦର୍ଶନ କଥା ଭୁଲି ଯାଆନ୍ତୁ, ନକଟ ଦର୍ଶନ ହିଁ ମଣିଷର କାମ୍ୟ—ନା କଅଣ କହୁଛନ୍ତି ?' ଇତ୍ୟାଦ ସେତେବେଳେ କେହି ଦାବୀ କର ପାରିବ ନାହିଁ ଯେ ସେ ଅର୍ଦ୍ଧ-ସୁନ୍ଦରୀ ମହିଳା-

ବିଶେଷଙ୍କୁ ଛୁଗୁଲେଇଲେ ଅଥବା ଘାଉଡ଼େଇଲେ । ଏବଂ ଯଦି ସେ ଠିକ୍ ସେହିପ୍ରକାର ଭାଷା ପ୍ରୟୋଗ କରନ୍ତି କେଉଁ ସୁନ୍ଦରୀମାନଙ୍କ ପ୍ରତି, ସେତେବେଳେ ମଧ୍ୟ କେହି ଦମ୍ଭରେ କହି ପାରିବ ନାହିଁ ଯେ ତାଙ୍କର ଉଦ୍ଦେଶ୍ୟ ସୁବିଧାଜନକ ନୁହେଁ । ଯାହା ଓ ସେ ନାରୀସଙ୍ଗକୁ ଉଚିତରୁ ଅଧିକ ଭଲ ପାଆନ୍ତି ବୋଲି ଅନେକଙ୍କ ଧାରଣା ।

ତେଣୁ ସେ ଯେତେବେଳେ ସେଇ ବାଟ ଦେଇ ଯା'ଆସ କରୁଥିବା ମଗ୍ନନ୍‌ର ଜଣେ ଅତିଥିସତ୍କାରିଣୀ ତଥା ତରୁଣୀଙ୍କ ଆଡ଼କୁ ଚାହିଁ ବଦାନ୍ୟ ହସଟିଏ ଦେଲେ, ଏବଂ କହିଲେ—"ଏକ୍‌ସିଉଜ୍ ମି ମାଇ ଡ଼ିଅର୍, ମୁଁ ତୁମ ସମସ୍ୟାରୁ କିଛି ନେଇ ପାରେ କି ?", ଏବଂ ସେ ପାଖକୁ ଆସିଲାରୁ ତା'କୁ କ'ଣ କହିଲେ କଅଁଳ ସ୍ୱରରେ, ତା'କୁ ଦୂଷଣୀୟ ବୋଲି କହି ହେବ ନାହିଁ । ପ୍ରକୃତରେ ସେ ଗୋଟାଏ ମାମୁଲି କଥା କହିଥିବେ, କଣ୍ଟିନେଣ୍ଟାଲ ବ୍ରେକ୍‌ଫାଷ୍ଟ କିମ୍ବା ନ୍ୟାପ୍‌କିନ୍‌କୁ ନେଇ । ତେବେ ତା'କୁ ନ ଶୁଣି ପାରିଲେ ମଧ୍ୟ ସେଥିକୁ ଆପତ୍ତି କରିବାର କିଛି ନ ଥିଲା, ରାଗିବା ଦୂରର କଥା । ବିଶେଷତଃ ତରୁଣୀ ଯେତେବେଳେ ତା'ର ମାର୍ଜିତ ସ୍ମିତହାସର ପ୍ରତିଦାନ ଦେଲା ।

କିନ୍ତୁ ଜଣେ ରାଗିଲା । ଖାଲି ରାଗିଲା ନୁହେଁ, ଦାନ୍ତ ଚିପି 'ବିଚ୍' ବୋଲି କହିଲା ଯଦିଓ ତା ତରୁଣୀ ଉଦ୍ଦେଶ୍ୟରେ । ହେଲେ ତାର ଏଇ ଉଗ୍ର ତଥା ଅଶୋଭନୀୟ ପ୍ରତିକ୍ରିୟାକୁ ନିହାତି ଅସ୍ୱାଭାବିକ ବୋଲି କେମିତି କହିବା ? ପ୍ରଥମ କଥା ସେ ରାଜଧାନୀର ଗୋଟିଏ ଦିବ୍ୟ ତରୁଣ ନାଗରିକ । ଦ୍ୱିତୀୟରେ ଏବଂ ପ୍ରଧାନତଃ ସେ ରାଜଧାନୀର ଅନ୍ୟତମ ମହା-ବଡ଼ଲୋକ ବଂଶର ଦାୟାଦ । ତା'ର ଏକ୍‌ସ୍‌ପୋର୍ଟର୍ ବାପାଦାଦା ମାଧବବାବୁଙ୍କ ପରି ତଥାକଥିତ ବଡ଼ଲୋକଙ୍କୁ ଯଥାର୍ଥରେ ନାକ ଟେକି ପାରିବେ । ଟେକିଛନ୍ତି ମଧ୍ୟ, ଆବଶ୍ୟକ ଅନୁଯାୟୀ, ନ ହେଲେ ଧୂଆ ମୂଳା ଅଧୁଆ ମୂଳା ଭିତରେ କିଛି ପ୍ରଭେଦ ଅଛି ବୋଲି ଜଣା ପଡ଼ିବ ନାହିଁ । ତେଣୁ ଏଇ ଭାଗ୍ୟଶାଳୀ ପୁନ୍ଦମର୍ଣ୍ଣିର କଲା ଓ କଲ୍‌ଚର୍ ଭିନ୍ନ ଧାତୁରେ ଗଢ଼ା, ଯାହା ମିଶ୍ରସାହେବ କି ତାପସ୍‌ଦା ବୁଝି ପାରିବେ ନାହିଁ, ମାଧବବାବୁ ତ ସହଜେ । ସଞ୍ଜୀବ୍ ମେହେର ଓରଫ୍ ବଣ୍ଟି ନାମକ ଏଇ ନବଯୁବକ ସାନ ମଡେଲ୍‌ର ମାରୁତି ଗାଡ଼ିରେ ମହାବେଗର ଆବେଗ ଦେଖାଇ, ଟ୍ରାଫିକ୍ ଆଲୁଅ ତଥା ଗରିବ ପୁଲିସ୍‌ବାଲାଙ୍କୁ ଭ୍ରୂକ୍ଷେପ ନ କରି ମଗ୍ନନ୍‌ରେ ଆସି ପହଞ୍ଚିଛି ଏଇ ଅଳ୍ପସମୟ ହେଲା । ମଗ୍ନନ୍ ରେସ୍ତୋରାଁ କି ରନ୍ଧାକଡ଼ିର ଢାବା ଏକା କଥା ତା' ପାଇଁ । ଇଚ୍ଛା କଲେ ସେ (ମାନେ ତା'ବାପା), ଏଇ ସାରା ହୋଟେଲ୍‌ଟାକୁ କିଣି ପାରିବ; ଅନ୍ତତଃ ତାହାହିଁ ତା'ର ବିଶ୍ୱାସ । ଏଣେ ମନ ହେଲେ ସେ ଦୋସ୍ତମାନଙ୍କ ସାଙ୍ଗରେ ଢ଼ାବାରେ ବସି ଦାରୁ ପିଇ ପାରିବ, ମଉଜ କରି ପାରିବ । ଏଇ ହେଲା ତା'ର ନିଃସନ୍ଦିଗ୍ଧ ବଡ଼ପଣର ସାରକଥା । ଏବଂ ତହିଁରୁ ଉପୁଜିଥିବା ଆତ୍ମପ୍ରତ୍ୟୟ ।

ଆଜି ତା'ର ଏଠିକି ଆସିବାର ଉଦ୍ଦେଶ୍ୟ କେବଳ ଗୋଟିଏ । ସେ ଶୁଣିଛି ଯେ ଏଠି ଗୋଟିଏ 'ଡ଼ିପ୍' ଅଛି (ଏଠି ଡିପ୍‌ର ଅର୍ଥ ବ୍ୟଞ୍ଜନ ନୁହେଁ, ଲୋଭନୀୟା ନାରୀବସ୍ତୁ),

ସେ ହୋଟେଲ୍ ମ୍ୟାନେଜ୍‌ମେଣ୍ଟ୍‌ରୁ ଡିଗ୍ରୀ ନେଇ ଏଇଠି କାମ କରୁଛି, ଏବଂ ତା'ର ହସ ଭୁଆଡ଼େ ଛୁଟି ପଶ ଗଳିଯାଏ ଦେହରେ । ବର୍ଣ୍ଣି ଏଠିକି ଆସିଛି ତା'କୁ ଦେଖିବା ପାଇଁ, ଏବଂ ମନ ମାନିଲେ ତାକୁ ଡିନର୍ ପାଇଁ ଡାକିବା ପାଇଁ···ସେଶିକ ଅନ୍ୟ କଥା । ଆନନ୍ଦର ବିଷୟ ଯେ ସେ ଆସୁ ଆସୁ ଉତ୍ସ୍‌ଟିର୍ ସନ୍ଧାନ ପାଇଛି; ତା' ନାଆଁ ପିଙ୍କି, ଏବଂ ତା'ହସ ପ୍ରକୃତରେ ନଆସ । କିନ୍ତୁ ତା'କୁ ମୋଟେ ଭଲ ଲାଗିଲା ନାହିଁ ଝିଅଟାର କାରବାର । କାହିଁକିନା ତା'କୁ ଟିକିଏ ହେଲେ ମନେଇବାକୁ କି ଫୁସୁଲେଇବାକୁ ପଡ଼ିଲା ନାହିଁ । ଡିନର୍ ପାଇଁ ନିମନ୍ତ୍ରଣ କଲାକ୍ଷଣି ସେ ତତ୍‌କ୍ଷଣାତ୍ "ଓ ସିଓର୍-ହ୍ୱାଏ ନଟ୍" ବୋଲି କହିଲା । ଏମିତି କେବେ ହୁଏ ନାହିଁ । ତା'ମାନେ ସେ କ'ଣ ମୋତେ ଥଟ୍ଟା କରୁଛି ? ଠିକଣା ବେଳେ ମୋତେ ଗୋଟାଏ ଶିକ୍ଷା ଦେବ ବୋଲି ବସିଛି ? ସେମିତି କଥାକୁ ମୁଁ ତା' ମଜା ଚଖେଇ ଦେବ । ମୁଁ ଠିକଣା ବେଳେ ମାନେ ସେ ରେଡ଼ି ହେଲା ପୂର୍ବରୁ କହିବ "ଥ୍ୟାଙ୍କ୍ ୟୁ, ବାଏ !" ଏତିକରେ ଟୋକୀକୁ ଯଥେଷ୍ଟ ଅପମାନ ହେବ କି ଆଉ କଣ କହିଲେ ଭଲ ହେବ, ନା କଥାଟାକୁ ସହଜ ଅର୍ଥରେ ନେଇ ନେଲେ ଯାଏ, ଏହି ସମୟରେ ଭାବୁଥିଲା ବେଳେ ବର୍ଣ୍ଣି ଦେଖିବାକୁ ପାଇଲା ଉପଭୋଗ୍ୟ ଦୃଶ୍ୟ । ପିଙ୍କି ଓ ମିଶ୍ରସାହେବଙ୍କ ମଧ୍ୟରେ ଅନୁଷ୍ଠିତ ସେଇ ସସ୍ମିତ ଏବଂ କୋମଳ କଣ୍ଠର ଆଦାନ ପ୍ରଦାନ । ଏଥିରେ ସେ ରାଗିବ ନାହିଁ କେମିତି ?

( ୪ )

ଅଶୁଭ, ଅନିଶ୍ଚିତ, ହେଲେ ହାଇରାଣିଆ ଗୋଧିର ଏଇ ସନ୍ଧିରେ ନିଆଁ ଲାଗିଲା ।

ନିଆଁ ଲାଗିଲା ? କେଉଁଠି, ଏଇ ମଣ୍ଟନ୍‌ରେ ? ···ହଁ, ମଣ୍ଟନ୍‌ରେ ନୁହେଁ ତ ଆଉ କେଉଁଠି ? ଦେଖୁନା' ଲୋକମାନେ କେମିତି ଯେଝା ଯେଝା ଆସ୍ଥାନରୁ ଉଠି ଆସୁଛନ୍ତି ତରତର ହୋଇ, କ'ଣ ହେଲା କ'ଣ ହେଲା ବୋଲି ପଚାରୁଛନ୍ତି ? ସ୍ୱରରେ ଭୟ, ଭୟରୁ ଆତଙ୍କ ବେଶି ଦୂର ନୁହେଁ, ଗୁଞ୍ଜରଣରୁ ଚିତ୍କାର, ସେଇଠୁଁ ପ୍ରାଣବିକଳରେ ପଳେଇଯିବା କଥା···

ତେବେ ସେମିତି ହେଲା ନାହିଁ । ଯଥାଶୀଘ୍ର ଜଣା ପଡ଼ିଲା ଯେ ନିଆଁ ଏଠି ଲାଗି ନାହିଁ, ଲାଗିଛି ବଙ୍କିନ ଭବନରେ । ସେଇ ଖବରଟା କେମିତି କେଜାଣି ଖେଳେଇ ହୋଇଗଲା ଏଠି । ମିଛ ନିଆଁ, ମିଛଗୁଜବ···ଧ୍ୟାତ୍ ! ଆସ, ଫେରି ଆସ ଆପଣା ଆପଣା ଆସ୍ଥାନକୁ ।

ଆମ ଲୋକମାନେ ମଧ୍ୟ ଅଳ୍ପ ବହୁତ ଉଠି ଯାଇଥିଲେ, ଏବଂ ହସି ହସି ଫେରି ଆସିଲେ । କେବଳ ଜଣକ ଛଡ଼ା । ସେ ହେଉଛନ୍ତି ମହାପାତ୍ର ମାଧବ ଦାସ । ସେ ମୂଳରୁ

ତାଙ୍କ ଆସନ ଚ୍ୟୁତ ନ ଥିଲେ । ନିଶ୍ଚେଷ୍ଟତା କି ବିଜ୍ଞତା, କି ଏକ ଆରକ ସାଙ୍ଗରେ ମିଶିଗଲା ଭଗବାନଙ୍କ କୃପାରୁ, କହିହେବ ନାହିଁ ।

ମିଛନଆଁ ତାପସଦା ତଥା ବର୍ଣ୍ଣିଙ୍କୁ ତାଙ୍କ କ୍ରୋଧରୁ ବଞ୍ଚେଇ ଦେଲା, ଜଗ୍‌ମୋହନ୍‌ଜୀଙ୍କୁ ଫେରାଇ ଆଣିଲା ତାଙ୍କ ପ୍ରାର୍ଥନାର ଶାନ୍ତିକୁ, କି 'ଘଟଣା' ଏଟି ନଥିଲେ ମଧ୍ୟ ସେମାନେ ଯେଉଁ ଯେଉଁ ସିଧାବାଟକୁ ଫେରିଆସି ଥାଆନ୍ତେ, ସେ ବିଷୟରେ ଟୀପ୍‌ପଣୀ ଦେବା ଅନାବଶ୍ୟକ । ଖାଲି ଆମ ମାଧବବାବୁ ଯାହା କହିଗଲେ ମନେ ମନେ, ସେତିକ ଉଲ୍ଲେଖଯୋଗ୍ୟ । କହିଲେ —

ପୋଡ଼ିଯାଉ, ପୋଡ଼ି ଜଳି ଯାଉ ତୁମ ବିଜ୍ଞାନ ଭବନ, ସେଇଠୁଁ ନିର୍ମାଣ ଭବନ, କୃଷିଭବନ ··ତୁମ ରାଜଧାନୀର ଯେତେକ ଭବନ, ସଦନ, ଉଦ୍ୟାନ । ଇଏ ମୋ ରାଜଧାନୀ ନୁହେଁ, କଦାପି ନୁହେଁ । ଏଠି ଜଣେ ହେଲେ ମଣିଷ ନାହାନ୍ତି, ଗୋଟିକି ଗୋଟି ନଷ୍ଟ ହୋଇ ଗଲେଣି, ପଚି ସଢ଼ି ଗଲେଣି ।

ଭୁବନେଶ୍ୱର ବି' ଦିନେ ବଦଳିଯିବ, ମୁଁ ଜାଣିଛି । ତା'ବୋଲି ମୁଁ କ'ଣ ବଦଳି-ଯିବ ? ଟିକିଏ ବଡ଼ଲୋକ ହୋଇଯାଇଛି, ହୁଏତ ସେଇଥିପାଇଁ କ'ଣ ଟିକିଏ ହେରଫେର ଲାଞ୍ଚମିଛ କରିବାକୁ ପଡ଼ିଲା, ତା'ବୋଲି ମୁଁ କ'ଣ ସ୍ୱାଙ୍କ ପରି ହୋଇଛି ? ମୁଁ ମୋ ରାଜଧାନୀ ବାଛି ନେବି । ଦରକାର ହେଲେ ତିଆରି କରି ପାରିବି । ମୋତେ କ'ଣ ବୋଲି ପାଇଛ କି ?

# ନିଜସଞ୍ଚି

ଗୋପାଳବାବୁ ଅନେଇ ରହିଲେ ତା' ଆଡ଼କୁ । ଯେତିକି ଅନେଇଲେ ସେତିକି ଖୁସି ହେଲେ । ଏବଂ ତାଙ୍କର ମନେ ହେଲା ଯେ ଏ ଖୁସି କେବଳ ଭିନ୍ନ ନୁହେଁ ଅଭିନବ ନୁହେଁ···ବୋଧହୁଏ ଠିକ୍ ଏମିତିକା ଖୁସି ମୋର ଲୋଡ଼ା ଥିଲା । ଛୁଇ ଲେଉଟିଲା ବେଳକୁ ।

ମୁଁ ଯାହା ଆଡ଼କୁ ଅନେଇଛି ସେ ମୋ ପିଲା ନୁହେଁ । ମୋ ପିଲାର ପିଲା ନୁହେଁ । ମୋର କେହି ନୁହେଁ । କିନ୍ତୁ ଲଙ୍ଗଳାଙ୍ଗୋଟା ଗୁରୁଣ୍ଡି ଗୁରୁଣ୍ଡି ଆସୁଛି ମୋ ପାଖକୁ । ଆଉ ମୋତେ ଚାହିଁ କରି ହସୁଛି । ଏବଂ ତା' ହସରେ ହସ ମିଳାଇଲା ବେଳେ ମୋର ଯେଉଁ ଆନନ୍ଦ ଆସୁଛି, ସେଥିରେ ମମତ୍ୱର ଧାପେ ନାହିଁ—ମମତ୍ୱର ମମତା, ତହୁଁ ପୀଡ଼ା, ଉଦ୍‌ବେଗ, ସୁଖଦୁଃଖର ଯେତେକ ଗଣ୍ଡଗୋଳ । ପରୋକ୍ଷରେ ମଧ୍ୟ ନାହିଁ କେଉଁ ସ୍ୱାର୍ଥର ଜରିଆରେ, ଯାହା ମୋ ମନକୁ ଚହଲେଇ ଦେବ କି ତା'କୁ ଆଙ୍କୁଡ଼ି ଧରିବ ।

ସ୍ୱାର୍ଥ ନାହିଁ ! ହଁ, ସେଇ ହେଉଛି ଅସଲ କଥା । ସେଇଲାଗି ଏଇ ଉନ୍ମୁକ୍ତ ଆନନ୍ଦ । ଏଠିକାର ଖୋଲା ପବନ ପରି, ଯେଉଁଥିରେ ଧୂଳି ନାହିଁ କି ଧୂଆଁ ନାହିଁ । ଧୂଆଁ ଥିଲେ ଥିବ ହୁଏତ, କିନ୍ତୁ ତା'ର ରଙ୍ଗ କି ଗନ୍ଧ ପବନରେ ଲାଖି ଯାଉ ନାହିଁ, ଆପଣା ବସ୍ତୁତରେ ଭାସି ଭାସି ଯାଉଛି, ଏଇ ଆଗଚଲା ପାଣିର ହସ ପରି । ତେଣୁ ଅନୁଭବରୁ ଦାଗଟିଏ ଛୁଡ଼ାଯିବ ବୋଲି ଡରିବାର ନାହିଁ ।

ପଣ୍ଡିତଙ୍କର ଦେଖେଇ କହିପାରି ଯେ ନା ନା ସ୍ୱାର୍ଥ ଅଛି ଅଲବତ୍ତ, ମାନେ ତା'ର ଧାରଣା ତା'ର ସଞ୍ଜୀବନୀ ଚେତନା । କିନ୍ତୁ କଥା ହେଉଛି ଯେ ତା'ର ଦେହ ନାହିଁ କି ଚେହେରା ନାହିଁ । ତା'କୁ ଚିହ୍ନଟ କରି ହେବ ନାହିଁ । କେବଳ ଗୋଟାଏ ଭାବ, ଅଭାବର ଦୁଃଖକୁ ଘୁଞ୍ଚେଇଲା ପରି । ଯେମିତିକି ଏଇ ଶିଶୁର ହସ ହେଉଛି ସବୁ ଶିଶୁଙ୍କର ହସ, ମୋର ଜନ୍ମ ହୋଇ ବଞ୍ଚିବାର ସ୍ୱାର୍ଥ, ଜୀବନ—ଆନନ୍ଦର ସ୍ୱୀକୃତି । ଆଉ କିଛି ନୁହେଁ । ସେଥିରେ କେଉଁ ଅତୀତର ଅନୁଭୂତି ଜଳି ଉଠୁ ନାହିଁ । ବୁଗୁବୁଗୁ ବି ହେଉ ନାହିଁ । ହେଲେ ଅଛି ତା'ର ମନୋରମ ଆବେଗ···

ଯେମିତିକି ଏଇ ମୋର ଗାଆଁ । ମୋ ନିଜ ଗାଆଁ, କିନ୍ତୁ ତା'କୁ ନେଇ ମୋର ଯାହା କିଛି ମନେ ପଡ଼ୁଛି, ସେସବୁ ଖାଲି ଛୁଇଁ ଯାଉଛି ମୋତେ । ତା'କୁ ଅନୁଭବ କରି ହେଉଛି କିନ୍ତୁ ମୋଟେ ଧରି ହେଉ ନାହିଁ । ହେଲେ ଭଲ ଲାଗୁଛି । ଖୁବ୍ ଭଲ ଲାଗୁଛି । ବାଟଚାଲିର ଯେତେକ କ୍ଳାନ୍ତି ଉଭେଇ ଯାଉଛି । ଆଃ ! ଏଇ ଆଉଁସାଟିକି ଲୋଡ଼ା ଥିଲା ମୋର···

ମୁଁ ଏଇଠି ରହିବ । ମୋର ଗାଆଁରେ ରହିବ, ମରିବା ଯାଏଁ । ଏଇ ହେଉଛି ମୋ ଜନସନ୍ଧ୍ୟା !

ହେଲା ? ହେଲା ତ ଏଥର ? ଗୋପାଳବାବୁ ବାରମ୍ବାର ତାଙ୍କ ସଦ୍ୟପ୍ରସ୍ଫୁଟିତ ଆବିଷ୍କାର ଓ ତା'ର ଚମତ୍କାରକୁ ଦୋହରେଇଲେ । ତା'କୁ ସିଦ୍ଧାନ୍ତ ସ୍ୱରୂପ ଥୋଇଲେ ନିଜ ଆଗରେ । ସତେକି କଥାଟା ଛିଣ୍ଡିଯାଉ ଶେଷ ଥର ପାଇଁ । ଆଜିର ଏଇ ସନ୍ଧ୍ୟା-ବେଳେ ।

ଗୋପାଳବାବୁ ପଦ୍ମପୁର ନାମକ ଗୋଟିଏ ଗାଆଁରେ ଥିବା ଧାନ ଖେତର ଅନ୍ୟତମ ହିଡ଼ ଉପରେ ବସିଥିଲେ । ଧୀର ସମୀରଣ ତାଙ୍କ ଦେହମୁଣ୍ଡକୁ ଛୁଇଁ ଛୁଇଁ ଏବଂ ବେଳେବେଳେ ସେଥିରେ ପିଟି ହୋଇ ପଳେଇ ଯାଉଥାଏ । ଅଦିନିଆ ଅତିଥିଙ୍କ ଆଗରେ ଦେଖେଇ ହେଲା ପରି ।

ହିଡ଼ର ଗୋଟିଏ ପାଖ ଖେତରେ ହଳ ବାଜି ନାହିଁ । ଗୋପାଳବାବୁ ସେଇ ଆଡ଼କୁ ମୁହଁ କରିଥିଲେ । ଏବଂ ତା'ରି ଉପରେ ଦୁଖେଇର ପିଲା ଗୁରୁଣ୍ଡୁଥିଲା । ଦୁଖେଇ ତା' ପଛରେ ଥାଇ ନିସରପସର ହେଉଥିଲା, କାଠିକୁଟା ଆଦି ଗୋଟଉଥିଲା । ସେ ବି ହସିଲା ।

ଦୁଖେଇର ହସ ବି' ଭଲ ଲାଗିଲା ଗୋପାଳବାବୁଙ୍କୁ । ସେହି ପ୍ରକାର । ସତେକି ପୃଥିବୀର ଯେତେକ ମୂଲିଆଣୀ ଯୁବତୀ ଏମିତି ହସନ୍ତି । ପୃଥିବୀର ଅନ୍ୟତମ ଅବଦାନ । ଏବଂ, ତା'କୁ ପରସ୍ତେଇ ଦେଉଛି ଏଇ ତାଙ୍କ ଗାଆଁ । ପଦ୍ମପୁର ।

ତାଙ୍କ ଆଖିକୁ ଦିଶିଗଲା ଆଉ ଗୋଟିଏ ଯୁବତୀର ହସ । ଜଣେ କା ନରି ଝିଅଯାର ଖିଲ୍ ଖିଲ୍ ହସ । ନରି କୁଆଡ଼େ ତାଙ୍କ ପୁରୁଷ ହେବ, ତା'ରି ସ୍ତ୍ରୀ । ଆଜିକା ବୈଠକରେ ସେ ବି' ଥିଲା ଯଦିଓ ତା'ର ସେଠି ରହିବାର କୌଣସି କାରଣ ନ ଥିଲା, ଆଉ କଥା-କଥାକେ ଦାନ୍ତ ଦେଖଉଥିଲା । ସେଇଠୁଁ କାନିରେ ମୁହଁ ପୋଛୁଥିଲା, ଅଭଦ୍ରାମିକୁ ପୋଛି ଦେଲା ପରି । ଗୋପାଳବାବୁଙ୍କର ମନେ ହେଲା ଯେ ତା'କୁ ବି' ପଦ୍ମପୁର ଆଣି ଦେଇଛି ତାଙ୍କ ପାଇଁ । ଏଭଳି ଏକ ବିଶୁଦ୍ଧ ଏବଂ ଅଦମ୍ୟ ଆମୋଦର ପ୍ରତିମୂର୍ତ୍ତି । ସେଥିରେ କେଉଁ ସ୍ମୃତିବିଶେଷର ତାଡ଼ନା ନାହିଁ, ଯାହା ତାଙ୍କୁ ହଇରାଣ କରିବ । ତାଙ୍କ ନିରୋଳା ଉପଭୋଗରେ ଧୂଳି ପକେଇବ ।

ଭାବିଲେ ଯେ ସେମିତି ଆସିବ ଆଉ କେତେ ସ୍ମୃତିର ମାୟା । ଅଙ୍ଗେ ନିଭେଇଲା ଅନୁଭୂତିରୁ କାହିଁ କେତେ ଦୂରରେ । ହୁଏତ ପ୍ରେମର । ଯୌନ ପ୍ରେମ ହେଉ କି ବନ୍ଧୁ ପ୍ରେମ, କି ଆଉ କେଉଁ ପ୍ରେମ । ତଥା ଦୟାର, କରୁଣାର, ସହାନୁଭୂତିର । ଏବଂ ସେସବୁ ଖାପିଯିବ ତାଙ୍କ ଚେତନାରେ । ଏଇଠି ରହିଲେ । ତାଙ୍କ ସନ୍ତୁଷ୍ଟିର ବିଭିନ୍ନ ଉପାଦାନ ହୋଇ ।

ଆହ୍ବା, ଆରପାଖର, ମାନେ ବସ୍ବଗର ଆବେଗ ବ' ଆସିବ—ଆସିବ ନାହିଁ କେମିତ ? ଯଥା ଘୃଣାର, କ୍ରୋଧର, ହିଂସାର ।···କନ୍ତୁ ସେଥିରେ ବ' ମୋ ସଞ୍ଜସୁଖ ଊଣା ହେବ ନାହିଁ । ବରଂ ଟିକଏ ପିତାକଷାଉ ସ୍ବାଦ୍ଦ ଆସିଲେ ଭଲ, ପାଟି ବାଙ୍ଗ ହୋଇଯିବ ନାହିଁ ମିଠାରେ । କାରଣ ସେଥିରେ ବ' ସ୍ମୃତ ନ ଥିବ, ଥିବ ଖାଲ୍ ତା'ର ହାଲୁକା ଭାବ ଟିକେ । ତୀର୍ଥଯାତ୍ରୀଙ୍କୁ ବେଢରେ ଠୁକେଇଲା ପର । ସେଇଠୁ ମୁଁ ଟିକଏ ଚଡ଼ିଯାଇ ପାରେ । ଅବା ହସିପାରେ, ଆହ୍ବା ଚୁ'ଚୁ କ ଛୁଃ ଛୁଃ କହ୍ପାରେ, ମୋ ଇଚ୍ଛା । କନ୍ତୁ କେବଳ ଏତକ ଜଣାଇବା ପାଇଁ ଯେ ମୁଁ ବ' ମଣିଷ ସମାଜର ଜଣେ । ପ୍ରକୃତରେ କଛି ହେଲେ ନ ଥିବ ସେଥିରେ, ଯାହା ମୋ ମନକୁ ବାନ୍ଧ ରଖିବ, ତା'କୁ ଚହଲେଇ ଦେବ ।

ଗୋପାଳବାବୁ ପୁଣି ସ୍ଥିର କଲେ ଯେ ଖାଲ୍ ଏଇଠି ତା' ସମ୍ଭବ ।···ଏଇ ମୋର ନଜ ଗାଆଁରେ । ଯେଉଁଠି ସ୍ମୃତଗୁଡ଼ାକ କେବେବା ପିଲାଦନର, ବସ୍ମୃତର, ସ୍ବପ୍ନର । ତଥା କଳ୍ପନାର, ତେଣୁ ଇଚ୍ଛା କଲେ ମୁଁ ତା'ର ମଙ୍ଗ ମୋଡ଼ି ଦେଇ ପାରବ, ମୋ ସଞ୍ଜସୁଖକୁ ବଢ଼େଇବା ପାଇଁ ।

ଏବଂ ଏମିତ ମିଶିଯିବ ଧୀରେ ଧୀରେ···ମହ୍ବା ବସ୍ମୃତରେ···ଅନ୍ଧାରରେ··

"ବାବୁ କାଲ୍ ହଳ ବୁଲବ ନା ଏଠି ?"

"ନା !!"

ଦୁଖେଇର ପ୍ରଶ୍ନ କ'ଣ ଏତେ ସାଙ୍ଘାତକ ଥିଲା ଯେ ଗୋପାଳବାବୁ ଚମକ ପଡ଼ ଏତେ ବଡ଼ 'ନା'ଟାଏ କହ୍ଲେ ? ନା ଗୁରୁଣ୍ଡି ଗୁରୁଣ୍ଡି ଆସୁଥିବା ପିଲା ଏତେ ପାଖ ହୋଇ ଆସିଲଣି ଯେ ସୃହୁଁ ସୃହୁଁ ତା' ଦେହକୁ ଲଦ ଦେବ ତାଙ୍କ ଉପରେ, ଏଇ ଆଶଙ୍କାରେ ସେ ଚହିଁକ ଉଠିଲେ ? ହୁଏତ ଅଧା-ଅଜାଣତରେ ?

ମନେ ହେଉଛୁ ଉଭୟ ଆଶଙ୍କା ଏକା ପର, ତେଣୁ ଏକାଠି ହୋଇଗଲା । ଭୂମିର କର୍ଷଣ, ଦେହର ଆକ୍ରମଣ । ଯଦଓ ଭୂମିଖଣ୍ଡକ ନଜର, ଏବଂ ଦେହଟା ସାମାନ୍ୟ ଶିଶୁର । ସତେକ ସେତକରେ ବଡ଼ସ୍ବ ଗୋପାଳବାବୁ ଅନ୍ତରଙ୍ଗତା କ ଗମ୍ଭୀରତାର ଭୂତ ଦେଖିଲେ । ଏବଂ ଡରଗଲେ । କାଲେ ତାଙ୍କ ନଜସଞ୍ଜ ମାଟ୍ଟି ହୋଇଯିବ !

ଧର ନଅ ଯେ ଦେହ ମାନେ ବଶ୍ବାସଘାତକ, ତାଙ୍କ କୁଳୁମୁକୁଆ କଅଁଳିଆ ସ୍ମୃତର ବସ୍ମୃତକୁ ବହ୍ଲ କରଦେବ, ତେଣୁ ସେ ଶିଶୁ ଦେହରୁ ବ' ଘୁଞ୍ଚଗଲେ । କନ୍ତୁ ଏଇ ଭୂମିଖଣ୍ଡକ ? ନୁଖୁରା ହୋଇ ପଡ଼ ରହ୍ଥିବା ଏଇ ପାଞ୍ଚଗୁଣ୍ଠ ଜମି, ଯାହା ନଜର ବୋଲ୍ ସାବ୍ୟସ୍ତ ହୋଇଗଲା ଏବଂ ଖାସ୍ ସେଇଥିପାଇଁ ସେ ଆସିଥିଲେ ତାଙ୍କ ଗାଆଁକୁ, ସେଥିରେ ହଳ ବୁଲବ ନାହିଁ କାହିଁକ ? ପ୍ରଶ୍ନଟାକୁ ଆହୁର ମୁନଆଁ କରହେବ ଏମିତ—

ପାଖ ଜମି, କହ୍ବାକୁ ଗଲେ ଗାଆଁର ଆଉ ଯେତେକ ଜମି ଚଷା ହୋଇ-ଗଲଣି । ବୁଣାବୁଣି କାମ ବ' ଆରମ୍ଭ ହୋଇଗଲଣି । ଖାଲ୍ ତମ ଜମି କ'ଣ ପଡ଼ିଆ

ପଡ଼ିଥିବ ? ତା'ଛଡ଼ା ଯେଉଁ ଜମି ତୁମ ଆସିବାର କାରଣ, ତୁମ ନଜସଞ୍ଜ ଖୋବନାକୁ ଡାକ ଆଣିଲା, ପୁଣି ସେଇ ହେବ ତୁମ ସମ୍ଭାବିତ ରହଣିର ପଥଆଗ୍ର, ସେଥିରେ ହଳ ବୁଲେଇବାକୁ ଡରୁଛ କାହିଁକି ? କଥା କଅଣ ?

ଗୋପାଳବାବୁ ତା'ର ଉତ୍ତର ଦେଇପାରିବେ ନାହିଁ । କହିବେ, ହଁ ମୋ ଜମି ଚାଷ ହେବ, ନ ହେଲେ ମୁଁ ଏଠିକି ଆସିଥାଆନ୍ତି କାହିଁକି ? ତେବେ ସବୁର୍ କର, ସବୁର୍ କର, ଏତେ ଶୀଘ୍ର ନୁହେଁ । ସତେକି ଇଏ କର୍ଷଣ ନୁହେଁ, ଅନୂଢ଼ା କୁମାରୀର ଧର୍ଷଣ, ସେଇଠୁ, ତା'କୁ ଅଗତ୍ୟା ବାହା ହେବାକୁ ପଡ଼ିବ !

···ଏତେ ଡର ବାହା ହେବାକୁ ! କିଓ, ତମେ ପରା କହୁଥିଲ ଯେ ତମେ ଏଇ ଗାଆଁରେ ରହିବ ମରିବା ଯାଏ, କାହିଁକିନା ଇଏ ତୁମ ନଜ ସଞ୍ଜ ? ପୁଣି କ'ଣ ହେଲା ତୁମର ?

ନା, ନା, କିଛି ହୋଇ ନାହିଁ । ଗୋପାଳବାବୁ ଦୁଃଖ କଲେ ଯେ ତାଙ୍କ ସିଦ୍ଧାନ୍ତକୁ ସ୍ଥୂଳ ଅର୍ଥରେ ବୁଝେଇବାକୁ ଗଲେ ଯେତେକ ଅସୁବିଧା । ନଜକୁ କହିଲେ ଯେ ବର୍ଷର ତିନିଶହ ପଞ୍ଚଷଠି ଦିନ, ଏବଂ ବର୍ଷ ପରେ ବର୍ଷ, ସେ ଏଇଠି ରହିବେ ମରିବା ଯାଏଁ, ଠିକ୍ ତା ନୁହେଁ । କିନ୍ତୁ କଥା ହେଉଛି ଯେ ପୃଥିବୀ ଯାକର, ମାନେ ଦେଶବିଦେଶର ତଳନେ ଉପରେ ମହାନଗରୀ, ବଡ଼ ସହର, ଶ୍ରେଷ୍ଠ ସହରର ଅନୁଭୂତିକୁ ସାର ଦେଲା ପରେ ସେ ବାଛି ନେଇଛନ୍ତି ଏଇ ଥାନଟିକୁ । କାରଣ ଆଉ କେଉଁଠି ବୋଧହୁଏ ସେ ପୁରାପୁରି ଦୂରେଇ ଯାଇ ପାରିବେ ନାହିଁ । ଅତୀତରୁ । ଯେତେ ଯାହା କଲେ ବି' ମନେ ପଡ଼ିବ । ସେଠିକାର କେଉଁ ପଡ଼ିଆ କି ପଲଙ୍କ, ରୁମ୍ କି ରେସ୍ତୋରାଁ ତାଙ୍କୁ ଓଟାରି ନେବ ସେଥିରେ ଲାଗି ରହିଥିବା ଯେତେକ ଗଣ୍ଡଗୋଳିଆ ସ୍ମୃତି ଆଡ଼କୁ । ··· ଅତଏବ ଏଇ ମୋର ଗାଆଁ । ନଜସଞ୍ଜର ସୁନାକଳଶକୁ ସ୍ବା'ଶ ମୁଣ୍ଡରେ ଢ଼ାଳିବ । ତା'ର ଅର୍ଥ ଏଠିକି ଆସିବ, ପୁଣି ଆସିବ, ଆହୁରି ଆସିବ, ଆହୁରି ଆହୁରି ଆସିବ । ଆପଣା ଶାନ୍ତି ପାଇଁ । ଇଏ ହେଲା ମୋର ଆଧ୍ୟାତ୍ମିକ ନୀଡ଼ । ସ୍ବା'ଶ ବଳ ପାଇ ମୁଁ ସ୍ବଚ୍ଛନ୍ଦରେ ଲଭି ଲଭି ଯିବ, ମିଶି ଯାଇ ପାରିବ···ଅନ୍ଧାରରେ···

କ'ଣ ଏଥର ବୁଝି ହେଉଛି କି ନାହିଁ ? ଅବୋଧ ଗ୍ରାହକୁ ତଥାପି ବୁଝେଇ ନ ପାରିଲା ପରି ଗୋପାଳବାବୁ ସ୍ଥାନତ୍ୟାଗ କଲେ । ଠିଆ ହୋଇପଡ଼ି ଉଠିଗଲେ ଜମି ସେ ପାଖର ନାଳବନ୍ଧ ଉପରକୁ । ତାଙ୍କ ମନ ହେଲା ସେ ସେଇ ବାଟ ଦେଇ ଚାଲି ଚାଲି ଯିବେ । ଗାଆଁର କଡ଼େ କଡ଼େ । ବୁଲି ଆସିବେ ତା' ଘର ପାଖ ଦେଇ, ଯାହା ହେଲା ଆଗରୁ । ନହେଲେ ଜମିଟାକୁ ନେଇ ଏମିତିକା ଅଭଦ୍ର ପ୍ରଶ୍ନ ଶୁଣିବାକୁ ପଡ଼ିବ ।

ସେ ଦୁଃଖେଇକୁ ଝିଙ୍ଗାସିଲେ ମନେ ମନେ ।·· ହଁ, ହଳ ବୁଲିବ ଏଇ ଖେତରେ, ଅବଶ୍ୟ ବୁଲିବ । କିନ୍ତୁ ତୋ ମୁଣ୍ଡ କାହିଁକି ବଥଉଛି ସେଥିରେ ? ହେଲା ଏବେ ତୋ ଗିରସ୍ତ ପୁରସ୍ତମ ହଉଛି ମୋ ହଳିଆ । ସେଇ ମୋ ହଳିଆ ବୋଲି ମୋତେ ବାରମ୍ବାର

ଚହ୍ଲେଇ ହଅ ହୋଇଥିଲା, ଆଉ ତା'ର ସାକ୍ଷୀପ୍ରମାଣ ମୋତେ ଖୁବ୍ ସାହାଯ୍ୟ କଲା, ନହେଲେ ଏ ଜମିଖଣ୍ଡକ ହାତଛଡ଼ା ହୋଇଯାଇଥାଆନ୍ତା । ତା' ବୋଲି ତୁ ଏତେ ହମହମ ହଉଛୁ କାହିଁକି ସେଥିରେ ହଳ ବୁଲିବ ବୋଲି ?

କ'ଣ ଭଲ ଲାଗେ ଭଲ ମାଟିକୁ ଖୋଳି ପକେଇଲେ ? ତା'କୁ ଖୋଳିବ, ଉଠେଇବ ପକେଇବ, ପୁଣି ଖୋଳିବ, ସତେକି ତା' ଭିତରକୁ ନ ଯିବା ଯାଏଁ ରକ୍ଷା ନାହିଁ । ସତେକି ଅନୁଭବକୁ ଖୋଳିବା ଦରକାର, ସେଥିରୁ ଲୁହ ଲହୁ, ରକ୍ତ କି ସ୍ୱାର୍ଥ ନିଗିଡ଼େଇବା ଦରକାର, ନ ହେଲେ ସେ ତୁମ ନିଜର ହୋଇ ରହିବ ନାହିଁ ! ଏଇଠି ଭୁଲ୍, ମହାଭୁଲ୍ । ସାରା ଜୀବନର ଭୁଲ୍ ।

ଯାହା ହେଉ, ଭାଲୁ ଭାଲୁ ତାଙ୍କ ମନଟା ପୁଣି ହାଲୁକା ହୋଇ ଆସିଲା, ନିଜ-ସଞ୍ଜର ପ୍ରତିଶ୍ରୁତିକୁ ଫେର ପାଇଲା ପରି । ଏବଂ ସେ ଜମିକୁ ଫେର ପାଇବାର କାହାଣୀକୁ ହେଜିଲେ, ଆମୋଦର ସହ ।

···ମୁଁ କ'ଣ ସତେ ସେ ସବୁରେ ପକ୍ଷ ନେଇଥିଲି, ବାଦୀ କି ପ୍ରତିବାଦୀ ହୋଇ ? ଭାହୁଥିଲି କେମିତି ଜମିଟା ମୋର ବୋଲି ଫଇସଲା ହୋଇଯିବ ? ନା ଗୋଟାଏ ଆଶ୍ଚର୍ଯ୍ୟ ନାଟକର ଦୃଶ୍ୟ ଦେଖୁଥିଲି ? ଭାଗ୍ୟକୁ ମୁଁ ଥାଇ ଥାଇ ହସି ଉଠୁ ନ ଥିଲି ନରଶ୍ୱରଯା ପରି । ନହେଲେ ସେମାନେ ବୋଧହୁଏ ଭାବଥାଆନ୍ତେ ମୁଁ ଫେର୍‌କାମି କରିବା ପାଇଁ ଆସିଛି ଏଠିକି । ମୋର ଆସ୍ଥା ନାହିଁ ଜମି ପ୍ରତି, ଗାଆଁ ପ୍ରତି, କି ଗାଆଁର ଲୋକମାନଙ୍କ ପ୍ରତି । ଯେ ମୋର ଉଦ୍ଦେଶ୍ୟ କଅଣ ବୋଲି ଜଣା ପଡ଼ୁ ନାହିଁ ସିନା, ହେଲେ ନିଶ୍ଚୟ ମନ୍ଦ ହୋଇଥିବ ।

ଗୋପାଲବାବୁ କଥାଟାକୁ ମୂଳରୁ ହେଜିବାକୁ ଭାହିଲେ, ତା'ର ସମ୍ୟକ୍ ଉପଭୋଗ ପାଇଁ । ଗାଆଁକୁ ଆସିବାର ପୂର୍ବକଥା···

ଶଙ୍ଖୁଆଦା' (କେଉଁ ହିସାବରେ ସେ ମୋ ଦାଦା ମୁଁ ଜାଣେ ନାହିଁ, ପ୍ରକୃତରେ ସେ ଆମ ନୂଆ ଗୁମାସ୍ତା ) ହଠାତ୍ ଦିନେ ଆସି ପହଞ୍ଚିଲା ମୋ ପାଖରେ । କହିଲା, ଗୋପବାବୁ, ଗାଆଁକୁ ଚାଲ । ମୁଣ୍ଡ ହଲେଇ, ହାତ ଛୁଆଡ଼ି, ଏବଂ ଗପ ପକେଇ କହିଲା ଯେ ଗାଆଁରେ ବଢ଼ିଆ ଜମି ଖଣ୍ଡେ ଅଛି ଯାହା ପ୍ରକୃତରେ ଆମର । କହିଲା ବନ୍ଦୋବସ୍ତ ରେକର୍ଡ଼ରେ ବି' ବଟକୃଷ୍ଣ ଦାସ ଓଗେର ବୋଲି ଲେଖା ହୋଇଛି, ଏବଂ 'ଓଗେର'ର ମାନେ ନୁହେଁ ଯେ ଆମକୁ ଡଡ଼ି ଦେଇ ସାନଅଂଶର ଲୋକେ ତା'କୁ ଭୋଗ କରିବେ । ବଟଭାଇ ବୁଢ଼ା ହୋଇ ଗଲାରୁ ନିଜେ କିଛି ଦେଖାଶୁଣା କରି ପାରିଲେ ନାହିଁ, ତମେ ବି' କୁଆଡ଼େ ବୁଲିଲ ଏଣେ ତେଣେ, ତା ବୋଲି କ'ଣ ସେମାନେ ଜମିଟାକୁ ମାଡ଼ି ବସିବେ ? କହିଲା, ମିଛୁଆନା' (ଆମ ପୁରୁଣା ଗୁମାସ୍ତା)—କ'ଣ କହିବି ସେକଥା,—ଭଗବାନ୍ ତା'କୁ ସେପୁରକୁ ଉଠେଇ ନେଇ ବଞ୍ଚେଇ ଦେଲେ ଆମକୁ, ନହେଲେ ସେ ଆଉ କେତେ କ'ଣ ଅନିଷ୍ଟ କରିଥାଆନ୍ତା ଆମର !

ମୋଟାମୋଟି ତା'ର ବକ୍ତବ୍ୟ ହେଲା ଏଇ ଯେ ଆମ ଆଦିନିବାସ ପଦ୍ମପୁର ଗାଆଁରେ ଗୋଟାଏ ମୂଲ୍ୟବାନ୍ ସମ୍ପତ୍ତି ହାତଛଡ଼ା ହୋଇଯାଉଛି । ସାନଅଂଶର, ଅର୍ଥାତ୍ ମୋର କେଉଁ ଝୁମାଦାଦାଙ୍କ ନାତି ଯୋଗିଆ ପାଞ୍ଚଗୁଣ୍ଠ ବିଶିଷ୍ଟ ଗୋଟାଏ ନାଳକୂଳିଆ ଜମି ଚାଷ କରି ଆସୁଛି ଆଜକୁ ଚାରି ପାଞ୍ଚ ବର୍ଷ ହେଲା । ଯଦିଓ ଜମିଟା ଆମର । ମାନେ ବଟକୃଷ୍ଣ ଦାସଙ୍କର ମୃତ୍ୟୁ ପରେ ତାଙ୍କ ଏକମାତ୍ର ଜୀବିତ ପୁତ୍ରସନ୍ତାନ ଗୋପାଳକୃଷ୍ଣଙ୍କର । ଏବଂ ବଡ଼ ଅଂଶର ଗଜବଡ଼ବାପାଙ୍କ ପୁଅ ନାଟୁଭାଇର, ଯେ ସପରିବାର ଆମେରିକାରେ ଅଛି । ତେଣୁ ଏ ବର୍ଷ ଶଙ୍ଖୁଆଦା' ଯୋଗିଆକୁ ସେଥିରେ ହଳ ବୁଲେଇବାକୁ ଦେଇ ନାହିଁ । ଅପରନ୍ତୁ ଧମକେଇଛି । କିନ୍ତୁ ତା'ର ସବିନୟ ନିବେଦନ—ବାବୁ, ତମେ ନ ଆସିଲେ ହବ ନାହିଁ, ବୁଝିଲ ? ନହେଲେ କଥାଟା ସଙ୍ଗୀନ ହୋଇଯିବ !···

ହାୟ, ତଥାପି ଗୋପାଳବାବୁ ଖାଲି 'ଆଚ୍ଛା ?' ଅଚ୍ଛା ?' ବୋଲି କହି ଚାଲିଲେ, ଗାଆଁକୁ ଯିବାର ନାଆଁ ଧରିଲେ ନାହିଁ । ଶଙ୍ଖୁଆଦା' ନିସ୍ୱଣ ହେଲା ।

ହେଲେ କ୍ରମଶଃ ତାଙ୍କୁ ବୁଝିବାକୁ ପଡ଼ିଲା ଯେ 'କିଛି ନକରି ବସିଯିବାର ମୂର୍ଖତାକୁ ଉଦାରତା ବୋଲି କୁହାଯିବ ନାହିଁ । ତେଣୁ ଗାଆଁକୁ ଯିବାକୁ ହେବ । ଯେଉଁ ଗାଆଁ ମାଟି ସେ ମାଡ଼ି ନାହାନ୍ତି, ଆଜକୁ ପଇଁଚାଳିଶ ବର୍ଷ ହେଲା, କି ତାଠୁଁ ବେଶୀ । ଖାଲି ବାପାଙ୍କୁ ସେଇଠି ପୋଡ଼ି ଦେଇ ଆସିବା ଛଡ଼ା···

ବାପାଙ୍କ ମୃତ୍ୟୁର ପରେ ବି ଗାଆଁକୁ ଯିବା ଉଚିତ ଥିଲା । ତା'ହେଲେ କଥାଟା ଏତେ ଦୂରକୁ ଯାଇ ନ ଥାଆନ୍ତା । ଯାହାହେଉ ଏଭଳି ଏକ ସମସ୍ୟା ଦେଖା ଦେଲା ପରେ ମଧ୍ୟ ହାତ ଗୋଡ଼ ଟେକି ବସି ରହିବାର ଢଙ୍ଗକୁ ଖାଲି ମୂର୍ଖତା ବୋଲି କୁହାଯିବ ନାହିଁ···ମୂର୍ଖତାରୁ ବଳି, ଅନାସ୍ଥାରୁ ବଳି···ଗୋଟାଏ ଘୋର ବିକୃତି !

ପ୍ରଥମ ଓ ଶେଷ କଥା ହେଲା ଏଇ ଯେ ଶଙ୍ଖୁଆଦା' ଫିଡ଼ିକବ । ମିଛୁଆନା' ପରେ ଶଙ୍ଖୁଆଦା' ଚାଲିଗଲେ ଆଉ କିଏ ରହିବ ସେଠି, ଆମ ଲୋକ ହୋଇ ? ସେଇ ଗୋଟିଏ ବୋଲି ଯୋଗସୂତ୍ରକୁ ଏମିତି ଜାଣିଶୁଣି ଛିଣ୍ଡେଇ ଦେବାର ଅର୍ଥ ଗାଆଁକୁ ଭୁଲିଯିବା···

ଗୋପାଳବାବୁ, ତମର କ'ଣ ଗାଆଁ ଉପରୁ ମାୟାମମତା ତୁଟିଗଲାଣି ଏକା-ବେଳେକେ ?

ଆଉ ସହି ହେଲା ନାହିଁ ଏହିପ୍ରକାର ଭର୍ତ୍ସନା, ପତ୍ନୀ କିରଣଠାରୁ ଆରମ୍ଭ କରି ପାଖପଡ଼ିଶା ଓ ସହରିଆ ବନ୍ଧୁବାନ୍ଧବଙ୍କ ମୁହଁରୁ । ତଥା ଆପଣା 'କର୍ତ୍ତବ୍ୟପରାୟଣ' ବିବେକଠାରୁ । ସ୍ଥିର ହେଲା ଯେ ସେ ମାତ୍ର ଗୋଟିଏ ଦିନ ପାଇଁ ଯିବେ, ଓ ତା'ପର ଦିନ ଫେରି ଆସିବେ ।

ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁଯାୟୀ ସେ ଆଜି ସକାଳେ ପହଞ୍ଚିଥିଲେ ପଦ୍ମପୁରରେ । ପ୍ରଥମେ ଗଲେ ଜନୈକ ବାଜାଭାଇର ଘରକୁ । ସେଠି ଜଣେ ଭାଗୁ ବଡ଼ବାପା ତାଙ୍କୁ କୁଣ୍ଢେଇ ପକେଇଲେ, ଚିବୁକ ଟେକି ଅନେଇଲେ ତାଙ୍କ ମୁହଁକୁ, ଏବଂ କହିଗଲେ

କେତେ କଣ ପୁରୁଣା କଥା, ଯାହାର ଅଗମୂଳ ଧରି ହେଲା ନାହିଁ । ପୁଣି ସେ କାନ୍ଦ କାନ୍ଦ ହେଲେ । ଜନୈକା ଖାଉଜ ଲେଖା ପଦ୍ମବୋଉ, ହେଲେ ବୟସରେ ସାନ ହେବେ, ତଥାକଥିତ ରସିକତା କଲେ, ଯଥା— ଆହା, କେମିତି କରଣକୁ ଛାଡ଼ି କରି ରହିବ ଗୋଟାଏ ରାତି, ଯାହାକୁ ଶୁଣି ସାନମାନେ ମୁହଁ ବୁଲେଇ ଦେଲେ । ମାନେ ବୁଢ଼ା ଦିଅର ଖାଉଜଙ୍କ ଏଇ ରଙ୍ଗରସକୁ ଧନ୍ୟ କହିବ !

ସଭା ବସିଲା ପୁତୁରା ସ୍ଥାନୀୟ ରାଜୁ ଘରେ । ରାଜୁ କୁଆଡ଼େ ସେପକ୍ଷର ଯେତିକି ନିକଟ, ଏପକ୍ଷର ମଧ୍ୟ ସେତିକି । କାରଣ ସେ ହେଉଛି ମଝିଆଁ ଅଂଶର ପିଲା । ଏବଂ ସେଠି ଥିଲେ ଶରମଉସା (ଯୋଗିଆର ଅଜା), ନାରଣ ମଉସା (ବାଳିଆଇର ମଉସା), ତଥା କୁଟୁମ୍ବର ଏକାଧିକ ଦାଦା, ବଡ଼ବାପା, ଦାଦା ପୁଅ ଓ ବଡ଼ବାପା ପୁଅ ଭାଇ, ଏବଂ ଯୋଗିଆ ପିଢ଼ିର ଲୋକେ ଯାହାଙ୍କୁ ପୁତୁରା କୁହାଯିବ । ଯୋଗିଆର ବାପା ସ୍ୱର୍ଗବାସୀ, ତେଣୁ ତିନି ପିଢ଼ିର ଏହିପ୍ରକାର ବିରାଟ ଆୟୋଜନ କରିବାକୁ ପଡ଼ିଲା ବୋଲି ଗୋପାଳ-ବାବୁଙ୍କୁ କୁହାଗଲା । ଗୁଡ଼ାଏ ପିଲା ଲୁଚୁକାଳି ଖେଳୁଥିଲେ ସଭା ବାଟ ଦେଇ, ଏଘରୁ ସେଘର, ଏ ଖଞ୍ଜାରୁ ସେ ଖଞ୍ଜା । କୁରୁ କୁରୁ ହେଉଥିଲେ, ବେଳେବେଳେ ଭେଁ ଭାଁ ବି' ହେଉଥିଲେ । ତଳେ ମସିଣା ପରା ହୋଇଥିଲା ସଭାସଦ୍‌ମାନଙ୍କ ପାଇଁ । ଖାଲି ନାରଣ ମଉସା ଗୋଟାଏ ହାତବାଲା ଚଉକି ଉପରେ ବସି ରହିଥିଲେ, ଯେହେତୁ ସେ ବାତରୋଗୀ । ମାଇପେ ଆସୁଥିଲେ, ଯାଉଥିଲେ । କେବଳ ଜନୈକା ବିଧବା ନେତଖୁଡ଼ୀ ପିଣ୍ଡାରେ ବସି ବଡ଼ବଡ଼ ହେଉଥିଲା । ମନେ ହେଉଥିଲା ସେ ଅତୀତକୁ ଏକାଧାରରେ ଝୁରୁଛି ଓ ଫପୁଛି । ତା'ଛଡ଼ା ଆଉ ଜଣେ । ନଶଷ୍ଟରଯା । ସେ ପିଣ୍ଡାକୁ ଆସି ଠିଆ ହୋଇ ରହିଲା ଗୋଟାଏ ଖୁଣ୍ଟକୁ ଧରି । ଏବଂ ମୋଟେ ଚଙ୍କିଲା ନାହିଁ ସେଠୁଁ । ଅଧିକନ୍ତୁ ଥାଇ ଥାଇ ଦାନ୍ତ ଦେଖଉଥାଏ । ସତେକି ଏଭଳି ଅପୂର୍ବ ଇନ୍ଦ୍ରସଭା ସହଜେ ଦେଖିବାକୁ ମିଳେ ନାହିଁ । ମାଇପିଟାକୁ କେହି ତଆରଲେ ନାହିଁ କେମିତି ? ଯାହାହେଉ ଗୋପାଳବାବୁଙ୍କୁ ପୁଣି ଦଶିଗଲା ତା'ର ସେଇ ପଣତପୋଛା, ହେଲେ ନିଃଶଙ୍କ ନପ୍ରେଡ଼ବନ୍ଦା ହସ । ଏବଂ ତା'କୁ ମଜା ଲାଗିଲା । ଆଚ୍ଛା, କୋଉକଥାରେ ସେ ହସିପକେଇଲା କହିଲ ? ଗୋପାଳବାବୁ ଗଣିବାକୁ ଲାଗିଲେ—

···ଯେତେବେଳେ ସେ ପକ୍ଷର ଧଡ଼ି ଭାଇ ବନ୍ଦୋବସ୍ତ ରେକର୍ଡ଼କୁ ହସି ଉଡ଼େଇ ଦେଲେ । କନ୍ତୁ ଉଡ଼େଇ ଦେଲେ କି ଅଟକେଇ ଦେଲେ ବୁଝି ହେଲା ନାହିଁ । କାରଣ ସେ "ହେଁଃ"ଟାଏ କହି ଦେଇ ତାଙ୍କ ପାଟିକୁ ମେଲେଇ ରଖିଲେ କିଛି ସମୟ । ଛମୁଦାନ୍ତ ଦି'ଟା ଜହ୍ନାଣ୍ଡ ଲଣ୍ଡା ତଥା ଆହମକ ମନେ ହେଲା । ପାଟି ବୁଜିଲା ପରେ ଅବଶ୍ୟ ଯାହା କହିବାର କହିଲେ । ଯେ ଦଶଟା ଟଙ୍କାର ପାନଖିଆ ଦେଲେ ରେକର୍ଡ଼ ବଦଳିଯିବ··· ଶଳା, ଯେତେକ ଭଡ଼ୁଆ !

...ସେତେବେଳେ ଭାଗୁ ବଡ଼ବାପା ଭୁଲଇ ଭୁଲଇ ହଠାତ୍ ଉଠି ପଡ଼ିଲେ, ଏବଂ ନାରଣ ମଉସାଙ୍କ ଆଡ଼କୁ କଟମଟ କରି ଚାହିଁଲେ ।

...କାହିଁକନା ନାରଣ ମଉସା "ଖେଓ୍ୱାଟ୍" ବୋଲି ଗୋଟାଏ ଶବ୍ଦକୁ ଉଚ୍ଚ ସ୍ୱରରେ ଉଚ୍ଚାରଣ କଲେ । କହିଲେ ଯଦି ବା ଦୁଇ ପକ୍ଷରୁ ବୁଝାଯାଉଛି ଯେ ସେମାନେ ପୁରା ଖଜଣା ଦେଇ ଆସୁଛନ୍ତି ଏକା ଜମି ପାଇଁ ଏବଂ ପାଉତିରୁ ବିଶେଷ କିଛି ବୁଝା ପଡ଼ିବ ନାହିଁ, କାରଣ ସେଥିରେ ବିଭିନ୍ନ ଅଂଶ ଏକାଠି ହୋଇ ଯାଇଛି, ଆଉ ଗୋଟାଏ ଠିକଣା ରେକର୍ଡ଼ ଅଛି ରେଭିନିଉ ଅଫିସରେ...ତା' ନାଆଁ ଖେଓ୍ୱାଟ୍ । ଖେଓ୍ୱାଟ୍ । ଖେଓ୍ୱାଟ୍ । ଶବ୍ଦଟାକୁ ସେ ତାଏ ତାଏ କରି ଗୁଡ଼ିଲେ ତାଙ୍କ ଉଚ୍ଚ ଆସନରୁ ।

...ପୁରନ୍ଦର ହଳିଆ ତା' ହି' ହାତକୁ ହି' ଆଖିରେ ମାଡ଼ି ଦେଇ କହିଲା ଯେ ମୋ ଆଖି ଫୁଟିଯିବ ଯଦି ମୁଁ ମିଛ କହୁଥାଏ, ମୁଁହି ଥିଲି ବଡ଼ବାବୁ (ଅର୍ଥାତ୍ ବଟକୃଷ୍ଣ)ଙ୍କର ହଳିଆ, ମୁହିଁ ଚାଷ କରି ଆସୁଛି ଏଇ ଜମି ଖଣ୍ଡକ । ଉଦସ୍ତା ସାଲ ମୁଁ ଗୁଆବାଗାନକୁ ନ ଯାଏ କି ଏତେ କଥା ନ ହୁଏ ।

...ଶିର ମଉସା ଅନେକ ଥର କିଛି କହିବେ କହିବେ ହେଲେଣି, କିନ୍ତୁ ତା'ର ବାଟ ପାଉ ନାହାନ୍ତି । ବୋଧହୁଏ ତାଙ୍କ କଣ୍ଠସ୍ୱର ନିହାତି ସରୁ, ସେଇଥି ପାଇଁ । ଶେଷକୁ ସେ ସ୍ୱର ଉଞ୍ଚେଇ ଗୋଟାଏ ଖାଣ୍ଟି କଥା କହିଲେ । କହିଲେ ଜମି ଯୋଗିଆର ନୁହେଁ କି ଗୋପାଳର । ଜମି ହେଉଛି ପୁରନ୍ଦରର । ଆଜିର ହଳିଆ କାଲିର ଭାଗଚାଷୀ...ନା କଣ କହୁଛୁରେ ପୁଅ ?

...ଏତିକିରେ ପୁରନ୍ଦର ଗୋଟାଏ ବିଚିତ୍ର ଶବ୍ଦ କରି ଭଗବାନଙ୍କୁ ଡାକିଲା । କହିଲା ଯେ ସେମିତି କଥାକୁ ସେ ପୁଣି ଗାଆଁ ଗୁଡ଼ ପଳେଇଯିବ କୁଆଡ଼େ ବୋଲି କୁଆଡ଼େ ।

ଗୋପାଳବାବୁଙ୍କ ସନ୍ଦେହ ନ ଥିଲା ଯେ ଏଭଳି ଆହୁରି ଅନେକ କଉତୁକିଆ ଘଟଣା ଘଟିଥିବ, ଯେଉଁଥିପାଇଁ ନରସିଂହପୁର ଏତେ ଅଧିକ ହସି ପାରିଲା, ତାଙ୍କ ଆମୋଦ ରସକୁ ଆହୁରି ଅଧିକ ଚପ୍‌କେଇଲା, ଏବଂ ସେ ଜମିଜମାଗତ ଗୁରୁତ୍ୱପୂର୍ଣ୍ଣ ଆଲୋଚନାରୁ ଓହରି ଯାଇ ଦିବ୍ୟ ଆଉଜି ଗଲେ ପଛକୁ । ବିସ୍ମୃତ ଅତୀତର ସ୍ମୃତି ଆଡ଼କୁ ।

...ଏମାନଙ୍କୁ ମୁଁ ନ ଜାଣିଥିଲେ ନାହିଁ, ତଥାପି ଏମାନେ ମୋର ଆତ୍ମୀୟ । ଖାଲି ସାଧାରଣ ଅର୍ଥରେ ନୁହେଁ, ନିରବଚ୍ଛିନ୍ନ ଅନୁଭୂତିର ଅର୍ଥରେ, କାହିଁକନା କେଉଁ ପିଲାଦିନୁ ମୋର ସମ୍ପର୍କ ରହିଛି ସ୍ୱାଙ୍କ ପୂର୍ବଜ ଅବା ସ୍ୱାଙ୍କ ପିଲାଦିନ ସାଙ୍ଗରେ ।

ଯେଉଁ ପିଲାଦିନେ ଯେତେକ ମାଆମାଉସୀ ମୋତେ ପାଖରେ ବସେଇ କେତେ କ'ଣ ଖୁଆଉଥିଲେ । ନାଲିଚିଆ ମୋଟା ଭାତ, ଘରମରା ଘିଅରେ ସରସର, ଚହିଁକୁ ବଡ଼ି ଭଜା, ଶାଗୁଆତ ଚୁଣ । ଦେହରୁ ଦେହରୁ କେତେ କିସମର ବାସ୍ନା, ତେଲ ହଳଦୀର, ଚୁଆଚନ୍ଦନର, ପାନ ମସଲାର । ବେଳେବେଳେ ମନେ ହେଉଥିଲା ଖାଇବା

ଗୁଡ଼ ଦେଇ ସେଇ ଦେହରେ ମୁଣ୍ଡ ଗୁଞ୍ଜି ଦେବାକୁ, ସେଥିରେ ବୋଧହୁଏ ବେଶି ସୁଆଦ ।

ଯେଉଁ ଅତୀତରେ ଜେଜେବାପା ବୋଲି ଜଣେ ପ୍ରାଣୀ ଥିଲେ ଯେ ମୋତେ ଗୋପକୃଷ୍ଣ ବୋଲି ଡାକୁଥିଲେ, ମୋ ଦେହରେ (ତଥା ତାଙ୍କ ଦେହରେ) ଶକ୍ତି ଆଣିବା ପାଇଁ ଭଜା ବାଦାମକୁ ଗୋପା ଛଡ଼େଇ ବଢ଼େଇ ଦେଉଥିଲେ ମୋ ପାଟିକୁ, ଗୋଟିକ ପରେ ଗୋଟିଏ ।

ମୁଁ ଖଗୁବଡ଼ବାପାଙ୍କ କ ଆଉ କେଉଁ ବଡ଼ବାପାଙ୍କ କାନ୍ଧରେ ବସି ବୁଲୁଥିଲି ଗାଆଁଟାଯାକ । ଗାଆଁର ମନ୍ଦିରରେ, ଗାଆଁର ଜଙ୍ଗଲରେ, ଯେତେକ ତାଳ, ନଡ଼ିଆ, ଆମ୍ବ, ପଣସର ପୂରିଲ ପାଚିଲାକୁ ଛୁଇଁ ଛୁଇଁ, ସୁଙ୍ଘି ସୁଙ୍ଘି । ପୁଣି କାନ୍ଧରୁ ଓହ୍ଲେଇ ଡିଆଁଟାଏ ମାରି ପୋଖରୀ କୂଳକୁ । କାହିଁକନା ପୋଖରୀ କୂଳରେ ଚୁଇଁ, ପୋଖରୀ ମଝିରେ କଇଁ !

ଗୋଟାଏ ପୁରୁଣା ପାଲଙ୍କି ଝୁଲି ହୋଇଥିଲା ଦାଣ୍ଡପିଣ୍ଡାରେ । ତା' ପଛଆଡ଼ ଅଦୃଶ୍ୟ । ସେଇ ଆଢୁଆଳରେ ମୁଁ ଚୁଇଁକୁ ଜାବୁଡ଼ି ଧରିଲି, ସେ ବି' ଜାବୁଡ଼ି ଧରିଲା ମୋତେ, ଗୁଡକୁ ଗୁଡ, ବବାକ୍ ଫୁଙ୍ଗୁଲା, ଦୁହିଁଙ୍କ ବୟସ ଛଅ କ ସାତ । ଦେହର ବାସ୍ନା କ'ଣ ଏତେ ଧୂଳିଆ, ନା ଇଏ ଧୂଳିଧୂସର ପାଲଙ୍କିର ଗନ୍ଧ ?···

ଆଜିକା ସନ୍ଧ୍ୟାର ଆଢୁଆଳରେ ସେ ଯେଉଁ ଅତୀତକୁ ଜାବୁଡ଼ି ଧରିଥିଲେ, ବର୍ତ୍ତମାନ ଗୋପାଳବାବୁ ତା'ର ଅନୁଭବକୁ ମନ ପୂରେଇ ପାଇବାକୁ ଚାହୁଁଥିଲେ । ସତେକି ପାଗଯୋଗ ବେଶି ଅନୁକୂଳ ଏଇକ୍ଷଣି । ଏଣେ ସନ୍ଧ୍ୟା ନଇଁ ଆସୁଥିଲା ପଦ୍ମପୁର ଉପରକୁ ।

"ଓଳିଗି ସାନ ସାଆନ୍ତେ ।"

(ଲୋକଟି କିଏ ? କୁଟୁମ୍ବର କେହି ହୋଇ ନ ଥିବ ନିଶ୍ଚୟ । ହୁଏତ ମୂଲିଆ କି ପ୍ରଜା ଶ୍ରେଣୀୟ । ମୁଁ ତଥାପି ସାନ ହେଲେ ହେଲି ତା' ହିସାବରେ, କିନ୍ତୁ ସାଆନ୍ତ ସମ୍ବୋଧନଟା ଉଚିତ ନୁହେଁ । ସାମନ୍ତ ମନୋବୃତ୍ତି । ହେଲେ ତା'କୁ କିଛି କହି ହେବ ନାହିଁ । ମାଟିରୁ ଉଠିଛି ଏଇ ଆନୁଗତ୍ୟ, ତା'କୁ ସହଜେ ଉପାଡ଼ି ଦେଇ ହେବ ନାହିଁ···)

ମାଈପିଟିଏ ଅର ପାଖ ବନ୍ଧରେ ବୁଲୁଥିଲା । ତଥାପି ସେ ଲମ୍ବା ଓଢ଼ଣାଟାଏ ଟାଣି ଦେଲା ଗୋପାଳବାବୁଙ୍କୁ ଦେଖି ।

( ତା' ମାନେ ମୁଁ ତା'ର ଦେଢ଼ଶୁର ସ୍ଥାନୀୟ । ଏତେଗୁଡ଼ାଏ ଲାଜ ଭଲ ନୁହେଁ ଆଜିକାଲିକା ଯୁଗରେ । କିନ୍ତୁ ଆତ୍ମୀୟତା ବୋଧର ଉତ୍ତର ନାହିଁ··· )

ବିପରୀତ ଦିଗରୁ ଆସୁଥିବା ଆଉ ଜଣେ ଲୋକ କେବଳ ଟିକିଏ ମୁଣ୍ଡ ଟୁଙ୍ଗାରିଲା ଓ ହସିଲା ତାଙ୍କ ଆଡ଼କୁ ଚାହିଁ । ଧୋତି ପଞ୍ଜାବି ପିନ୍ଧିଥିଲା ।

( ଅବଶ୍ୟ ଇଏ ବି' ଅଚହ୍ନା । ହେଲେ ଇଏ ବି' ଆତ୍ମୀୟ । ଖାଲି ମୁଁ ବି' ଧୋବଧାଉଳିଆ ତୁ ବି' ଧୋବଧାଉଳିଆ, ସେ ଅର୍ଥରେ ନୁହେଁ । ଏଉଳି ଆତ୍ମୀୟତା

ଉତ୍କୃଷ୍ଟ ସଭ୍ୟତାର ଲକ୍ଷଣ, ଯାହା କେବଳ ଆମ ଗ୍ରାମାଞ୍ଚଳରେ ଦେଖିବାକୁ ମିଳେ । ବିଦେଶରେ ଅଜଣା ଅଚିହ୍ନା ଲୋକ ବି ଯେମିତି ପାର୍କରେ କି ରାସ୍ତାରେ ମୁହାଁମୁହିଁ ହେଲେ 'ହାଏ' ବୋଲି ବୁଲନ୍ତି, ହସିଦିଅନ୍ତି ଟିକିଏ··· )

ଗୋପାଳବାବୁ ଆଶ୍ୱସ୍ତ ହେଲେ । ଏବଂ ଭାବିଲେ ଯେ ନାଳବନ୍ଧର ଏଇ ଯନ୍ତ୍ରସାମାନ୍ୟ ଟ୍ରାଫିକ୍, ଇଏ ମଧ୍ୟ ସୂଚେଇଦେଲା ଯେ ତାଙ୍କ ବିଷୟର ଖାମ୍‌ଖିଆଲି ନୁହେଁ । ଏମାନେ ବି ଆସିଥିଲେ ତାଙ୍କ ପ୍ରସ୍ତାବ, ପ୍ରସ୍ତାବ ନୁହେଁ ନିଷ୍ପତ୍ତିକୁ ଅନୁମୋଦନ କରିବା ପାଇଁ । ବସ୍ତୁତଃ ଏବଂ ବିଶେଷତଃ ଏଇ ଆତ୍ମୀୟତା ଜିନିଷଟା ଗୋଟାଏ ଆବେଶ, ପରିବେଶ, ଉର୍ଦ୍ଦୁରେ ଯାହାକୁ କହନ୍ତି 'ମାହୋଲ୍', ଇଂରେଜୀରେ ଆଟ୍‌ମସ୍‌ଫିଅର୍, ନୁହେଁ କି ?

ତା'ଛଡ଼ା ଏଭଳି ହାଲୁକା, ଓପାଶିଆ, ହେଲେ ନାଡ଼ଲଗା ଆବେଶରେ ଆବେଗ ନାହିଁ ବୋଲି କିଏ କହିଲା ? ଅଛି, ହେଲେ ସେଥିରେ ତାତି ନାହିଁ କି ଝାଳ ନାହିଁ କି—।···କିଓ ମୋ ଧୂଳିଧୂସର ଦେହରୁ କେଉଁ ଝାଳ ବହୁଥିଲା କି, ମୁଁ ଯେତେବେଳେ ଚୁଲିକୁ କୁଣ୍ଢେଇ ଧରିଥିଲି ?···ଗୋପାଳବାବୁ ତାଙ୍କର ଏଇ ବଙ୍କା ଚତୁର ଟୀପ୍‌ପଣୀକୁ ନେଇ ଏମିତି ଖୁସିଟାଏ ହେଲେ ଯେ ସେ ସଶବ୍ଦରେ ନ ହସି ରହି ପାରିଲେ ନାହିଁ ।

ହେଲେ କ୍ଷଣକ ପାଇଁ ତାଙ୍କର ମନେ ହେଲା ଯେ ଡେଇଁ ଡେଇଁ ବୁଲୁଥିବା ଲମ୍ବାଲାଞ୍ଜ ଚଢ଼େଇଟା ଅଟକି ଯାଇଛି ତାଙ୍କ ମୁହଁକୁ ଦେଖିବା ପାଇଁ । ସତେକି ଭାବୁଛି ଯେ ତାଙ୍କ ସାହସ କିଛି କମ୍ ନୁହେଁ !

···ଆରେ, କଅଣ ଭୁଲ୍ କଲି ମୋ ସାହସ ? କି'ଣ ଭାବୁଛ ଯେ ମୁଁ ମୋ ସ୍ମୃତି-ବିସ୍ମୃତିକୁ ବାଧ୍ୟ କରୁଛି ମିଛ କହିବାକୁ ? କଳ୍ପନାରୁ କି ମହାପାତ୍ର ନୀଳମଣି ସାହୁଙ୍କର 'ଅଭିଶପ୍ତ ଗନ୍ଧର୍ବ'ରୁ କିଛି ମିଶେଇ ଦେଲି ତା'ସାଙ୍ଗରେ ? ଯେନତେନ ପ୍ରକାରେଣ ମୋର ଏଇ ନିଜସଞ୍ଜର ଭାଉ ବଢ଼େଇବା ପାଇଁ ?

ବେଶ୍ କରିଛି । ଅଳ୍ପବହୁତ ମିଛକୁ ଆବୁରି କରିବାଟିଏ ନ ହେଲେ ମୁଁ ମୋ ନିଜସତ୍ତ୍ୱକୁ ପାଇବି ନାହିଁ । ଆଉ ବେଳ ନାହିଁ···

କ୍ରମଶଃ ସଞ୍ଜ ଘନେଇ ଆସିଲା ପଦ୍ମପୁରରେ । ବିଜୁଳି ଆଲୁଅ ଝଲସିଲା ନାହିଁ ରାସ୍ତାରେ କି କାହାର ଘର ଅଗଣାରେ । ଇଏ ସେମିତିକା ଗାଆଁ ନୁହେଁ ଯାହାର ବିଦ୍ୟୁତ୍‌କରଣ ଆବଶ୍ୟକ ଆସନ୍ନା ନିର୍ବାଚନ ପୂର୍ବରୁ । ଆଜିକା ଆକାଶରେ ଜହ୍ନ ବି ଉଇଁବାର ନାହିଁ ଏଇ ସଞ୍ଜବେଳୁ । ତେଣୁ ଅନ୍ଧାର ଲେପି ହୋଇଗଲା ତା'ର କ୍ଷେତବାଡ଼ି, ଗଛପତର, ଓ ପ୍ରାଣୀମାନଙ୍କ ଉପରେ । ଏବଂ ଜଣାପଡ଼ିଲା ନାହିଁ ଯେ କେତେବେଳଯାଏଁ ଗୋପାଳବାବୁ ତାଙ୍କ ହଠାତ୍-ହସି ଉଠିଥିବା ମୁହଁକୁ ସେଇ ଚେହେରାରେ ଧରି ରଖି ପାରିଲେ । ତେବେ ସେ ନିଜକୁ କହିଲେ ଯେ ଏଇ ଭଲ । ନିଜସଞ୍ଜର ଯଥାଯୋଗ୍ୟ ପ୍ରତୀକ । ସଞ୍ଜ ପରେ ପରେ ଅନ୍ଧାର, ଖାଲି ଅନ୍ଧାର, ଯେଉଁଥିରେ ପୁରାପୂରି ମିଶିଯାଇ ହେବ, ନିଜକୁ ଲୁଚେଇ ଦେଇ ହେବ···ସେଇଆ ତ ମୁଁ ଚାହେଁ ।

କାରଣ କ'ଣ ସ୍ୱପ୍ନରେ, ତା'ର ଗୋଟାଏ ନିଜସଙ୍ଗ ଦରକାର କି ନାହିଁ ଏବଂ ସେ ତା'କୁ କେଉଁଠି ବସେଇବ, ସେଇ ଜାଣେ । ମୁଁ ତା'ର ଠେକା ନେଇ ନାହିଁ । ପିଲାମାନଙ୍କ, କଥା ଛାଡ଼, ସେମାନେ ତ କେବେଠୁଁ ବଡ଼ ହୋଇଗଲେଣି, ଅଲଗା ହୋଇ ଗଲେଣି ।

ଗୋପାଳବାବୁଙ୍କୁ ହସ ମାଡ଼ିଲା ଯେ ଦିନେ କେବେ ଜୀବନର ଅଧା ବାଟ ନ ସରୁଣୁ ସେ ଭାବୁଥିଲେ ଯେ ମୋତେ ଲୋକେ ଚିହ୍ନନ୍ତୁ । ଯେ ମୁଁ ଗୋଟାଏ ବ୍ୟକ୍ତି । ମୁଁ ବି ଜଣେ, ଅଦ୍ୱିତୀୟ । ବୋମା କି ବଜ୍ର ମୋତେ ଦେଖିପାରୁ ଚିହ୍ନାଟ କରି ମାରିବା ଉଚିତ ! କିନ୍ତୁ ବର୍ତ୍ତମାନ ମୁଁ ସ୍ୱପ୍ନେ ମୁଁ ଲୁଚିଯିବି ଚୁପ୍‌ଚାପ୍, କେହି ଦେଖିବେ ନାହିଁ, କେହି ଜାଣିବେ ନାହିଁ । ହେଲେ ଗୋଟାଏ ପ୍ରୀତିକର ପରିବେଶ ଭିତରେ, ଆତ୍ମୀୟତାର ଘେର ଭିତରେ, ଯେଉଁଠି ସ୍ମୃତି ନାହିଁ, ଅଛି ତା'ର ମଧୁରିଆ ଭାବ, କଳା ଓ କଳ୍ପନା । ଦେହ ଅଛି, ହେଲେ ତା'ର ଝାଳ ନାହିଁ, ଖାଲି ଗୋଟାଏ ଧୂଳିଧୂସର ବାସ୍ନା···

( କିଏ କହୁଥିଲା ଚୁଡ଼ିର ଗୁଡ଼ାଏ ପିଲା, ସ୍ୱାମୀ ମରିଗଲାଣି, ବଡ଼ କଷ୍ଟରେ ଅଛି ବିଚାରୀ । ମାରି ଗୋଲି, ସେ ସ୍ତ୍ରୀଲୋକଟାକୁ ମୁଁ ଚିହ୍ନେ ନାହିଁ··· )

ଗୋପାଳବାବୁ ଚାଲିବାକୁ ଲାଗିଲେ । ମନେ ହେଲା ସେ ଜାଣନ୍ତି ନାହିଁ କି ଜାଣିବାକୁ ଚାହାନ୍ତି ନାହିଁ ସେ କୁଆଡ଼େ ଯାଉଛନ୍ତି । କାରଣ ବଳେବଳେ ତାଙ୍କ ପାଦ ବାଟ କଢ଼େଇ ନେବ···ଘରକୁ । ସଙ୍ଗର କାମ ହେଉଛି ସେଇଆ ।

ଏହିପରି ଭାବରେ ସେ ନାଲିବନ୍ଧରୁ ଖସିଆସିଲେ ଗାଆଁ ମୁଣ୍ଡକୁ । ଯେଉଁଠି ଗଛବୁଦା ପାତଳା ହୋଇ ଯାଇଛି । ଗୋଟାଏ ପଲ୍ଲୀଶ୍ରୀକର ସାନ ଦେଉଳ ତଥାପି ବାରି ହୋଇ ଯାଉଛି ଅନ୍ଧାରରେ । ତା' ଭିତରେ ଠାକୁରାଣୀ ଅଛନ୍ତି । ଏବଂ ତା' ସ୍ତୂପପାଖରେ ଟିକିଡ଼ାଏ ଢ଼ିପ ଭୂଇଁ । ସେଇଠୁଁ ତାଙ୍କୁ ସ୍ୱୁଉକନ ଲାଗିଲା ।

···ବାପା ଏଇଠିକି ଆସିଥିଲେ ପୋଡ଼ା ହେବା ପାଇଁ । ମୋତେ ଓ ଯେତେକ ବନ୍ଧୁବାନ୍ଧବଙ୍କୁ ବାରମ୍ବାର ମନେ ପକେଇ ଦେଇଥିଲେ ଯେ ଭୁଲିବ ନାହିଁ, ମରିଗଲା ପରେ ମୋତେ ଆମ ଗାଆଁକୁ ନେଇଯିବ, ସେଇଠି ପୋଡ଼ିବ । ତେଣୁ ଯେତେ ଅସୁବିଧା ହେଉ ପଛେ ଆମେ ତାଙ୍କୁ ସେଇଦିନ ନେଇ ଆସିଲୁ ଗାଆଁକୁ, ଏଇ ଠାକୁରାଣୀ ପଡ଼ିଆକୁ । ସଞ୍ଜ ପାରି ହୋଇଗଲାଣି ପଦ୍ମରେ ହେଲା ।

ଏବଂ ତା'କୁ ଜଳେଇଲୁ । ବର୍ଷାଦିନିଆ କାଠଗୁଡ଼ା ଜଳୁ ନ ଥିଲା ଭଲ କରି, ତଥାପି ତାକୁ ଖେଞ୍ଚିଖାଞ୍ଚି ସଜାଡ଼ୁଥିଲୁ, ନିଆଁକୁ ତେଜୁଥିଲୁ ।

କାହାକୁ ଖେଞ୍ଚିବାକୁ ପଡ଼ିଲା—କାଠକୁ, ନା ଦେହକୁ ? ହଁ, ହଁ, ଦେହକୁ, ମୋ ବାପାଙ୍କ ଦେହକୁ । ଯେଉଁ ଦେହ ଦିନେ ଇଜିଚେୟାରରେ ବସି ରାଏ ଦେଉଥିଲା । ଲମ୍ବା ଲମ୍ବା ପାହୁଣ୍ଡ ପକେଇ ଚାଲୁଥିଲା । ଛଡ଼ି ହଲଉଥିଲା, ହୁକୁମ୍ ଦେଉଥିଲା ଏବଂ ଜବର୍ ଚେଷ୍ଟା ବି କରୁଥିଲା । ସେଇ ଦେହ, ସେଇ ବାପା ।

ଜଳଜଳ ହୋଇ ଦିଶିଯାଉଛି ସେଇ ଜଳିବାର ଜ୍ୱାଳା । ମୋ ବାପାଙ୍କୁ ନେଇ ।

ସତେ କି ବାପା ତାଙ୍କ ଦେହଟାକୁ ତ୍ୟାଜ୍ୟ କଲେ । ଶାନ୍ତି ଦେଲା ପରି । ଜାଣିଶୁଣି । ନହେଲେ ସେ କାହିଁକି ଜିଦ କରି ଆସିଥାଆନ୍ତେ ଏଠିକି ? ଅସିଲରୁ ଏତେ ଅବସ୍ଥା ହେବାକୁ ପଡ଼ିଲା । ସେମାନେ ଦେହଟାକୁ ଉଠେଇଲେ, ବସେଇଲେ, ଏପାଖକୁ ମୁହଁ କରେଇଲେ, ପୁଣି ସେପାଖକୁ, କଣ ସବୁ ମନ୍ତ୍ର ପଢ଼ିଲେ ତା'ଉପରେ ହାତ ପକେଇ । ଏଣେ ଦେହଟା ଖାଲି ଟଳଟଳ ହେଉଥାଏ, ମୁଣ୍ଡଟା ନଡ଼ନଡ଼ ହେଉଥାଏ···ଅଉ ତା'ର ସ୍ଥାନମାନଙ୍କୁ ଚହେଇ ଦେଉଥାଏ ପେଟ୍ରୋମାକ୍ସ୍ ଅଲୁଅର ହାଲେଲ, ଅନ୍ଧାର ଭିତରେ ଖାସ୍ ତା'କୁଇ ଦେଖେଇଲା ପରି । ତା'ପରେ ତା'କୁ ଶୁଆଇ ଦିଅ ଚିତା ଉପରେ । ହେଲେ ଅବଯାଁ ଦେହଟା ଜଳୁ ନାହିଁ ଭଲ କରି, ତା'କୁ ଖେଞ୍ଚ, ଆହୁରି ଖେଞ୍ଚ··· ଯେମିତି କି ଦେହରସ ପିଚକି ଉଠିବ, ନିଆଁରେ ଚଢ଼ଚଢ଼ ହେବ, ଆଉ ହାଡ଼ ଫୁଟିବ ଥାଇ ଥାଇ, ସେଥିରେ ତାଳ ଦେଲା ପରି···

ଷ୍ଟପ୍ ଇଟ୍ ! ଗୋପାଳବାବୁ ଚତ୍କାର କରି ଉଠିଲେ ମନେ ମନେ । ଏବଂ କହିଲେ ମୁଁ ଏଡ଼େ ବୋକା ନୁହେଁ ବାପଙ୍କ ପରି । ହୋଇପାରେ ଇଏ ମୋ ଜଳସଙ୍ଗ, ତା' ବୋଲି ମୁଁ ଏଇଠି ପୋଡ଼ା ହେବ ନାହିଁ । ମୋ ମଲା ଦେହଟାକୁ ଦେଖେଇ ହେବ ନାହିଁ !

ଗୋପାଳବାବୁ ! ତା'ହେଲେ କୋଉଠିକି ଯିବ ବୋଲି ଭାବିଛ ? ଯମୁନାକୂଳ, କେଓଡ଼ାତଳା, ସତୀଚଉରା, ନା ସ୍ୱର୍ଗଦ୍ୱାର ? ନା ଦେଶବିଦେଶର କୋଉ କ୍ରିମାଟୋରିଅମ୍, ଯେଉଁଠି ଚିତା ଜଳେଇବାର ଗଣ୍ଡଗୋଳ ନାହିଁ ? ବାବୁ, ଯୋଉଠିକି ଯାଅ ପଛେ, ତମ ଦେହଟାକୁ ଲୁଚେଇ ପାରିବ ନାହିଁ । ତା'ର ନଡ଼ବଡ଼ିଆ କୁରୂପକୁ । ଯେଉଁଥିରେ ସାରା ଜୀବନର ଯେତେକ ଝାଳ, ଲୁହ, ଲହୁ, ବୀର୍ଯ୍ୟ, ଆଉ କେତେ କ'ଣ, ଇନ୍ଦ୍ରିୟ ଆବେଗର ସେତେକ ଉତ୍‌କ୍ଷିପ୍ତ ଅଶାନ୍ତ ନିର୍ଯ୍ୟାସ ଜମାଟ ବାନ୍ଧି ଯାଇଛି । କଷ୍ଟ ପାଉଛି । ଆଉ ତୁମକୁ ନେହୁରା ହେଉଛି, କହୁଛି ମୋତେ ଶାନ୍ତି ଦିଅ, ଶାନ୍ତି ଦିଅ !

ଘୂଙ୍ଖେ ଘୂଙ୍ଖେ ଧୀରେ ଘୂଙ୍ଖେ ଲିଭିଯାଇ ହେବ ନାହିଁ । ସ୍ମୃତିରୁ ବିସ୍ମୃତିକୁ, ସତ୍ତାରୁ ସତ୍ତାକୁ । କାହିଁକନା ଏଇ ସ୍ଥୂଳ ଅସନା ଦେହଟା ଛାଡ଼ିବ ନାହିଁ ତୁମକୁ । ବାଟ ଓଗାଳିବ । କହିବ ଆଗେ ମୋତେ ଠେକି ଧର । ଲୁଚେଇ ପକେଇଥିବା, ଫିଙ୍ଗି ଦେଇଥିବା, ଭୁଲି-ଯାଇଥିବା କି ହେଲେଇ ଦେଇଥିବା ଲକ୍ଷେ ସ୍ମୃତିର ଜମାନତ୍ତି, ଏଇ ପାପବୁଜୁଲିଟାକୁ ତୋଳି ଧର ଆକାଶକୁ । ଦେଖେଇ ଦିଅ ତୁମ ମାଲିକଙ୍କୁ । ତ'ପରେ ଯୋଉ କଥା ।

ନା, ମୁଁ ମୃତର ସନ୍ତାନ ନୁହେଁ, ଅମୃତର···

ହେଲେ ଆଗ ଏଇ ଦେହଟାକୁ···

ଗୋପାଳବାବୁ ଯଥାଶୀଘ୍ର ପଳେଇ ଅସିଲେ ସେଠୁ । ଏବଂ ଗାଆଁ ଭିତରକୁ ଗଲେ । ଯେଉଁଠି କେତେ ଘରଆଲୁଅ ଜୁଳୁଜୁଳୁ ହେଲାଣି ।···ସେଠି ମୋର ବୋଲି

ଗୋଟାଏ ଘର ଅଛୁ ଯାହାଙ୍କୁ ବାପା ତୋଳିଥିଲେ, ମାନେ ଟେନପୁରୁଷର ଝୁଲଆଟାକୁ ମରାମତ କରିଥିଲେ ଭବିଷ୍ୟତ ପାଇଁ । କହିଲେ, ମୁଁ ସିନା ରହିଲି ନାହିଁ ଗାଆଁରେ, ଗୋପାଳ ବି ରହିଲା ନାହିଁ, ହେଲେ ଘରଖଣ୍ଡେ ଥିବା ଦରକାର ସେଠି । ଘରଖଣ୍ଡେ, ଆଉ ଜମି କେଇଗୁଣ୍ଠ···

କିନ୍ତୁ ଗୋପାଳବାବୁ ତା' ଭିତରକୁ ଗଲେ ନାହିଁ । ଯଦିଓ ନଟିଆ ନାମକ ଜଣେ ମୂଲିଆ ସେଠି ମହଜୁଦ୍ ଥିଲା ତାଙ୍କ ପାଇଁ । ମସିଣାଟିଏ ପକେଇ, ଲଣ୍ଠନଟିଏ ଜଳେଇ । ସେ ଭୁସ୍‌କିନା ଆଉ ଗୋଟିଏ ଘର ଭିତରକୁ ପଶିଗଲେ, ସେ ଯାହାର ହେଉ ପଛେ । କହିଲେ,—ଏଠି ତ ସମସ୍ତେ ମୋର, ସମସ୍ତେ ମୋ ନିଜର, କାହିଁକି ଯିବି ନାହିଁ ଆଉ କାହା ପାଖକୁ, ଦି'ପଦ କଥା ହେବା ପାଇଁ ?

ସେଠି ଯାହାକୁ ଦେଖିଲେ ପ୍ରଥମେ, ସେ ହେଉଛି ନଚେଭଟେଯା । ସେ ତାଙ୍କୁ ଡାକି ଆଣିଲା ଘର ଭିତରକୁ । ଏବଂ ତାଙ୍କ ଧଇଁସଇଁ ଭାବକୁ ସାଷ୍ଟାଙ୍ଗ କଲା ପରି ବସେଇଲା ଗୋଟାଏ ଖଟ ଉପରେ । ସେଇଠୁ ହସିଲା ତା' ପଟେ ଫୋକ୍ଲା ହସ, ଓ ପଚାରିଲା··

"ଦାଦା, କଅଣ ଜମି ପାଟକୁ ଯାଇଥିଲେ କି ? ଚାଷ ଆରମ୍ଭ ହୋଇଗଲାଣି ଆଜିଠୁଁ ?"

ଗୋପାଳବାବୁ ଜାଣି ନ ଥିଲେ ଯେ ନଚେଭଟେଯା ଅଡ଼ପାଗଳୀ । ସେଉଁଥି ପାଇଁ କେହି କିଛି କହନ୍ତି ନାହିଁ ତା'କୁ । କହିଲେ ସେ ଦୁନିଆଁ କଣ୍ଟାସମା ଆରମ୍ଭ କରି ଦିଏ । ହତବାକ୍ ଗୋପାଳବାବୁ ମଧ୍ୟ ପଦୁଟିଏ ଉତ୍ତର ଦେଇ ନ ଥିଲେ । ହେଲେ ତା' ସ୍ୱଭାବ ଚରିତ୍ରର ପରିଚୟ ପାଇଥିଲେ ତାଙ୍କର ଯନ୍ତ୍ରଣା ଏତେ ଦୁଃସହ ହୋଇ ନ ଥାଆନ୍ତା ବୋଧହୁଏ । କାରଣ ସେ ଭାବି ନେଇ ପାରି ଥାଆନ୍ତେ ଯେ ଏଇ ଅଚହ୍ନା ଏବଂ ଅସାଧାରଣ ନାରୀର ବିଦ୍ରୂପ ବ୍ୟକ୍ତିଗତ ନୁହେଁ । ଇଏ ମଧ୍ୟ ଶାଶ୍ୱତ । ସବୁ ପାଗଳାଙ୍କର । ଅଥବା ନିସ୍ବଭର ।

———

ଶ୍ରୀ କିଶୋରୀ ଚରଣ ଦାସ । ଜନ୍ମ : ମାର୍ଚ୍ଚ ୯, ୧୯୨୪, କଟକ । ଶିକ୍ଷା : ଏମ୍.ଏ. ଇତିହାସ (ପ୍ରଥମ ଶ୍ରେଣୀ), ବି.ଏଲ୍ (ପ୍ରଥମ ଶ୍ରେଣୀ) । ବୃତ୍ତି : ୧୯୫୦ରେ ଇଣ୍ଡିଆନ୍ ଅଡ଼ିଟ୍ ଏଣ୍ଡ୍ ଆକାଉଣ୍ଟସ୍ ସର୍ଭିସ୍‌ରେ ଯୋଗଦାନ କରି ଏବଂ ୧୯୮୫ରେ ସେବାନିବୃତ୍ତ ହୋଇ ବର୍ତ୍ତମାନ ଖଟ୍‌ବିନ୍ ସାହି, କଟକରେ ଅବସ୍ଥାନ କରୁଛନ୍ତି ।

ଲେଖକଙ୍କର ଏହାକୁ ମିଶାଇ ଓଡ଼ିଆରେ ତେରଟି ଗଳ୍ପସଂକଳନ, ଗୋଟିଏ କବିତା-ସଂକଳନ, ଗୋଟିଏ ପ୍ରବନ୍ଧ ସଂକଳନ ଏବଂ ଗୋଟିଏ ସାହିତ୍ୟ ସନ୍ଦର୍ଭ ପ୍ରକାଶିତ ହୋଇଛି । ଦୁଇଟି ପ୍ରବନ୍ଧସଂକଳନ ଓ ଗୋଟିଏ ଗଳ୍ପ-ସଂକଳନ ପ୍ରକାଶ ଅପେକ୍ଷାରେ ରହିଛି । ଇଂରାଜୀରେ ମୌଳିକ ଓ ଅନୂଦିତ ଗଳ୍ପର ଦୁଇଟି ଗଳ୍ପସଂକଳନ ଓ ଗୋଟିଏ କବିତା-ସଂକଳନ ପ୍ରକାଶିତ ହୋଇଛି । ଦୁଇଟି ଗଳ୍ପ-ସଂକଳନ ଓ ଗୋଟିଏ ପ୍ରବନ୍ଧସଂକଳନ ପ୍ରକାଶ ଅପେକ୍ଷାରେ ରହିଛି ।

ଉଲ୍ଲେଖଯୋଗ୍ୟ ସମ୍ମାନ ଓ ପୁରସ୍କାର-ପ୍ରାପ୍ତି :

୧ । 'ମଣିହରା' ଗଳ୍ପସଂକଳନ ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର—୧୯୭୬

୨ । 'ଠାକୁରଘର' ଗଳ୍ପସଂକଳନ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର—୧୯୭୬

୩ । 'ଭିନ୍ନ ପାଉଁଶ' ଗଳ୍ପସଂକଳନ ପାଇଁ ଶାରଳା ପୁରସ୍କାର—୧୯୮୬

୪ । ବିଷୁବ ପୁରସ୍କାର—୧୯୯୨